# ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)




ଉତ୍କଳ ବିଶ୍ୱବିଦ୍ୟାଳୟ

# ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)




ମହାପୁରୁଷ

ଅଚ୍ୟୁତାନନ୍ଦ ଦାସଙ୍କ କୃତ



ଉତ୍କଳ ବିଶ୍ୱବିଦ୍ୟାଳୟ ଦ୍ୱାରା

ସଙ୍କଳିତ

ଓ

ପ୍ରକାଶିତ

ମୂଲ୍ୟ—ଦୁଇଟଙ୍କା ପଚାଶ ପଇସା

# ଶ୍ରୀ ଗୁରୁଭକ୍ତି ଗୀତା

(ପ୍ରଥମ ଖଣ୍ଡ)

## ପ୍ରଥମ ଛାନ୍ଦ

ବନ୍ଦଇଁ ଗୁରୁ ଦେବ ହରି । ମାୟାସଂସାରୁ କର ପାର ।୧।
ଗୁରୁ ଗୋବିନ୍ଦ ଉଚ୍ଚାରଣ । ରାମ ଉତ୍ଥାନ ମନ୍ତ୍ର ଶୁଣ ।।
ଭୃଥ ମୁକୁନ୍ଦ ଦେବନଜନ । ଧର୍ମ୍ମ ଆନନ୍ଦ ଭକ୍ତ ଯେନ ।।
ବନ୍ଧ ବସ୍ତ୍ର ଯେ ନରମେ ପାଦ । ବିଷ୍ଣୁ ନମସ୍ତେ ଏ ଯାଦବ ।।
ପବନ ନନ୍ଦ ପାଦତଳେ । ଉଦ୍ଧାର କର ଭବଜଳେ ।୫।
କବୁପେ ଗୁରୁ ଅଙ୍ଗ ଧରେ । ଶିଷ୍ୟ ଭଗତ କ ସ୍ୱବରେ ।।
ଛଡ଼ ଭଗତ ସ୍ୱହ୍ନାପର । ହତ୍ଥ ନ ମୁକୁନ୍ଦ ବେଜର ।।
ଅନନ୍ତ ବସ୍ତ୍ର ଯାଦବରେ । ପବନ ମିଶ୍ରି ଛତ୍ର ନରେ ।।
ସ୍ୱହାସେ ଏ ଛଡ଼ ଧେ ସାର । ଶୁଣ ହେ ଭଗତ ବସ୍ତୁର ।।
ରାମ ଭରଥ ବନ୍ଧ ନନ୍ଦ । ବିଷ୍ଣୁ ଧରମ ଛତ୍ର ବନ୍ଧ ।୧୦।
ଦ୍ୱାଦଶ ଭଗତ ହେ ଶୁଣ । କହିବା ଉପଦେଶ-ଗୁଣ ।।
ଗୁରୁଙ୍କୁ କ ଦେବା ଉପମା । କେ ଜାଣେ ଗୁରୁ-କୃଷ୍ଣ-ସୀମା ।।
ଯେ ଗୁରୁ ଜାଣେ ଯନ୍ତ୍ରସାର । ଶିର ଲମ୍ବି ବ ତା ପସ୍ତୁର ।।
ଗୁରୁ ଯେ ଗଡ଼ର ବରତା । ବେଦରେ ସାର ଏହି କଥା ।।

---

୩-୨ ଧର୍ମ୍ମ ଅନନ୍ତ (ଖ) ୮-୨ ଛଡ଼ଧରେ (ଖ) ୯-୨ ଭଗତ ବସ୍ତୁର (ଖ)

ଓଁକାରଭେଦ ଯେ ଜାଣନ୍ତି । ତେବେ ଜାଣିବ ଗୁରୁ-ଶକ୍ତି ।୧୫।
ପ୍ରଥମେ ବିନ୍ଦୁ ଯେ ଉକାର । ତହୁଁ ହୋଇଲା ଯେ ଅକାର ॥
ତହିଁ ଯେ ଗାରକୁ ରଖିଲେ । ବିନ୍ଦୁକୁ ତଥିମଧ୍ୟେ ଦେଲେ ॥
ତଥିଉପରେ ଇକାରକୁ । ଉକାର ବସିବ ତଳକୁ ॥
ଏକାର ତା ବାମ ପାଶର । ବେଢିବ ମଣ୍ଡଳ ଆକାର ॥
ମଣ୍ଡଳ ତଳେ ଗାର ଥୋଇ । ଦକାର ଅକ୍ଷର ବସାଇ ।୨୦।
ତହିଁ ଉପରେ ବିନ୍ଦୁ ଥୋଇ । ଅଠଅଙ୍କକୁ ତଳେ ଦେଇ ॥
ଏମନ୍ତେ ଏକ ଦଳ ହୋଏ । ଏ ଦଳେ ଏକାକ୍ଷରେ ରହେ ॥
ଥକାର ତଳେ ଅଣାକ୍ଷର । ଦକାର ତଳେ ପଞ୍ଚାକ୍ଷର ॥
ଗୁରୁଭକତ ଏ ବିଚାର । ଶିଷ୍ୟ ସଂଶୟ ହୋଏ ଦୂର ॥
ଆବର ପ୍ରକାର ଯେ ପାଶେ । ଶୂନ୍ୟ ଗୋଟିଏ ତହିଁ ବସେ ।୨୫।
ଆର ପାରୁଶେ ଅଙ୍କ ଅଠ । ଗୁରୁ ଭଣ୍ଡାର ଏହୁ କୋଠ ॥
ଅର୍ଦ୍ଧମାତ୍ରାକୁ ତଥି ତଳ । ବିନ୍ଦୁ ଗୋଟିଏ ତଥି ମୂଳ ॥
ଓଁକାର ଅର୍ଦ୍ଧଗାର ଶିର । ଏକାର ଅର୍ଦ୍ଧାଙ୍ଗ ଉପର ॥
ଓଁକାର ଏକାର ମଧ୍ୟରେ । ଦୁଇଅକ୍ଷର ସିଦ୍ଧି କରେ ॥
ସିଦ୍ଧିରସ୍ତୁ ଯେ ବେଦ ତହିଁ । ଏମନ୍ତ ବୃତ୍ତ ଯେ ବସଇ ।୩୦।
ପର, ରଜ ଯେ ଗୃଣ ତହିଁ । ଣ, ମ, କ, ଦ ମିଶି ଆଠହିଁ ॥
ଏ ଭେଦ ଜାଣିଲେ ଗୋସାଇଁ । ସାଧକ ପତନ ଖଣ୍ଡଇ ॥
ଅକାର ଆକାର ଇକାର । ଈ ଅକ୍ଷର ଯେ ଉକାର ॥
ଆବର ଉକାର ବନ୍ଧବ । ଏ ଛଅ ଅକ୍ଷର ସ୍ୱଭାବ ॥
ଋ ଌ ଏ ବେଦ ଅକ୍ଷର । ଝିଁ ଝୁଁ ମିଶିଣ ଗୃଣ ଭର ।୩୫।

---

୧୭—୨ ତହିଁ ପାଖେ (ଖ) ୧୯—ଏକାର ତହିଁର ଯେ ଘର—ମଣ୍ଡଳ ପାଶର (କ) ୨୮—ଓଁକାର ଅର୍ଦ୍ଧାଙ୍ଗରେ ଶିର । ହାକର—(କ) ;

୨୯—୧ ଓଁକାର ହକାର ମଧ୍ୟରେ (କ) ।

୩୫—୨ ଝିକାର ମିଶି ଢଳକ୍ଷର (କ)

ଏ ଐ ଅକ୍ଷର ଦୁଇ ସାର । ଓଁ ବୋଲିଣ ଏକ ଧର ॥
ଔ ମିଶିଣ ଦୁଇ କହୁ । ଅଂ ଅଃ ବର୍ଣ୍ଣ ଅଟେ ଏହୁ ॥
ଏହା ଜାଣିଲେ ସିଦ୍ଧ ବୋଲି । ଏ ଅଟେ ସାଧୁ ସନ୍ଥ ବୁଲି ॥
ଏ ଷୋଳ ଦୁଇଭାଗ ହୋଇ । ଅନୁସ୍ୱାର ଯେ ମଧ୍ୟେ ଦେଇ ॥
ଏହା ଜାଣିଲେ ସିନା ଦାସ । ନ ଜାଣି ପ୍ରାଣୀ ଯାନ୍ତି ନାଶ । ୪୦ ।
ସକଳ ମନ୍ତ୍ରବୀଜ ଏହୁ । ଭଗତମାନେ ଛନ୍ତି ଧ୍ୟାୟି ॥
କଅ ଠାବରୁ ଠ,ଅ ବାର । ଛଡ଼ରେ ଅନୁସ୍ୱାର ଧର ॥
ତ ଫ ମିଶିଣ ଦଶ'କ୍ଷର । ପଞ୍ଚରେ ଭେଦ ପୁଣ କର ॥
ବ, ଲ ମିଶିଣ ଛଡ଼ କହୁ । ଚଉଦରେ ଭାଗ ଦେବ ତହିଁ ॥
ବ ସ ମିଶିଣ ଗୁଣ'କ୍ଷର । ଦୁଇରେ ଏକ ଥିବ ଗାର । ୪୫ ।
ବ ସ ମଧ୍ୟରେ ଯେଉଁ ଗାର । ମିଳିବ ଆକାର ଯେ ଘର ॥
ଏମନ୍ତେ ଯନ୍ତ୍ରବନ୍ଧ କହୁ । ସାଧିବ ଗୁରୁବନ୍ଧ ଏହୁ ॥
ଏ ଅଟେ ଭଗତିର ସାର । ପାପରୁ ଅଟଇ କୁଠାର ॥
ଏ ଭେଦ ଜାଣିଲେଟି ଗୁରୁ । ପ୍ରାଣୀ ତରନ୍ତି ଏ ଭବରୁ ॥
ଆତ୍ମାକୁ ଆତ୍ମା ଯେବେ ଧ୍ୟାୟି । ପରମ ଆନନ୍ଦ ସେ ହୋଇ । ୫୦ ।
ଶ୍ରୀକୃଷ୍ଣ ସଦ୍‌ଗୁରୁ ଯେ ଗୁରୁ । ଶ୍ରୀକୃଷ୍ଣ ଆପଣା ହୃଦରୁ ॥
ଆପଣା ନାମ ଜପେ ପୁଣ । ବିଖ୍ୟାତ କଲେ ଯଦୁ ରେଣ ॥
ଷୋଳ ନାମ ଯେ ମନ୍ତ୍ର ସାର । ବତିଶ ଅକ୍ଷର ବିସ୍ତର ॥
ଷୋଳ ନାମରୁ ଚଉ ଆଣି । ବିଖ୍ୟାତ ସଂସାରେ ଯେ ପୁଣି ॥
ଚଉ ନାମକୁ ଜପ କର । କହିଲେ ସଂସାରେ ବିସ୍ତାର । ୫୫ ।
ହରିବୋଲ କୃଷ୍ଣାଦି ରାମାଦି । ଏମନ୍ତେ ଚଉ ନାମ ବିଧି ॥
ଓଁକାର ଆଦି ଏକ ନାମ । ବୈଷ୍ଣବ ଗୁଣ ଯଥ ଧାମ ॥
ଓଁ ରାମ ରାମାନନ୍ଦ ଧରେ । ଓଁ କୃଷ୍ଣ କୃଷ୍ଣାଦି ସୁମରେ ॥
ଓଁ ହରେ ହରିବୋଲ ଭଗତ । ଏମନ୍ତେ ମନ୍ତ୍ର ଯେ ଗୁପତ ॥

---

୫୭—୧ ଓଙ୍କାର ଆଦି (ଖ); ୫୮—୧ ଓ ରାମ ନାମ ଚନ୍ଦ ଧରେ (ଗ);
୫୯—୧ ଓଁ ହରେ ରାମାଦି ଭଗ (କ);

ରାଧା କୃଷ୍ଣ ଯେ ଗୁରୁ ଶିଷ୍ୟ | ମନ୍ତ୍ର ବାନ୍ଧବ ଯେ ହରଷ ||
ହରେ ଯେ ଶିଷ୍ୟ ପାପ ହରେ | ଗୁରୁ ଯେ ରାମ ସ୍ତୁତି କରେ ||
କୃଷ୍ଣର ନାମ ଧ୍ୟାନ କୃଷ୍ଣ | ଓଁକାର ରାଧ ନାମ ଶୂନ୍ୟ ||
ଗୁରୁଟି ଶୂନ୍ୟମୟ ରୂପ | ଓଁ ରାମ ଗୁରୁଙ୍କ ସ୍ୱରୂପ ||
ଏଣୁଟି ହରେ କୃଷ୍ଣ ରାମ | ଛଡ଼ ଅକ୍ଷରର ଦଶ ନାମ ||
ଏ ନାମ ଚୈତନ୍ୟ ଠାକୁର | ସାରଙ୍ଗ ଗୋସାଇଁ କର୍ଣ୍ଣର ||
ଶ୍ୟାମ ଗୋସାଇଁ କର୍ଣ୍ଣମୂଳେ | ସାରଙ୍ଗ ଗୋସାଇ କହିଲେ ||
ରାମ କୃଷ୍ଣ ଯେ ଗୋସାଇଁରେ | ଶ୍ୟାମ ଗୋସାଇଁ କୃପା କରେ ||
ନବ କଶେ ର କର୍ଣ୍ଣମୂଳେ | ରାମ କୃଷ୍ଣ ଯେ ଗୁରୁ ଦେଲେ ||
ସନାତନ ଯେ ଦାସକୁହି | ନବକଶେ ର ହେଲେ କହି ||
ମୁଁ ଅଟେ ଅଚ୍ୟୁତ ଯେ ଦେଖି | ସନାତନ ଯେ କୃପା ହୋଇ ||
ଅଚ୍ୟୁତାନନ୍ଦ ମୁହିଁ ପୁଣ | କହିଲ ଯେ ରାମ କର୍ଣ୍ଣେଣ ||
ରାମ କହିଲେ ମୁକୁନ୍ଦରେ | ରାହାସ ଗୋପାଳ କର୍ଣ୍ଣରେ ||
ହରେକୃଷ୍ଣ ଯେ ମନ୍ତ୍ର ସାର | କଳରେ ହୋଇଲା ପ୍ରଗାର ||
ଦ୍ୱାପର ଯୁଗେ ମନ୍ତ୍ରସାର | ଗୋପାଳ ଅଷ୍ଟାଦଶାକ୍ଷର ||
କ୍ଲୀଁ କୃଷ୍ଣାୟ ଯେ ନମୋନମ | ଗୋବିନ୍ଦାୟ ଯେ ଗୋପୀ ନମଃ ||
ଜନ ବଲ୍ଲଭାୟ ଟି ଗୁଢ଼ | ଦ୍ୱାପର ବଇଷ୍ଣବ ଦୃଢ଼ ||
ଚନ୍ଦ୍ରାବଳୀ ଯେ ଜନ କହି | ଶିଷ୍ୟ ଭଗତ ଭାବ ହୋଇ ||
ଗୋପୀ ଗୋବିନ୍ଦ ଗୁରୁଧ୍ୟାନ | କାଳରି କୃଷ୍ଣର ଭଜନ ||
ଗୁରୁଙ୍କ ଅଟେ ଉପଦେଶ | ଦ୍ୱାପର ଯୁଗ ମନ୍ତ୍ର ରସ ||
ଓଁ ରାମ ତ୍ରେତୟା ଯୁଗରେ | ପରଆତ୍ମ ଯେ ରାମ ଧରେ ||
ନିରଞ୍ଜନ ଯେ ତତ୍ତ୍ୱଧ୍ୟାନ | ଯେ କରେ ମନ୍ତ୍ର ଉପ ସନ ||
ଶ୍ରୀ କାଶୀ ବାରାଣସୀ ଫଳ | ଅଯୋଧ୍ୟା ଦ୍ୱାରକା ମଣ୍ଡଳ ||

---

୬୧—୨ ରାଧ ସ୍ତୁତ (ଖ);

୬୮—୧ ନନ୍ଦକିଶୋର (କ);

ଶ୍ରୀ ବୃନ୍ଦାବନ ଯେ ମଥୁରା । ଶ୍ରୀପୁର ବଦରୀ ଲମ୍ବିଲ ॥
ଓଁ ରାମ ନିରଞ୍ଜନ ଛଡ଼ । ଏ ଅଟେ ମନ୍ତ୍ରଙ୍କର ଦୃଢ଼ ॥
ଜନ ଅଟଇ ଶିଷ୍ୟ ଧ୍ୟାନ । ନର ବୋଲିଣ ଗୁରୁଜ୍ଞାନ ।୮୫।
ରାମ ବୋଲିଣ କୃଷ୍ଣ ସ୍ୱର । ରାମ ବୋଲିଣ ବଳଦେବ ॥
ରାମ କୃଷ୍ଣ ଯେ ଭେଦ ନୋହେ । ଅଙ୍ଗ ଅଙ୍ଗରେ ବେନି କାୟେ ॥
ସତ୍ୟଯୁଗରେ ନାରାୟଣ । ମନ୍ତ୍ର ଯେ କଲେ ଉଚ୍ଚାରଣ ॥
ନାରାୟଣ ଯେ ନମୋନମଃ । ସ୍ୱାରବିଁ ନାରାୟଣ ରମ୍ୟ ॥
ଶାସ୍ତ୍ର ବୋଲିଣ ଶିଷ୍ୟ ରହେ । ନର ବୋଲିଣ ଗୁରୁଧ୍ୟାୟେ ।୯୦।
ସ୍ୱାରଉଁ କୃଷ୍ଣ ରୂପ ଲୟେ । ଏମନ୍ତେ ସତ୍ୟ ମନ୍ତ୍ର ହୋଏ ॥
ଆଦ୍ୟ ଅନନ୍ତ ଯୁଗକାଳେ । ଏକା ଅକ୍ଷର କର୍ଣ୍ଣମୂଳେ ॥
ଦ କାରେ ତ କାର ଥୋଇବ । ଦ୍ର କାର ତଥିରେ ସ୍ୱରବ ॥
ଅଙ୍କ ଯେ ଆଠ ତଳେ ଦେଲେ । ଆକାର ମାତ୍ରାକୁ ଥୋଇଲେ ॥
ଘ କାର ମାତ୍ରାକୁ ବନ୍ଧିବ । ପଢ଼ିଲେ ଯେମନ୍ତ ହୋଇବ ।୯୫।
ରେ କାର ଶିଷ୍ୟର ଭଜନ । ଓଁ କାର ଧନ' କ୍ଷର ଘେନ ॥
କୃଷ୍ଣଙ୍କ ଭଗତ ଏ ଧନ । ଉକାରୁ ଗୁରୁ ଶାନ୍ତ ଘେନ ॥
ଏହା ନ ଜାଣି କରେ ଶିଷ୍ୟ । ଭବ ଲୋକରେ ଉପହାସ ॥
ଗୋଲକ ମନ୍ତ୍ର ଅକ୍ଷର । ଗଙ୍ଗା ବୋଲିଣ ଏ ଶରୀର ॥
ଆକ'ରେ ପାଞ୍ଚକୁ ଥୋ'ଇବ । ତେବେ ସେ ଆତ୍ମାକୁ ବାନ୍ଧିବ ।୧୦୦।
ଏ ଛଡ଼ ମନ୍ତ୍ରଙ୍କର ଗୁଣ । ଯନ୍ତ୍ର ବାନ୍ଧିବ ଶରୀରେଣ ॥
ଏବଧି ଗୁରୁଙ୍କର କଥା । ଗୁପ୍ତତ ଶିଷ୍ୟକୁ କହନ୍ତା ॥

---

୮୩—୨ ଲମ୍ବିକା (କ)

୯୨—୨ କୃଷ୍ଣମୂଳେ (କ)

୯୩—୧ ଦକାର ଦ୍ରକାର (ଖ)

୯୬—୨ ଓଁକାର ଧନ, (କ)

୯୭—୧ ଉକାରୁ (କ) ୯୯—୨ ଗୋ ବୋଲିଣ ଯେ (କ),

ଅଶେଷ ଜନ୍ମ ଭାଗ୍ୟ ଥିଲେ । ଏ ଗୁରୁ ମିଳଇ ସୁଫଳେ ॥
ଏହା ନ ଜାଣି କଣ୍ଠି ଧରେ । ବସଇ ପଥର ନାବରେ ॥
ଅନ୍ଧକୁ ଅନ୍ଧ ପଥ ଯେସନେ । ବଧିରେ ବଧିର ସଙ୍ଗ କଣ୍ଠେ ।୧୦୫।
ଜଡ଼କୁ ଜଡ଼ ଯେସନେ ଶିକ୍ଷା । ପଣ୍ଡିତ ମୂର୍ଖେ କି ସମସ୍ୟା ।
ମୁଦ୍ରିତ ପୁଷ୍ପେ କି ଭ୍ରମର । ସେ ଶିଷ୍ୟ ନିଷ୍ଫଳ ଶରୀର ॥
ଭକ୍ତି ନ ଭେଦ ଯେଉଁ ଗୁରୁ । ତୁଟଇ ସେବା ଶିଷ୍ୟଠାରୁ ॥
ସେ ଶିଷ୍ୟ ଧନ ହୋଏ ନାଶ । ତୁଟଇ ପୁତ୍ର ଅନ୍ନଗ୍ରାସ ॥
ପୁଣ ଲଭଇ ପଶୁଯୋନି । ବଜ୍ର ଲେପ ତ ବାକ୍ୟ ଘେନ ।୧୦।
ଶିବ ଠାବରେ ପାପ କଲେ । ଖଣ୍ଡନ ହୋଏ ଧନ ଦେଲେ ॥
ବିଷ୍ଣୁ ଠାବରେ ପାପ କଲେ । ଖଣ୍ଡନ ଧନ ସ୍ତୁତି କଲେ ॥
ଗୁରୁ ଠାବରେ ପାପକଲେ । ବଜ୍ର ପଡ଼ଇ ତାର କୁଳେ ।
ଗୁରୁ ବୈଷ୍ଣବ ଏକ କାନ୍ତି । କୃଷ୍ଣ ବୈଷ୍ଣବ ବଡ଼ ଯନ୍ତି ॥
ଗୁରୁ ବୈଷ୍ଣବ ଦୟା କଲେ । ଏ ଜୀବ ତରେ ଭବ ଜଳେ ୧୧୦।
ସମୁଦ୍ରେ ବୋଇତ ଯେମନ୍ତ । ବୋଇତେ ପତି ଗୁରୁ ଯେ ତ ॥
କୃଷ୍ଣ ଯେ ସୁହେଉ ପବନ । ଲାଗଇ କୂଳେ ସେହୁ ଜନ ॥
ଏ ତିନି ଯାହାକୁ ନ ମିଳେ । ବୁଡ଼ି ମରଇ ଭବଜଳେ ॥
ଶ୍ରୀରାମାନନ୍ଦ ନିମାନନ୍ଦ । ବିଷ୍ଣୁ ଶ୍ୟାମ ଏ ଗୁରୁ ବନ୍ଦ ॥
ଏ ସ୍ମର ପଥର ଭଗତ । ଶରଣ ପାମର ଅଚ୍ୟୁତ ।୧୨୦।

ଇତି ଶ୍ରୀ ଗୁରୁଭକ୍ତି ଗୀତା ପ୍ରଥମ ଛାନ୍ଦ

—:୦:—

---

୧୦୫—୨ ବଧିର ବଧ ସଙ୍ଗ (ଖ) ?
୧୦୬—୧ ପଣ୍ଡିତେ ମୂର୍ଖଙ୍କୁ (ଖ).
୧୧୧—୨ ବିଷ୍ଣୁ ଶ୍ୟାମ ମାଧବାନନ୍ଦ (ଖ)

# ଦ୍ୱିତୀୟ ଛାନ୍ଦ

ପୁଣ ପଚ୍ଛରେ ରାମଚନ୍ଦ୍ର ଶିଷ୍ୟ । କେଉଁଠ ରେ ମନ୍ତ୍ର ଦେବା ଦୁରନ୍ତ ।
କି ବିଧି କରିଣ ଶିଷ୍ୟଙ୍କୁ ପୁଣି । ମନ୍ତ୍ର ଉଚ୍ଚାରିବ ହୃଦରେ ଗୁଣି ।
ଶ୍ରୀଗୁରୁ ଠାକୁର । କୃପା କରିବ ସୁଦୟା ହୃଦର ।୧।

ଶୁଣହେ ହନୁଆନ ରାମ ଭଗତ । ନାଦ ପୁତ୍ର ମୋର ରୂପେ ଦୁଇ ତ ।
ନାଦ ପୁତ୍ର ବଡ଼ ସଂସାରେ ସାର । ବିନ୍ଦୁପୁତ୍ର ତନ ପୀଡ଼ାରେ ପର ।
ହେ ବରକବଂଶ । ସୋମବଂଶ ମଦ୍ଧା ଅଭେଦ ରସ ।୨।

ପୁତ୍ରକୁ ଯେମନ୍ତ ପିତ କପଟ । ପୁତ୍ରକୁ ମାତା ଯେ ଅନ୍ତର ଘଟ ।
ଗୁରୁ ନ ଶିଖାଇ ଶିଷ୍ୟକୁ ମନ୍ତ୍ର । ପଢ଼ି ଭେଜିବ ଯେହ୍ନୁ ନାସ୍ତିତନ୍ତ୍ର ।
କାହାକୁ କହିବା । ବ୍ୟର୍ଥେ ଜନମ ବୋଲି ଜାଣିବା ।୩।

ପରମ ଭଗତ ଶୁଣ ଗୁପତ । କହୁ କହିବା ମନ୍ତ୍ରର ତଦନ୍ତ ।
ସୁବର୍ଣ୍ଣ ଲେଖନ ଗୋଟିଏ କରି । ଦ୍ୱାଦଶ ଅଙ୍ଗୁଳ ମାପିବ ଧରି ।
ସେ ଜିହ୍ୱା ଅଗ୍ରେଣ । ଅଣାକ୍ଷର ତହିଁ ଲେଖିବ ପୁଣ ।୪।

ରୂପାର ଲେଖନ ଅଷ୍ଟ ଆଙ୍ଗୁଳ । ଏକାକ୍ଷର ମନ୍ତ୍ର ହୃଦରେ ଖୋଳ ।
ଲେଖିବ ନାସିକା ଦ୍ୱାରେଣ ପୁଣ । ହଂସ ପରେଚ କରି ସେଠାରେଣ ।
ସେ ଚକ୍ଷୁଠିରେ । ଆତ ଯାତ ହେଉଅଛୁ ସେ ବାଟେର ।୫।

ପ୍ରବାଳ ବତା ଯେ ଷଡ଼ ଆଙ୍ଗୁଳ । ଲେଖନ ପରାସ୍ତେ ହସ୍ତେ ନିର୍ମଳ ।
ଗୋପାଳ ମନ୍ତ୍ର ଯେ ମୂର୍ଦ୍ଧନ ପରେ । ସର୍ବେ ଲେଖିବ ଯେ ଶିଷ୍ୟ ଅଙ୍ଗରେ ।
ଗୋପାଳ ମୂରତି । ଶ୍ୱେତ-ରଙ୍ଗ-କଳା-ଶ୍ୟାମଳ-ଜ୍ୟୋତି ।୬।

ମୋତି ଗୋଟିଏକ ହସ୍ତେ ଧରିବ । ଶିଷ୍ୟ ଦକ୍ଷିଣ କର୍ଣ୍ଣରେ ଲେଖିବ ।
ଷୋଳ ନାମ ଯେ ବତିଶ ଅକ୍ଷର । ମୁଖେ ପବନ ପୂରିବ ସୁସ୍ୱର ।
ଏ ଗୁରୁଙ୍କ ଗତି । ଏ ଗୁରୁଆନେ ଯେ ମନ୍ତ୍ରଙ୍କ ସ୍ଥିତି ।୭।

---

୧-୩—କି ବୃଦ୍ଧି (କ) ; ୭-୪—ପବନ ଶୁଦ୍ଧିବ (କ), ।

ଯୁଗଳ ମନ୍ତ୍ର ଯେ ବାମ କର୍ଣ୍ଣରେ । ମାଳା ଗୋଟିଏ ଗୁରୁଙ୍କ ହସ୍ତରେ ।
ଲେଖିବ ରାଧେ-କୃଷ୍ଣ ରାଧେ-ଶ୍ୟାମ । ଗୁରୁ ଭଗତ ଅଟଇ ଉତ୍ତମ ।
ଶିଷ୍ୟର କାରଣ । ଏମନ୍ତ ଶିଷ୍ୟଟି ଉଦ୍ଧାର ଜାଣ । ୮ ।

ଦନ୍ତପଙ୍କ୍ତି ମଧ୍ୟ ଶିଖମୁନାରେ । ନାରାୟଣ ମନ୍ତ୍ର ଦେବ ଯେଠାରେ ।
ହୀରା ଗୋଟିଏକ ହସ୍ତରେ କର । ଶିଷ୍ୟକୁ ଲେଖିବ ଦନ୍ତ ମୂଳର ।
ଭାଗ୍ୟ ସେହୁ ଶିଷ୍ୟ । ମୁକ୍ତ ନ ପାନ୍ତି କୋଟି କଲେହେଁ ଲେଶ ।୯।

ମାଣିକ୍ୟ ଗୋଟିଏ ଘେନଣ କରେ ! କୃଷ୍ଣ ମନ୍ତ୍ରକୁ ସୁମର ମନରେ ।
ଦକ୍ଷିଣ ନୟନେ ଲେଖିବ ପୁଣ । ଏହା ନ ଜାଣିଲେ ପଶୁରେ ଗଣ ।
ଅନ୍ନ ତାହା ହାତ । ଛୁଇଁ ନ ଯୋଗାଇ ସେ ବବର୍ଜିତ । ୧୦ ।

ବୈଡ଼ୁର୍ଯ୍ୟ ଗୋଟିଏ ଘେନମ କରେ । ଠାକୁରାଣୀ ମନ୍ତ୍ର ବାମ ଚକ୍ଷୁରେ ।
ଲେଖିବ ଗୁରୁ ଶିଷ୍ୟ ଅଙ୍ଗେ ପୁଣି । ଭବରୁ ତରନ୍ତି ଶିଷ୍ୟ ପରାଣୀ ।
ଗୁରୁଙ୍କ ଭଣ୍ଡାର । ଦେବ ଉତ୍ତମ ଶିଷ୍ୟରେ ବହୁର । ୧୧ ।

ବୈଡ଼ୁର୍ଯ୍ୟ ଗୋଟିଏ ଗୁରୁ ଘେନଣ । ଅନନ୍ତ ମନ୍ତ୍ର ହୃଦେ ସୁମରଣ ।
ଗଣ୍ଡସ୍ଥଳରେ ଏମନ୍ତ୍ର ଲେଖିବ । ଏମନ୍ତ ଶିଷ୍ୟ ଭଗତ ଲଭିବ ।
ଶ୍ରୀକୃଷ୍ଣ ଚରଣେ । ମିଳଇ ସେ ଶିଷ୍ୟ ମନ୍ତ୍ର ଜପନେ । [illegible] ।

ନବତନ ପାଟ ବସ୍ତ୍ର ଯେ ଏକ । ତିଳକ ମନ୍ତ୍ର ଲେଖି ଲଲାଟେକ ।
ହର ମନ୍ଦର ଯେ ତିଳକ ଦେଇ । ଶ୍ରୀ ଗରୁଡ଼ କଳା ଲଲାଟେ ଲହ ।
ସେ ବନ୍ଦୁ ଗୁପତ । ସୁସାଧୁ ଜାଣନ୍ତି ତହିଁ ତଦେନ୍ତ । ୧୩ ।

ପୁଣ ଜଣାଉଛୁଁ ବ୍ରଜ ଅନନ୍ତ । ଶିଷ୍ୟ କରୂପେ ମିଶିବ ଯତ୍ନେ ତ ।
କ ରୂପେ ଆସିବ ଗୁରୁଙ୍କ ପାଶ । ବାରଜଣ ଶିଷ୍ୟ ନ ଧର ଦୋଷ ।
ହେ କରୁଣାକର । ଏ ଗୋପ କୁଳର ସଂଶୟ ହର । ୧୪ ।

---

୯-୫—ଭାଗ ଶିଷ୍ୟ ପୁଣି··· ···ଗୁଣି (କ)

୧୨-୫—ସେ କୃଷ୍ଣର ଗଣେ ଖ) ।

୧୪-୫—କରୁଣା ଟେଯ କର (ଖ) ।

ପଚଶ ହାତ ମାପରେଣ ଶିଷ୍ୟ । କରଯୋଡ଼ି ଶିରେ ଥିବ ହରଷ ।
ଆପଣା ଗୁରୁନାମ ସେହିଠାରେ । ଶୁଣାଇ ପ୍ରଣାମ କରି ସେଠାରେ ।
ସେ ଛଡ଼ ପାହୁଲ । ସାତ ପାହୁଲରେ କରିବ ଗଲ । ୧୫ ।

ଗୁରୁଙ୍କ ଗୁରୁ ସେଠାରେ ସୁମରି । ବାର ପୁରୁଷ ଯେ ହୃଦେ ସୁମରି ।
ଦଣ୍ଡବତ କରି ଆପୁଣ ଥିବ । ଦ୍ୱାଦଶ ପୁରୁଷ ଗୁରୁ ଧ୍ୟାଇବ ।
ଏ ଗୁରୁଙ୍କ ବିଧି । ସାଧକ ଜନର ଅଟଇ ସିଦ୍ଧି । ୧୬ ।

ତିନ ହାଥ ଅନ୍ତେ ମନନ୍ତ ମାପ । ବସ୍ତୁ ଲକ୍ଷ ହାଥ ଶିଷ୍ୟ ଭୂମି ତ ।
ଛନ ହାଥ ଅନ୍ତେ ଯନ୍ତ୍ର ଥାପିବ । ତିନ ହାଥ ଅନ୍ତେ ପୁଜା ବନ୍ଧିବ ।
ହାତେକ ମାପିଣ । ଗୁରୁ କରିବ ସମାଧି ଧାରଣ । ୧୭ ।

ପୂର୍ବମୁଖ କରି ଗୁରୁ ବସିବ । ଶିଷ୍ୟ ଯେ ପଶ୍ଚିମ ମୁଖ ହୋଇବ ।
ଦକ୍ଷିଣ ଭାଗରେ ଯନ୍ତ୍ରକୁ ଲିହି । ବାମ ପାଖୁଣେ ଗୁରୁଙ୍କୁ ବସାଇ ।
ଗୁରୁ ପଥେ ଗୁରୁ । ନବତନ ଶିଷ୍ୟ ଆସି ପାଶରୁ । ୧୮ ।

ଦଣ୍ଡବତ କରି ସେହି ଠାବରେ । ଅଳଗେ ଆସିବ ଏ ବାମ ଫେରେ ।
ଗୁରୁ ଆଜ୍ଞାଦେବେ ବସ ଏଠାରେ । ସମାଧି ଲଗ୍ନେ ଗ୍ରହଣ ମନରେ ।
ତା ଅଙ୍ଗର ପାପ । ଯେ ପାପ ଥିବ ତା ଅଙ୍ଗରେ ଗୋପ୍ୟ । ୧୯ ।

ଅଷ୍ଟାଦଶାକ୍ଷର ମନ୍ତ୍ର ଯେ ଗୁଣି । ଏ ଖଡ୍ଗରେ ଗୋପ୍ୟ ପାପକୁ ହାଣି ।
ପାପ ନ କାଟିଣ କରନ୍ତି ଶିଷ୍ୟ । ଅନ୍ନ ନ ମିଳଇ ପୁତ୍ର ଯେ ନାଶ ।
ସେ ବଧିର ହୋନ୍ତି । ଏମନ୍ତ ଗୁରୁଙ୍କୁ ନାହିଁ ନା ଗତି । ୨୦ ।

କୁଷ୍ଠ ଜାତ ହୋଏ ଗୁରୁ ଶରୀର । ନାଶ ହୁଅଇ ଯେ ଧନ ତାହାର ।
ପୁତ୍ରମାନେ ତାର ହୁଅନ୍ତି ରୋଗ । ସଂସାର ତାକୁ ଯେ ନୁହଇ ଭୋଗ ।
ହେବାର ବରଷ । ଗୁରୁଙ୍କୁ ସେବା କରିବ ହରଷ । ୨୧ ।

---

୧୫-୧... ପଞ୍ଚାଶ ହାଥ (ଗ) ।

୧୯-୧—ସେହି ଠାବରେ (କ) ।

ଗୁରୁଭଣ୍ଡାର ଯେ ଅତି ଗହନ । ସନ୍ଦେହେ ଗନ୍ଧର୍ବ ଜଗିଥା ଥ ନ ।
ବନ୍ଧୁବାକୁ କ୍ଷେମ ଅଛୁ କାହାର । ଯାହାକୁ କୃପା କରନ୍ତି ଠାକୁର ।
ସେ ମୁରଲୀଧର । କରୁଣା କଲେ ଯେ ଢିଳ ନଗର ।୨୨।

ଦୀନ ଅଚ୍ୟୁତଙ୍କୁ କରୁଣା କଲେ । ଉପଦେଶ ଟୀକା ଲେଖ ବୋଇଲେ ।
ଗୁରୁ ଭଣ୍ଡାରରୁ କିଛୁ ଲେଖିଲି । ସନ୍ଥ-ଚରଣଙ୍କୁ ଭରସା କଲି ।
କ୍ଷୀଣ ଶରୀରରେ । ବୁଡ଼ି ରହିଲି ଏ ଭବଜଳରେ ।୨୩।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ଦ୍ୱିତୀୟ ଛାନ୍ଦ ॥

—:o:—

୨୩-୫ - ମୁଁ କ୍ଷୀଣ ଦୀନରେ ଖ) ।

## ତୃତୀୟ ଛାନ୍ଦ

ବନ୍ଦ ଯାଦବର ସ୍ତୁତି ଯେନ୍ନମା । ଗୁରୁ ପୂଜ ବିଧି କେମନ୍ତ ସୀମା । ୧ ।
ଶୁଣ ହେ ଭଗତ କନ୍ଧବା ତୋରେ । ଗୁରୁ ପୂଜାବିଧି ଯେଉଁ ସ୍ୱବରେ ॥
ସପତ ସେବ ଯେ ଘୃତ କରିବ । ସାତମୁଖ କରି ଦୀପ ଆଣିବ ॥
ସାତ ଠାବ କରି ଜାଳିବ ଘୃତ । ଏମନ୍ତ ହୋଇଣ ଘୃତ ସଂଯୁକ୍ତ ॥
ଅଗର ଚନ୍ଦନ ଚୂଆ ମିଶାଇ । ପୂଜା ଠାବରେ ଯେ ଥୋଇବ ନେଇ । ୫ ।
ଫୁଲ ଧଣ୍ଡା ମାନ ଥୋଇବ ପାଣି । ସାତ ଗାଈ ଗୁଆ ରଖି ହରଷ ॥
ହରିଡ଼ା ରଖିବ ପାଞ୍ଚ ଯେ ଗାଈ । ବାର ପୁରୁଷ ଗୁରୁ ସେବା ପାଇଁ ॥
ପୂର୍ଣ୍ଣ କୁମ୍ଭ ଯେ ଗୋଟିଏ ଆସିବ । ପୁରୁଣା ହାଣ୍ଡି ଯେ ଘରେ ନ ଥିବ ॥
ଝିଣ୍ଟ୍ୱାଳ ବସ୍ତ୍ର ସମସ୍ତେ ପିନ୍ଧିବ । କନ୍ଧରେ ଏକ ମୁରତି ଯେ ଥିବ ॥
ମଙ୍ଗଳ ହୁଳହୁଳି ଘରେ ଦେବ । ଗୁରୁ କୃଷ୍ଣ ପୂଜା ଗୃହେ କରିବ ।୧୦।
ଏମନ୍ତ ଶିଷ୍ୟ ଯେ ଭକତହେବ । ଗୁରୁ କୃଷ୍ଣ ପୂଜା ଗୃହେ କରିବ
ସ୍ୱର୍ଣ୍ଣ ସର୍ମ୍ମ ଦାରୁ ସ୍ୱର୍ଣ୍ଣ ମୂରତି । ଗୃହରେ ପୂଜିବ କରି ଅନ୍ତସ୍ଥ ॥
ପଇଡ଼ ପଣା ଯେ ନଡ଼ିଆ ଫଳ । ଛେନା ନବାତ ପଂଚଲ୍ଲ କଦଳ ॥
ଖଜା ମିଠାଇ ଯେ ଚଣା ପାପଡ଼ । ବିବିଧ ପ୍ରଫଳ ଏ ସର ଗୁଡ଼ ॥
ନବତନ ହାଣ୍ଡି ଦ୍ରବ୍ୟ ପୁରେଇ । ଡାକୁଣି ଦେଇ ପୂଜାଏନେ ଥୋଇ ।୧୫।
ହୁଣ୍ଡି ବଟଣ ସୁପାଟ ତାଟେ । ବାର ମୂରତି ଯେ ସୁବସ୍ତ୍ର ଘଟେ ॥
ବାର ପୁରୁଷ ଯେ ଗୁରୁଙ୍କ ପାଇଁ । ବାର ମୂରତି ଯେ ବସ୍ତ୍ର ଛୁଆଇ ॥
ଗୁରୁଙ୍କୁ ନବତନ ବସ୍ତ୍ର ଏକ । କନ୍ଧିକୁ ଦେବ ପାଗ୍ରେଡ଼ା ସରୁକ ॥
ନବତନ ବସ୍ତ୍ର ଶିଷ୍ୟ ପିନ୍ଧିବ । ଶିଷ୍ୟ କନ୍ଧେ ଏକ ମୂରତି ଥିବ ॥

---

୧୦-୧ । ମଙ୍ଗଳ ହୁଳା ହୁଳି ଘରେ ଦେବ (ଖ) ;
୧୦ । (ଖ)ରେଜାଣ୍ଡି ଏହାସ୍ଥାନରେ ୧୧ ପଦ ଅଛି । ୧୪-୧ । ମିଠାଇ ଯେ
ଚଣ୍ଡ (କ) । ୧୪-୨—ଏରସ (କ)

ଶିଷ୍ୟଙ୍କୁ ଏକ ବସନ ଘୋଡ଼ାଇ । ବେନଜନେ ଏକା ରହିବେ ତହିଁ ।
ମନ୍ତ୍ରାମନ୍ତ୍ର ଶିଷ୍ୟ କର୍ଣ୍ଣରେ ଦେବ । ଶିଷ୍ୟର ମୃଣ୍ଡାଳ ଅଙ୍ଗ ଫେଶବ ॥
ସ୍ମର ସମ୍ପ୍ରଦାକୁ ସ୍ମର ମୁରତ । ରମାନନ୍ଦ ନମାନନ୍ଦଙ୍କୁ ଚନ୍ତ ॥
ବିଷ୍ଣୁ ସ୍ୱାମୀ ଯେ ମାଧବ ଆଚାର୍ଯ୍ୟ । ଏ ବିଧି ପ୍ରକାରେ ପୂଜା ହୋ ବୃନ୍ଦ ॥
ମାଧବେନ୍ଦ୍ର ପ୍ରଭୁ ଚରଣ ତଳ । ବିଧି ବିଧାନରେ ପୂଜା ସକଳ ॥
ଭଜନ ଭୋଜନ ଅଟେ ଗୁପତ । ଅଛି ସ୍ନେହ କର ଏ ଦୁଇ ମତ ।
ଏ ଦୁଇ କଥା ଯେ ସଂସାରେ ସାର । ସ୍ତ୍ରୀ ପୁରୁଷ ଯେମନ୍ତ ବେଭାର ॥
ରାଜ ଉବସ ଯେ ଯେମନ୍ତ ହୋଇ । ବେଜ ହସ୍ତ ଯେହ୍ନେ ଶସ୍ତ୍ରରେ ରହ ॥
ସେହୁ ପ୍ରକାରେଟି ବିଚାର କର । ମନ୍ତ୍ର ଯନ୍ତ୍ର ଏଟେ ଗୁରୁଙ୍କ ସାର ॥
ଶିଖିବା ଦେବା ଯେ ହେବା ଉଗଢ । ଶିଷ୍ୟର ଏ କଥା ଅଟଇ ନନ୍ଦ ॥
ଫଳେ ପୁଷ୍ପେ ଦ୍ରବ୍ୟେ ଯେତ୍କୁ ମିଳିବ । ଯେ ଅବା ଆପଣେ କମାଇଥିବ ।
ଗୁରୁଙ୍କ ଅଗ୍ରତେ ନେଇ ନିଯୋଗ । ଶିଷ୍ୟର ଉଗଢ ଅଟଇ ଭାଗ୍ୟ ॥
ଗୁରୁ ପୁଣ ତାହା ନେ ବାନ୍ଦେ ଦେଇ । ଏମନ୍ତ ଶିଷ୍ୟ ପରମୁକ୍ତା ଯାଇ ॥
ବୈଷ୍ଣବ ଠାବରେ ଯେ ଦ୍ରବ୍ୟ ଦେବ । ଶ୍ରୀକୃଷ୍ଣ ସେ ଦ୍ରବ୍ୟ କରନ୍ତି ଭୋଗ
ଗୁରୁ କୃଷ୍ଣ ଯେ ବଇଷ୍ଣବ ତିନ । ଅଭେଦ କଣବ ଭେଦ ନ ଘେନ ॥
ବୈଷ୍ଣବ ଗୋସାଇଁ ଉଦ୍ଧାର କର । ଭୃତ୍ୟ ପରଭୃତ୍ୟ ଅଚ୍ୟୁତ ଗୁର ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ତୃତୀୟ ଛନ୍ଦ ॥

---

୧୩ ୧ । ବିଷ୍ଣୁ ଶ୍ୟାମ ଯେ (ଖ) ।
୩୧-୨ । ଗୁରୁଙ୍କୁ ଆଗେ ତା କରାଇ ଭୋଗ (କ) ।

## ଚତୁର୍ଥ ଛାନ୍ଦ

ନନ୍ଦ ବରଜ ଶ୍ରବ ଘେନ । ଶ୍ରୀଗୁରୁ କହିବା ବଚନ । ୧ ।
କେତେ ମନ୍ତ୍ର ଯେ ଗୁରୁବୋଧ । ପ୍ରାଣୀ ଲଭନ୍ତି ଭକ୍ତି ସିଦ୍ଧି ॥
ଶୁଣ ପବନ ନନ୍ଦ ବେନ । ମନ୍ତ୍ର ଯେ ଚଉରାଶି ଘେନ ॥
ମନ୍ତ୍ର ଅଟଇ ଚଉରାଶି । ପ୍ରାପତ ଭାଗ୍ୟ ଶିଷ୍ୟେ ଦଶି ॥
ହରିତା ଫଳ ଏକ ଘେନ । ଶ୍ରୀମନ୍ତ୍ର-ରାଜ ଶ୍ରବ ଚିହ୍ନ । ୫ ।
ଦକ୍ଷିଣ ଭୂଲତା ଉପରେ । ମନ୍ତ୍ର ଲେଖିବ ସେ ଠାବରେ ॥
ଶୁଆ ଗୋଟିଏ ହସ୍ତେ ଧର । ଉଜନ ନାମକୁ ଯେ ସୁମର ॥
କୃଷ୍ଣ ହରେ ଯେ ମନ୍ତ୍ର ନେଇ । ବାମ ନୟନ ପରେ ଥୋଇ ॥
ବାମ ଯେ ଗଣ୍ଡସ୍ଥଳେ ପୁଣ । ହରିଦ ମନ୍ତ୍ରକୁ ଲେଖିଣ ॥
ସେମନ୍ତ ଓଁ ତୁଳସୀର । ଏମନ୍ତେ ମନ୍ତ୍ରର ବିଚାର । ୧୦ ।
ସମାଧି ଓଷ୍ଠରେ ଲହିବ । ତୁଳସୀ ଶିଖରେ ଲେଖିବ ॥
ଶୂନ୍ୟ ଭଜନ ମହାମନ୍ତ୍ର । ଲଲାଟ ଉପରେ ଯେ ଥାପ ॥
ଅଗ୍ର ଚନ୍ଦନ କାଷ୍ଠ କରି । ଏଥି ଲେଖିବ ମନ୍ତ୍ର ନେଇ ॥
ଗୁରୁ ପସର ଯେ ଏମନ୍ତ । ଆଖିରୁ ଯେ ଝଣ୍ଡେ ନବାଇ ॥
ବିବିଧ ବର୍ଣ୍ଣେ ପାଗ ହୋଏ । ରସିଆ ଜାଣି ରସ ଖାଏ । ୧୫ ।
ହରିର ରସଗୁଣ ତେତେ । ରସିକ ଶୁଣନ୍ତି ଶ୍ରବଣେ ॥
ଏ ରସେ ଜନ୍ମେ ଜନ୍ମେ ଦାସ । ଦୀନ ଅଚ୍ୟୁତ ଗଣ୍ଡେ ଦୋଷ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ଚତୁର୍ଥ ଛାନ୍ଦ ॥

—o—

୧୨-୨—ହରରେ ଯେ ସ୍ଥିତ (ଖ) ।

# ପଞ୍ଚମ ଛାନ୍ଦ

ଯାଦବ ବସ୍ତ୍ରେ ପୁଣ ପୁଣ । ଝାଡୁ ଶ୍ରୀଗୁରୁ ପରଶାଣ ।
କର୍ଣ୍ଣ ଠାବରେ ଯେତେ ମନ୍ତ୍ର । କହୁବା ଏଥର ତଦନ୍ତ ॥
କାମ ଗାୟତ୍ରୀ ଯେ ସାବିତ୍ରୀ । ରୁଦ୍ରସ୍ତ୍ରୀ ବ୍ରହ୍ମ ଗାୟତ୍ରୀ ॥
ଏ ମନ୍ତ୍ର ସ୍ଫଟିକରେ ପୁଣ । ଲେଖିବ ପୃଷ୍ଠପରେ ପୁଣ ॥

ଗାୟତ୍ରୀ ଛନ୍ଦକୁ ରୁଦ୍ରାକ୍ଷେ । ଲେଖିବ କର୍ଣ୍ଣ ବେନପାଖେ ।
ତୁଳସୀ ମନ୍ତ୍ରକୁ ଯେ ପୁଣ । ଲେଖିବ କର୍ଣ୍ଣନାଳେ ପୁଣ ॥
ଟଙ୍କା ଗୋଟିଏ ଯେନକର । ଲେଖିବ ମନ୍ତ୍ରକୁ ସୁମର ॥
ଏମନ୍ତେ ଲେଖନେ ଲେଖିବ । ସେ ଶିଷ୍ୟ ଭଗତ ଲଭିବ ॥
ଗୁରୁଙ୍କୁ ଦକ୍ଷିଣା ନ ଦେଇ । ଯେ ଶିଷ୍ୟ ନାମଗ୍ରାହୀ ହୋଇ ॥

ନିଷ୍ଫଳ ତାହାର ଜୀବନ । ଲଭଇ ସେହୁ ପଶୁଜନ୍ମ ।
ଜ୍ୟୋତ କ ଶ୍ରୀଗୁରୁଙ୍କ ବୋଲି । କେ କି ଗୁରୁ ଯେ ଗଲେ ଭୁଲି ।
ନ ପାଇ ଜନ୍ମିବ ଶବ୍ଦର । ଭୁଲି ମରନ୍ତି ଏ ସଂସାର ॥
ଗୁରୁ ଶିଷ୍ୟର ଦେହ ଯାଇ । ବାସନା ଯୁଗେ ଯୁଗେ ଥାଇ ॥
ମଳୟ ପବନ ଲାଗିଲେ । କାଠ ଚନ୍ଦନ ହୋଏ ଭଲେ ॥

ଗୁରୁଟି ସମାଧିକ କହୁ । ଏଣୁଟି ବଡ଼ ତହୁଁ ନାହିଁ ।
ସମାଧି ସାଧି ଯେବା ଥିବ । ସେ ଫଳ ପକ୍ୱଫଳ ହେବ ॥
ସମାଧି ସାଧନ ହେଲସ । କେଉଁରୂ ଫଳ ପ୍ରାପ୍ତେ ନାଶ ॥
ଏଣୁଟି ଶ୍ରୀଗୁରୁ ପ୍ରବନ୍ଧ । କୃଷ୍ଣ କହନ୍ତି ଗୁରୁ କର୍ଣ୍ଣ ॥
ଯେ ଗୁରୁ ଗୁରୁ ଚିହ୍ନି ଥିବ । ତାଠାରେ ଦେହକୁ ବିକିବ ॥

---

୨-୨—ମନ୍ତ୍ରକୁ ବସ୍ତ୍ରର (ଖ) । ୧୦-୨—ଜନ୍ମା ନୋହିଲ ପଶୁଜନ୍ମ (କ)
୧୮ । ଏଣୁକି ଗୁରୁ ହୁତାଶନ । କୃଷ୍ଣ କରନ୍ତି ଗୁରୁକର୍ଣ୍ଣ (କ) ?

ଯେ ଗୁରୁ ନ ଜାଣନ୍ତି ଗୁରୁ ନିଷ୍ଫଳ ଉପଦେଶ କରୁ ।୨୦।
ମାସରେ ପାଞ୍ଚଦିନ ଲେଖି । ଗୁରୁ ଶ୍ରୀମୁଖ ଆସି ଦେଖି ॥
ଦ୍ୱି ଏକାଦଶୀ ସଙ୍କରାନ୍ତି । ପୂର୍ଣ୍ଣିମୀ ଅମାବାସ୍ୟାକୁ ଚିନ୍ତି ॥
ଏମନ୍ତେ ପାଠିଏ ଯେ ଦିନ । ଗୁରୁଙ୍କୁ କରିବେ ଦର୍ଶନ ॥
ଯେ ଅବା ଫଳେ ପୁଷ୍ପେ ମିଳେ । ଦେବ ଯେ ଗୁରୁଙ୍କର ଆଗେ ॥

ଶୁଣ ପଣ୍ଡିତ ବିଷ୍ଣୁଦେବ । ପୁରାଣେ ଏ କଥା ବୁଝିବ ।୨୫।
ଏ କଥା ବେଦରେ ପ୍ରମାଣ । ଗୀତା ଶ୍ରୀ ଭାଗବତେ ଶୁଣ ॥
ପରୁବ ବିବେକ ସାଧୁଙ୍କୁ । ଆପଣେ ବିଚାର ମନକୁ ॥
ଛାଡ଼ ଭଗତ ଗ୍ରହାସର । ବିଶ୍ୱାସ ଅଟନ୍ତି ମୋହର ॥
ଛାଡ଼ ଭକତ କର୍ଣ୍ଣିସାର । ଅସ୍ଥା ଅଟନ୍ତି ଏ ମୋହର ॥

ଗୁପତ କରଣ ରଖିବ । ପାପାଣ୍ଡେ କେବେ ନ କହିବ ।୩୦।
ଦାମ୍ଭିକ ଲୋକଙ୍କୁ କହିଲେ । ଖୋଡ଼ କଣ୍ଠଇ ଅଙ୍ଗେ ଭଲେ ॥
ଯେ ନର ପର ହିଂସା କରେ । ତାକୁ କହିଲେ ପୁଣ୍ୟ ମରେ ॥
ଯେ ନର ନ କହନ୍ତି ସତ । ତାଙ୍କୁ କହିଲେ ନାଶେ ବଂଶ ॥
ବହୁତ ସଭାରେ ବସାଇ । କହିଲେ ବିପତ୍ତି ପଡ଼ଇ ॥

କୋଟିକେ ଗୋଟିଏ ଯେ ଶିଷ୍ୟ । କିଛିତେ ଲଭେ ଭକ୍ତିରସ ।୩୫।
ଏ ଅଟଇ ଗୁରୁଙ୍କ ବେଭାର । କହିବ କାହିଁ ମୁଁ ମୂର୍ଖର ॥
ଅଛ ଖାନ ଯେ ନିଜ ମୂର୍ତ୍ତି । ଭବରେ ପଡ଼ିଣ ଅଛଇ ॥
ଘରେ ନମିଷେ ଗୁରୁ ଧ୍ୟାନ । ଧ୍ୟାନେ ପାଇବ ଭକ୍ତି ସ୍ଥାନ ॥
ଦାସ ଆବୋର ମୁଁ ବହିଲି । ଦୀନ ଅଚ୍ୟୁତ ଭବେ ଭୁଲି ।୩୯।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ପଞ୍ଚମ ଗ୍ରନ୍ଥ ॥

**X**

# ଷଷ୍ଠ ଛାନ୍ଦ

ପୁଣ ଯେ ଧର୍ମ୍ମ ମୂର୍ତ୍ତି ମୂର୍ତ୍ତି । ପୁରୁ ଗୁରୁଙ୍କ କଥା ପାଇଁ ।୧।
ପଣସ୍ତ ଲାଗିଲା ମନର । ଏତ ଅଗମ୍ୟ ଅଗୋଚର ॥
ଆପଣେ ସ୍ୱୟଂ ଦେହ ବହି । ଅମ୍ଭଙ୍କୁ ନସ୍ତାରିବା ପାଇଁ ॥
ଏ ରୂପେ ଦେଖିଲେକ ପୁଣ । ପାପ ରହିବ କି ଅଗୋଣ ॥
ଶୁଣିଣ ଅର୍ଜ୍ଜୁନ ଝର ଝର । ଧର୍ମ୍ମ ପୁଚ୍ଛିଲୁ ଅଗୋଚର ।୫।
ଗୁରୁଙ୍କ ଗୁରୁ ଯେ ପୁଚ୍ଛିଲ । କହୁତ କେବା ଅଛୁ ତୁଲ ॥
ଉଦ୍ଧବ ଗୁରୁ ଦୀକ୍ଷା ପାଇଁ । ବସିଲେ ବଦରିକା ଧାଇଁ ॥
ସ୍ୱସ୍ତିକ ରାଜାଙ୍କୁ ଯେ ଶୁକ । କହିଲେ ଗୁରୁଙ୍କ ବିବେକ ॥
ଶ୍ରୀକୃଷ୍ଣ ଅର୍ଜ୍ଜୁନେ କହିଲେ । ଗୁରୁଭଗତି ଯେ ବୁଝିଲେ ॥
ଗୁରୁଭକତି ଦୀକ୍ଷା ପାଇ । ନବ ମୁକ୍ତ ଯେ ବୋଧ ହୋଇ ।୧୦।
ଗୁରୁ ସମାଧି ଯେ ନିଶ୍ଚଳ । ତେଜିଲେ ରାଜଗୃହ ଫଳ ॥
ରାଜ ଉଦୟ ଗୁରୁ ପଦ । ଥିଲେ ନୋହିଲେ ଯେ ବିଚ୍ଛେଦ ॥
ଅଖଣ୍ଡ ଗୁରୁ ଖଣ୍ଡ ନୋହେ । ସର୍ବଦା ପ୍ରୀତ ସୂର୍ଯ୍ୟମୟେ ॥
ନୀଳ ଶ୍ୟାମଳ କୃଷ୍ଣ ରୂପ । ଆରକ୍ତ ଗୁରୁଙ୍କ ସ୍ୱରୂପ ॥
ଆରକ୍ତ ଗହ୍ୱର ସ୍ୱଭାବ । ରାଧା ଶ୍ରୀଗୁରୁ ରୂପ ଭାବ ।୧୫।
ଶ୍ୱେତ ଧବଳ ଶିଷ୍ୟ ଭାବେ । ଚନ୍ଦ୍ରାବଳୀ ଯେ ବଳଦେବେ ॥
ଏ ତିନ ରୂପ ବୃଶ କଳା । ବୃଶରୁ ଆଠ ଯେ ହୋଇଲା ॥
ଆଠରୁ ହୋଇଲ ଯେ ଷୋଳ । ଷୋଳରୁ ବତିଶ ଯୁଗଳ ।୧୮।
ବେନି ବତିଶୁଁ ଚଉଷଠି । ଗୁରୁ ସକଳ ଭୂତ ଏଠି ॥

---

୩—୨ ଅମ୍ଭଙ୍କୁ ନସ୍ତାରିବା (ଖ)
୧୦—୨ ଅଙ୍କିତ ଗୁରୁଙ୍କ (କ) ୧୫—୧ ଅଙ୍କିତ ଗହ୍ୱର (କ);
୧୯—୨ ଭୂତେ ଅସ୍ତି (କ);

ଏ ଗୁରୁ ଚହ୍ନିଲେ କାରଣ । ନୋହିଲେ ଜନ୍ମଧିକ ପୁଣ ।୨୦।
ମନ୍ତ୍ର ଅଟଇ ଗୁରୁ ଗୁଣ । ଶିଷ୍ୟ ଶୁଣିଲ ସେ ଶ୍ରବଣ ॥
ଗୁରୁଙ୍କ ପଦ ନ ଦେଖିଲ । କଥା ଶୁଣିଣ ଭୁଲି ମଲ ॥
ଷୋଳ ନାମ ସେ ହରି ଗୁଣ । ଅଷ୍ଟାଦଶ ସେ ଗୋପ ପୁଣ ॥
ରାମ ତାରକ ରାମ ମାଳା । ଏମନ୍ତ ଯୁଗ ଚାର କଲା ॥
ମନ୍ତ୍ର ସେ ନାରାୟଣ କହି । ଏମନ୍ତ କଳି ଯୁଗ ହୋଇ ।୨୫।
କଳି ଯୁଗରେ କଳି କଥା । ଏଥିକି କୋଟି କୋଟି ପୋଥା ॥
ପଦକୁ ସୁମ୍ଭତ ସେ ଗାଢ । ସୁମ୍ଭତ ଶୋଳକ ସେ ଦଢ଼ ॥
ସୁମ୍ଭତ ମନ୍ତ୍ର ଗାଢ଼ କହି । ମନ୍ତ୍ର ଠାରୁ ବଡ଼ ହୋଇ ॥
ଓଁକାରୁ ବଡ଼ ଅଟେ ଧ୍ୟାନ । ଧ୍ୟାନ ଅଟଇ ଗୁରୁଥାନ ॥
ଧ୍ୟାନ ନ ଜାଣି ଶିଷ୍ୟ କରେ । ଶିଷ୍ୟଙ୍କୁ ଦରଶିଆ କରେ ।୩୦।
ଲୁଣ ନ ପଡ଼ିଲେ ଯେମନ୍ତ । ସେ ଶିଷ୍ୟ ନଷ୍ଟଇ ଜନ୍ମତ ॥
ସଣସ୍ତ ନୁହଇ ସେ ଦୂର । ଚଷ୍ଟ ନ ଥିଲ ପ୍ରାପ୍ତେ ନର ॥
ଅଗାଡ଼ି ବୋଇଁ ଧାନ ଏକ । ଉଡ଼ାଇ ଯେସନ୍ତେ ନରଗଣଙ୍କ ॥
ତେସନ ପ୍ରାପ୍ତେ ସେହି ଶିଷ୍ୟ । ଧନ ପ୍ରାଣୀରେ କରେ ନାଶ ॥
ଅକର୍ମେ ଧନ ସେ ହରିଲ । ଭକ୍ତ ନଷ୍ଟିଲେ ଦନ ଗଲ ।୩୫।
ବାବୁ ଶ୍ରୀରାମ ଦାସ ଶୁଣ । ରାହାସ ଉତ୍ଥାନ ହେବ ପୁଣ ॥
ଯେଉଁ ପଥରେ ପଣବାର । ଶିଷ୍ୟର ଦାସ୍ୟୀ ସେ ସଦ୍ଧୈର ॥
ସାରଙ୍ଗ ଗୋସାଇଁ ମୋହର । ଅଚ୍ୟୁତ ଡହିଁ ପଣବାର ॥
ଲଳିତ ସଖୀର ଭଜନ । ବନ ଅଟଇ କୁଞ୍ଜବନ ॥
ସୁଦାମ ସଖାଙ୍କ ଭଗତ । ମନ୍ତ୍ର ସେ ହରେକୃଷ୍ଣ ତନ୍ତ୍ର ।୪୦।
କୃଷ୍ଣ ଦରେ ସେ ମନ୍ତ୍ର ବନ୍ଦ । ଗୋପାଳ ମୂରତ ସେ ପୁଜ ॥
ଦଶ ସେ ପୁବରେ ବସ୍ତ୍ରାମ । ନାରଦ ଋଷିର ଆଶ୍ରମ ॥

---

୨୩—୨ ଗୋପଗଣ (କ);
୨୭—୨ ଶୋଳକ ସେ ଗାଢ଼ (ଗ); ୩୭—୨ ସର୍ମ ଦାସ୍ୟୀ ସେ (ଖ);
୩୯—୨ ନବ ଅଟଇ (ଖ); ୪୧—୧ ମନ୍ତ୍ର ବୀଜ (ଖ);

ଭଜନ ପଞ୍ଚାକ୍ଷର ବଢ଼ । ଷଡ଼ାକ୍ଷର ଯେ ତନ୍ତ୍ର ଗୂଢ଼ ॥
ଏହା ନ ଜାଣି ଶିଷ୍ୟ କରେ । ଗୁରୁ ଅପ୍ରାଧ ଦ୍ରୋହ ଭରେ ॥
ଗୁରୁ ନିନ୍ଦିତ ହୋଏ ପୁଣ । ଏଣୁ ଅପ୍ରାଧର କାରଣ ।
ସାଧିବ ଗୁରୁଙ୍କ ବିଚାର । ତେବେ କରିବ ଶିଷ୍ୟ ଘର ॥
ଉତ୍ଥାନ ଶୁଣ ହେ ବଚନ । ଖୋଳ ପୂଜାର ମନ୍ତ୍ର ଘେନ ॥
କର୍ତ୍ତାଳ ମନ୍ତ୍ର ପୂଜା ଯେତେ । ମୁକୁନ୍ଦ ଘେନ ଦୃଢ଼ ଚିତ୍ତେ ॥
ବେଣୁ ବଇଁଶୀ ପୂଜାବିଧି । ଯାଦବ କରିବ ହେ ସିଦ୍ଧି ॥
ଶ୍ରୋତ ସିଦ୍ଧିର ମନ୍ତ୍ର କର୍ମ । ବାଳକ ଘେନ ଏହୁ ଧର୍ମ ।
ମନ୍ତ୍ର ଯେ ଶଙ୍ଖ ସିଂହାସନ । ଯାଦବ ହୃଦୟରେ ଘେନ ॥
ମନ୍ତ୍ର ଯେ କପଡ଼ୂଳ ଯେତେ । ପବନ ସୁମରିବ ଚିତ୍ତେ ॥
ଗୋପାଳ କୁଳର ବିଧାନ । ଶ୍ରୀ ବୃନ୍ଦାବନର ଏ ଚିହ୍ନ ॥
ଓଡ଼ିଶା ଦେଶରେ ପ୍ରଚାର । ଆଜ୍ଞା ଯେ ନନ୍ଦସୁତ ଠାକୁର ॥
ସେ ଆଜ୍ଞା ମନରେ ସୁମରି । ଗୋପାଳ କୁଳକୁ ଉଦ୍ଧରି ।
ଏଣୁ ମୁଁ ଲଭିଲି ଜନମ । ତୁମ୍ଭଙ୍କୁ ଦେଲି ଦୀକ୍ଷାକର୍ମ ॥
ଜଗତ ହିତେ ଏହୁ ପାଠ । ରଖିଲୁ ତୁମ୍ଭ ଘରେ କୋଠ ॥
କଳି ଭଗତ ଏହା ପଢ଼ି । ଶିଷ୍ୟ ଏସବେ ହେବେ ଜଡ଼ ॥
ଏ ଗ୍ରନ୍ଥ ପଢ଼ିଲେ ଯେ ପୁଣ । ସଂଶୟ ହୋଇବ ହରଣ ॥
ଗୁପତ ଗୁପତ ଗୁପତ । କେବେହେଁ ନକର ପ୍ରକଟ ।
ନାମ ଦେବାର ଶିଷ୍ୟଠାରେ । ଏ ଗ୍ରନ୍ଥପୂଜା ଯେ ଦିନରେ ॥
ଅନ୍ୟଥା ଦିନେ ନ ପଢ଼ିବ । ଶିଷ୍ୟଙ୍କୁ ଗୁପତେ କହିବ ॥
ବାର ବରଷ ସେବା କଲେ । କିଛି ପାଇବ ଅବା ଭଲେ ॥
ପଢ଼ି ଶୁଣିଲେ ନ ବୁଝିବ । ଶ୍ରୀଗୁରୁ କୃପାରେ ପାଇବ ॥
ଶ୍ରୀକୃଷ୍ଣ କରୁଣା ଯେ କଲେ । ଗଣେଶ ହସ୍ତେ ଯେ ରହିଲେ ।

---

୪୩—୧ ପଞ୍ଚାକ୍ଷର ବଡ଼; ୪୩—୨ ଅଷ୍ଟାକ୍ଷର ଯେ ତତ୍ତ୍ୱ ତ (କ);
୪୭—୨ ଯନ୍ତ୍ରଘେନ (କ); ୫୭—୨ ଘରେ ପେଣୁ (ଖ);
୫୯—୨ ହୋଇବ ଦହନ (ଖ)

ଜହ୍ନାରେ ସରସ୍ୱତୀ ଯେଣୁ । ଲକ୍ଷେ ଗ୍ରନ୍ଥ ଯେ ଲେଖି ଦେଣୁ ॥
ଗୁପତ ଗ୍ରନ୍ଥ ଯେ ଆଗତ । କୋଟିଏ ଭଗତର ଜମନ୍ତ୍ର ॥
କୋଟିଏ ସମାଧି ଭକ୍ତହସ୍ତେ । ରଖିଲୁ ଏ ଗ୍ରନ୍ଥ ଗୁପତେ । ୬୯ ।
କଳଙ୍କିନାଥର ସମୟେ । ଏ ଗ୍ରନ୍ଥ ପ୍ରସ୍ୱଣ ହୃଦୟେ ॥
ଶୋରତା ଯେ ଜନ ଭଗତ । ସେ ଜନପାଦେ ମୋର ଚିତ୍ତ । ୭୦ ।
ମୁଁ ଇ ପାଇବ ଅବା କାହିଁ । ମନରେ ଅଛଇଁ ଯେ ଧାଇ ॥
ଚନ୍ଦ୍ରଚିତ୍‌ପଲା ନଦୀ ତୀର । ସୁହାଙ୍କ ନେମାଳ ଉତ୍ତର ॥
ଏ ସ୍ଥଳେ ଜନମ ଲଭିଲ । ଦୀନ ଅଚ୍ୟୁତ ଭବେ ଭୁଲ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଷଷ୍ଠ ଛାନ୍ଦ ॥



# ସପ୍ତମ ଛାନ୍ଦ

ପୁଣ କହିବା ବାସ୍ତ ଶୁଣ । ହେତୁ କରିଣ ମନେ ଗୁଣ । ୧ ।
ରହାସ ଗୁରୁ ପରିବାର । ଏ କଥା ବିଚାରି ମନର ॥
ସଂକୀର୍ତ୍ତନରେ ଯେ ପଶିବ । ରହାସ ଗୁରୁ ସୁମରିବ ॥
ସେ ପରିବାର ଗୁଣ ଧରି । ପୀଢ଼ିକୁ ପୀଢ଼ି ଯେ ସୁମରି ॥
ମିଳିବ ନଦିଆ-ଠାକୁର । କୀର୍ତ୍ତନେ ମିଳିବ ଶରୀର । ୫ ।
କୀର୍ତ୍ତିରୁ ଶ୍ରୀବୃନ୍ଦାବନରେ । ପୁଣ ମିଳିବ ରହାସରେ ॥
ରହାସୁଁ ଗୋଲୋକେ ପଶିବ । ତେବେ ସେ ଭଗତ ଲଭିବ ॥
ଉତ୍କଳେ ଜନଗୁରୁ ଗୁଣି । ନଦିଆଠାରେ ତନ ପୁଣି ॥
ଶ୍ରୀ ବୃନ୍ଦାବନେ ତନ ଥିତି । ଏମନ୍ତେ ନବଧା ଭଗତି ॥
ଉତ୍କଳେ ତନ ଅଙ୍ଗ ଧରେ । ଉତ୍ଥାନ ରାମ ଅଚ୍ୟୁତରେ । ୧୦ ।
ସୁନ୍ଦର ଚଇତନ୍ୟ ଅଭି । ନଦିଆ ତନ ଗୁରୁ ଲଭି ॥
ଦାମ ସୁଦାମ ଯେ ଲଳିତା । ଶ୍ରୀବୃନ୍ଦାବନରେ ଯେ ଚିହ୍ନା ॥
ଶ୍ରୀରାଧା କୃଷ୍ଣ ଯେ ଗୋଲୋକ । ଗୁରୁ ଗଣରେ ଏ ବିବେକ ॥
ଏହାଙ୍କ ଠାବରେ ମିଳିବ । ଗୁରୁଅଙ୍ଗ ଯେ ଧରି ଜୀବ ॥
ରହାସ ଦାସ ଶିଷ୍ୟ କରେ । ଏହା ନ ଜାଣି ସେ ପଥରେ ।୧୫।
ମିଳନ୍ତି ରହାସ ମଣ୍ଡଳୀ । ପ ତକ କରନ୍ତି ସଙ୍ଗାଳି ॥
ଅନ୍ନ ବସନ ନ ମିଳିବ । ସଂସାରେ ବଡ଼ମୁଣ୍ଡ ହେବ ॥

---

୧୫—୨ ଏହା ନ ଜାଣେ ଯେ ପଥରେ (କ)

କହିଲୁଁ ଗୁରୁଙ୍କ ବସ୍ତର । ସନ୍ନ୍ୟାସ ଦାସ ହେତୁ କର
ଚୈତନ୍ୟ ମନ୍ତ୍ରକୁ ଯେ ପୁଣ । ତୁଳସୀ ପୁଷ୍ପ ଲେଖନେଣ ।
ଲେଖିବ ହୃଦୟ ମଧ୍ୟରେ । ଶିଷ୍ୟଙ୍କୁ ଗୁପତ ବେଗରେ ॥୨୦॥
ଲଳିତା ସଖି ମନ୍ତ୍ର ଗୁଣି । ସୁବର୍ଣ୍ଣ ସ୍ୱମର ଯେ ଘେନ ।
ଦକ୍ଷିଣ ବାହୁର ଉପରେ । ଲେଖିବ ଶିଷ୍ୟଙ୍କୁ ହେତୁରେ ॥
ସ୍ନାହାନ ମନ୍ତ୍ରକୁ ଯେ ଶୁଣ । ଲେଖିବ ବାମ ଭୁଜେ ପୁଣ ॥
ଅନାମିକା ଯେ ଅଙ୍ଗୁଷ୍ଠିରେ । ଟେଣ୍ଡି ହଳଦ ଘେନ କରେ ॥
ସ୍ନାହାନ ମନ୍ତ୍ରକୁ ଯେ ପୁଣ । ହଳଦୀ ଲେଖନେ ଲେଖିଣ ॥୨୫॥
ଏତେ ମନ୍ତ୍ର ଯେ ଏକା ଦିନେ । କହିବା ଶିଷ୍ୟଙ୍କୁ କ କର୍ଣ୍ଣେ ॥
ଶୁଣ ହେ ଭକ୍ତ୍ୟ ପରଭକ୍ତ୍ୟ । କହିବା ଏଥିର ତଦନ୍ତ ॥
ମନ୍ତ୍ର ଗୋଟିକେ ଦିନେ ଦିନେ । କହିବା ଶିଷ୍ୟଙ୍କୁ ଯତନେ ॥
ମନ୍ତ୍ରକୁ ବରଷେ ଶିଖାଇ । ପୁଣ ବରଷେ ଯନ୍ତ୍ର କହି ॥
ତନ୍ତ୍ର ଭେଦବ ଯେ ବରଷେ । ପୂଜା ସାଧିବ ବାରମାସେ ॥୩୦॥
ଛାୟା ସାଧିବ ଯେ ବରଷେ । ଅବାଡ଼ ସାଧି ବାରମାସେ ॥
ଜ୍ୟୋତିକ ବରଷେ ସାଧିବ । ପବନ ଅଭ୍ୟାସେ ଧରିବ ॥
ସମାଧି ବରଷେ ଧରିଣ । ରୂପ ଚିହ୍ନିବ ବରଷେଣ ॥
ଆଧାର ସାଧିବ ବରଷେ । ଦକ୍ଷିଣ ସାଧି ବାରମାସେ ॥
ଏମନ୍ତେ ବାର ଯେ ବରଷ । ଶିଷ୍ୟ ପାଇବ ଭକ୍ତି ରସ ॥୩୫॥
ଭକତି ପାଇଲେ ନିଶ୍ଚଳ । ଛାଡ଼ିବ ମନ ବା ଚଞ୍ଚଳ ॥
ମଲେ ଜୀଇଲେ ସନମତ । ଏମନ୍ତେ ଶିଷ୍ୟ ଗୁରୁମତ ॥
ଶିଷ୍ୟଙ୍କୁ ଗୁରୁ ଆଜ୍ଞା ଦେବ । ଗୁରୁଙ୍କୁ ଶିଷ୍ୟ ପଚାରିବ ॥
ତେବେ ସଂଶୟ ହେବ ଦୂର । ନ ପୁଛେ ମୂଢମତି ନର ॥
ପତିଭକତା ନାରୀ ଯେହ୍ନେ । ଚାତକ ଆକାଶେ ଯେସନେ ॥୪୦॥
ନପୁଂସୀ ପୁତ୍ରକୁ ଯେମନ୍ତ । କୃପଣ ଧନେ ଯେହ୍ନେ ଚିତ୍ତ ॥
କାମୀ ପୁରୁଷ କାମିନୀରେ । କଶ୍ୱାନ୍, ଗଜ ଯେହ୍ନେ ଧରେ ॥
ଭୋକୀ ଆଗରେ ଅନ୍ନ ଯେହ୍ନେ । ତେମନ୍ତ ପ୍ରାସ୍ୱେ ଚିତ୍ତ ଧ୍ୟାନେ ॥
ଗୁରୁ ଠାବରେ ମନ ଦେଲେ । ମନ୍ତ୍ର ଯନ୍ତ୍ର ଯେ ମିଳେ ଭଲେ ॥

ଅସ୍ତେଁ ନା ଡାକୁଡ଼ର ଫଳ । ମନ କରନ୍ତୁ ଯେ ବିଫଳ ॥୪୫॥
ସେ ହୃଦେ ଡାଦ୍ଧି ଏ ବିଶ୍ବର । ପାଇବ ଗୁରୁଙ୍କ ଭଣ୍ଡାର ॥
ମନକୁ ବାନ୍ଧିଲେ ଭକତ । ମନ ମଧ୍ୟରେ କୃଷ୍ଣ ଚନ୍ଦ୍ର ॥
ମନ ଚଳିଲେ ନାଶ ଗଲ । ଧାନ ଅଚ୍ୟୁତ ଜଡ଼େ ଭୂଲ ॥

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ସପ୍ତମ ଗ୍ରନ୍ଥ ॥



୪୫—୨ ଯେ ବିଫଳ (କ); ୪୬—୧ ହୃଦସ୍ଥେ କଲୁ ଏ ବିଶ୍ବର (ଗ)

# ଅଷ୍ଟମ ଛାନ୍ଦ

ସଂଶୟ ଫେଡ଼ିବା ଗୁରୁ ଲାଗିଲା ତ ଧନ୍ଦ ।
ଗୁରୁ ନ ଚିହ୍ନିଲା ଲୋକ ହୋଇଲା ତ ଅନ୍ଧ । ୧ ।
କରୁଣା କରିବା ନାଥ ବ୍ରହ୍ମାଣ୍ଡ ଧରଣ ।
ଗୁରୁ ବିନୁ ସଂସାରେ ତ ନାହିଁ ପରିତ୍ରାଣ । ୨ ।
ଗୁରୁ ମନ୍ତ୍ର ଦେଇ କରି ଶିଷ୍ୟଙ୍କୁ ତ ଗଲେ ।
ସେ ଶିଷ୍ୟ ତରେ କେମନ୍ତ ଭବଜନ୍ତୁ ଭଲେ । ୩ ।
ଗୁରୁ କଥା ଶୁଣିଲା ତ ଶ୍ରବଣରେ ତଟ ।
ଗୁରୁ ନ ଦେଖିଲେ ତ ହୋଇଲ ଛଟପଟ । ୪ ।
ଏ ଭବ ସଂସାରେ ଜାତ ହୋଇଲେ ତ ମନ୍ଦ ।
ବସ୍ତ୍ର ନ ଛାଡ଼ନ୍ତି ମଧ୍ୟେ ଧଇଲେଣି ଶରୀ । ୫ ।
ଗୁରୁ ଆଜ୍ଞେ କରି ବସ୍ତ୍ର ଛାଡ଼ିଲେ ଶରୀର ।
ନରଦେହ ଗୋଟାକୁ ସେ ଗୁରୁ ବଡ଼ ସାର । ୬ ।
ଶ୍ୱେତ ରଙ୍ଗ ଶ୍ୟାମଳ ଅଟଇ ଯେଉଁ ଜ୍ୟୋତ ।
ତାର ଜ୍ୟୋତି ମଧ୍ୟେ ରଙ୍ଗ ଗୁରୁରୂପ ଚନ୍ଦ୍ର । ୭ ।
ଏ ଗୁରୁଙ୍କୁ ଯେଉଁ ଜନ ପାଇଅଛୁ ଭେଟ ।
ମରିବା ଜୀଇବାକୁ ସେ ନୁହଇ ତରସ୍ତ । ୮ ।
ମରଣ ସମୟେ ଯେତେ ମନ୍ତ୍ର ଶିକ୍ଷା ଥାଇ ।
କଣ୍ଠ ବନ୍ଧନ ହୋଇଲେ ସୁମରିବ କାହିଁ । ୯ ।
ଏଣୁ କରି ମନ୍ତ୍ର ଅଟେ ଗୁରୁଙ୍କର କଥା ।
ମୂଢ଼ାନ୍ତ ଶିଷ୍ୟଙ୍କୁ ସିନା ମନ୍ତ୍ର କରି ପୋଥା । ୧୦ ।
ଉତ୍ତମ ଶିଷ୍ୟ ଜନମନ୍ତ୍ରେ ଗୁରୁରୂପ ଧ୍ୟାନ ।
ଇଚ୍ଛା ସୁଖେ ମରଣ ସେ ଇଚ୍ଛାସୁଖେ ଜନ୍ମ । ୧୧ ।

ରାମଚନ୍ଦ୍ର ଦାସ କ୍ଷଣେ ନିମିଷେ ଯେ ମିଶେ ।
ଗୁରୁଙ୍କ ଦର୍ଶନେ ଭବଭୟ ହୋଏ ନାଶେ । ୧୨ ।
ଏ ଭେଦ ନ ଜାଣି ଯେବା ହୁଅନ୍ତି ଗୁରୁ ।
ମୁଁ କାର ବଡ଼ ପଣରେ ଫୁଟି ଭ୍ରମି ମରୁ । ୧୩ ।
ମୁହିଁ ବଡ଼ ଗୋସାଇଁ ମୋଠାରୁ ନାହିଁ ବଡ଼ ।
ମଲେଣ ଜନ୍ମ ଲଭଇ ଶୃଗାଳ ଯେ କୋଡ଼ । ୧୪ ।
ପେଟର ନିମନ୍ତେ ସୃଷ୍ଟେ ଏ ଜନ୍ମ ବୁଲିଲି ।
ଜନ୍ମ ଅନ୍ତେ ବୁଲି ପେଟ ପୋଷି ନ ପାରିଲି । ୧୫ ।
ଗୁରୁକର୍ମ ନ ସାଧିଣ ଯେହୁ କରେ ଶିଷ୍ୟ ।
ସେ ଜନକୁ ଇହପର ଲୋକେ ଉପହାସ । ୧୬ ।
ରାମଚନ୍ଦ୍ର ଦାସର ଯେ ଏକ ସ୍ତୁତି ଶୁଣ ।
ପୂର୍ବେ ସତ୍ୟଯୁଗେ ଏକ ଅଛୁ ପରମାଣ । ୧୭ ।
ଓରେ ମେଣ୍ଢା ବୋଲିକରି ଶିଷ୍ୟକୁ କହିଲି ।
ସେ ଶିଷ୍ୟ କେମନ୍ତେ ଗଡ଼ ଲଙ୍ଘି କରି ଗଲି । ୧୮ ।
ଶିଷ୍ୟବାକ୍ୟ ଶୁଣି ଅଶ୍ରୁ ଗଳେ ଝର ଝର ।
ଭଲି ପଚାରିଲୁ ଏବେ ସନ୍ଧିର ବିଚାର । ୧୯ ।
ପୂର୍ବାପୂର୍ବେ ଯେଉଁ କଥା ଉପଲକ୍ଷେ ଶୁଣ ।
ଗୀତା ଭାଗବତେ ବେଦ ପୁରାଣେ ପ୍ରମାଣ ୨୦ ।
ଶିଷ୍ୟର ହେତୁରେ ସିନା ଶିର ଛିଣିଗଲି ।
ଗୁରୁ ତ ପଥ ନ କହି ଅମଡ଼ା ପେଲିଲି ।୨୧।
ଶିଷ୍ୟର ହେତୁରେ ସିନା ଅମଡ଼ା ମାଡ଼ନ୍ତି ।
ରାଜଦାଣ୍ଡେ ଶୂଳିଯାନ୍ତେ ହାଣ୍ଡି ଯେ ପାଦାନ୍ତି ।୨୨।
ଜାଣିଲି ସନ୍ଦେସେ ଜନ ଥାନ୍ତି ଯେଉଁ ଗ୍ରାମ ।
ନ ଜାଣିଲି ଜନ କି କରିବା ତାଙ୍କ ସମ ।୨୩।

---

୧୨—୧ ରାମଚନ୍ଦ୍ର ଦ୍ୱାଦଶଛନ୍ଦେଣ ଘେନ ମିଶେ (ଖ)
୧୨—୨ ହେବ ନାଶେ (ଖ) ୧୬—୨ ଗୁରୁକର୍ମ (କ)

ସଂସାର ବନ୍ଧନକୁ କୁହ ଏହୁ କଥା ।
ଗୋବିନ୍ଦର କୁହ ଏଯେ ସଂସାର ବ୍ୟବସ୍ଥା ।୨୪।
ଦ୍ୱାରକା ମଣ୍ଡଳେ ଯେ ଉଦ୍ଧବ କୃଷ୍ଣ ଥିଲେ ।
କୃଷ୍ଣ ଦରଶନ କରି ଗତି ନ ପାଇଲେ ।୨୫।
ଗୁରୁପାଦପଦ୍ମ ଚିନ୍ତି ହୃଦୟ କମଳେ ।
ଭଗତ ସାଧିଲା ଯାଇଁ ବଦରିକା ସ୍ଥଳେ ।୨୬।
ଆତ୍ମା ଅପରଚେ ଯେଉଁ ନର ହୋଇଥାନ୍ତି ।
ଆତ୍ମାକୁ ନ ଚିହ୍ନିଲେ ଯେ ନ ପାବନ୍ତି ଗତି ।୨୭।
ଏଣୁକରି ଗୁରୁ ହେଉ ହୃଦରେ ସୁମର ।
ଗୁରୁଙ୍କ ପୂଜିବ ଚିହ୍ନି ଅମନ ସ୍ଥାନର ।୨୮।
ଅର୍ଜୁନକୁ ହରି ଯେ ଭାରତେ ସଙ୍ଗକଲେ ।
କୃଷ୍ଣ ଦରଶନେ କର୍ମ ଗତି ନ ଲଭିଲେ ।୨୯।
ପୁଣି ଅଷ୍ଟାଦଶ ଅଧ୍ୟା ଗୀତା ବୁଝାଇଣ ।
ଗୁରୁ ଆଜ୍ଞେନର ଭକ୍ତ ହେ ଇନ୍ଦ୍ର କ ଭଣ ।୩୦।
ବିଦ୍ୟାରୁ ସାର ଅଟଇ ଅବିଦ୍ୟା କହିଲେ ।
ସ୍ୱର୍ଣ୍ଣଜ୍ୟୋତି ଗୁରୁଧ୍ୟାନ ସମାଧି ଯେ ଦେଲେ ।୩୧।
ତେଣୁକରି ଅର୍ଜୁନ ଯେ ଲଭିଲେ ଭଗତି ।
ସ୍ଥାନ ବଡ଼ ନୋହେ ନାମ ଗୋଟି ଯୁଗେ ଥିତି ।୩୨।
ଓରେ ମେଣ୍ଢା ବେଲ ଯେଉଁ ଜନ ଚିନ୍ତା କଲା ।
ରୂପକୁ ଦେଖିଲା ସିନା ନାମ ନ ପାଇଲା ।୩୩।
ରୂପ ଦେଖିବାକୁ ତ ସମସ୍ତ ଜନ ପାରି ।
ନାମକୁ ପରଚେ ଘଟ ଏକ ଏକ ପାରି ।୩୪।
ଗୋପୀ ରୂପ ଦେଖିକରି ଶୋକେ ବୁଡ଼ିଥିଲେ ।
ଉଦ୍ଧବ ଭେଟେଣ ନାମ ପରଚେ ହୋଇଲେ ।୩୫।

---

ପ.୧—୧ ବିଦ୍ୟାରେ ସାର ଅବିଦ୍ୟା ବୋଲିଣ କହିଲେ (ଭ)

ଲଳିତା ହଇବ ବସି ନାମ ଉଚ୍ଚାରିଲେ ।
ରୂପ ଗଲେ ନାମ ଥିଲା ମନେ ଲୟ କଲେ । ୩୬
ଯୋକେ ଗୋପୀ ରୂପକୁ ମୁରୁଛି ନ ପାରିଲେ ।
ଯୋକେ ଗୋପୀ ନାମରେ ରୂପକୁ ସୁମରିଲେ । ୩୭ ।
ଭବ ତମିଶ୍ରକ ସୂର୍ଯ୍ୟ କରଣ ଧରଣ ।
ଗୁରୁରୂପ ଚିହ୍ନି ଗୋପୀ ଲଭିଲେ କାରଣ । ୩୮ ।
ଯୁଗେ ଯୁଗେ କୃଷ୍ଣ ରୂପେ ସମସ୍ତ ଦର୍ଶନ ।
ସମସ୍ତେ ପାଇବେ କାହିଁ ଗୁରୁଦେହରୁ ସ୍ଥାନ । ୩୯ ।
ଗୁରୁଙ୍କ ଭଗତ ବଡ ଅଗମ୍ୟ ଚତୁର
କ୍ଷଣେ ଦଣ୍ଡେ ନିମିଷେ ହୋ ଗୁରୁ ସେବାକର ।୪୦।
ଚୈତନ୍ୟ ଠାକୁର ନବଦ୍ୱୀପରେ ଅବତାର ।
ସକଳଜନେ କହିଲେ ଭଗତ ଚତୁର ।୪୧।
ଛଅ ଅନ୍ନ ଗୁଆଘୃତ ଭୋଜନର ସାର ।
ନିରମିଷ ହୋଇ ନାମ ଭଜିବ ମୁଖର ।୪୨।
ରାଧାକୃଷ୍ଣ ଧ୍ୟାନ କର ଭଗତି ଲଭିବ ।
ସକଳ ଜନେ କି ତାହା ପାଇଲେ ହେ ଠାବ ।୪୩।
ଚଉଷଠି ମହନ୍ତ ହେ ଦ୍ୱାଦଶ ଗୋପାଳ ।
ସେମାନେ ଧଇଲେ ଭୋଗ ନିରାମିଷ ଫଳ ।୪୪।
ମନ୍ତ୍ରଧ୍ୟାନ ଆଶ୍ରେ କରି ଭଗତ ଲଭିଲେ ।
ସନାତନ ଗୁରୁ ମୋତେ ଏ ହେତୁ କହିଲେ ।୪୫।
ଦୋଳଗ୍ରାମେ ତାଙ୍କ ବାସ ବୈରାଗ୍ୟ ସେ ଦେହ ।
ଏକ ଶିଷ୍ୟ ମୁହିଁ ତାଙ୍କ ଆଉ ଶିଷ୍ୟ ନାହିଁ ।୪୬।
ମୁହିଁ ଶିଷ୍ୟ ମୁହିଁ ପୁତ୍ର ମୁହିଁ ତାଙ୍କ ଭୃତ୍ୟ ।
କ୍ଷେତବଟରେ ଶ୍ରୀଗୁରୁ ମେ ସମାଧି ବହୁତ ।୪୭।

---

୩୭—୨ ରୂପକୁ ବନ୍ଦିଲେ (କ)

ଭଜନ କୁଟୀ ସନ୍ନିଧେ ଗୋପ୍ୟ ଯେ ସମାଧି ।
କ୍ଷୀନ ରୂପେ ଏଠାରେ ମୋ ନାମ ଗ୍ରିବ ଭେଦ ।୮।
ମୋହର ଯେ ଏଠାବରେ ନ ମ ନୋହୁ ପୂଣ ।
ଦୃଢ଼ ରହୁଥିବ ଯେ ଭଜନ ରେଣୁ ଆନ ।୯।
ଜେଷ୍ଠ [illegible]ମୀର ଦନ ମୋ ଜନ୍ମ ଗୁପତ ।
ପ୍ରତିପାଳ କରବ ଯେ ଦାସ ହେ ଅଚ୍ୟୁତ ।୧୦।
ଦଶମୀ ଯାତ୍ରାକୁ ଆସି ଗୁରୁ ପ୍ରତ ବୋଧି ।
କହୁଲୁ ହୃତ୍ମାନ ଦାସ ହୃତ୍ତମ ଏ ବଧି ।୧୧।
ମୋହର ଚର୍ବଣ ଶେଷ ନାଡଶିଷ ମିଳ ।
ସେବକ ଅଷ୍ଟ ଯେ ରୂମ୍ନେ ବାରଗୋଟି ସ୍ଥଳ ।୧୨।
ସନାତନ ଗୋସାଇଁ ଯେ ଏ ବଧି କହୁଲେ ।
ଅଚ୍ୟୁତ ଖ୍ମାଙ୍କୁ ଯେ ଚାଷ ଜଡ଼ାଇଲେ ।୧୩।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଅଷ୍ଟମ ଛାନ୍ଦ ॥

- X —

# ନବମ ଛାନ୍ଦ

ଶୁଣ ହେ ସୁଜନ ଜନ ଗୁରୁଙ୍କ ବିସ୍ତର ।
ଦନ୍ତ ଘଷିବାର ମନ୍ତ୍ର ଲେଖି ଯେଉଁଠାର ।୧।
ବାହୁତଳେ ଲେଖିବ ଯେ ତମ୍ବା ଲେଖନରେ ।
ସୁପାଦେ ରଖି ପଦାର୍ଥ ବସ୍ତୁଖ ମନରେ ।୨।
ଆସନ ମନ୍ତ୍ରକୁ ଯେ ଦକ୍ଷିଣ ବାହୁତଳେ ।
ଖପର ଖଣ୍ଡିଏ ଘେନ ଲେଖିବ ହୃଦ୍ତଳେ ।୩।
ହସ୍ତେ ନ ଲେଖିବ ମନ୍ତ୍ର ଶୁଣ ହେ ବିସ୍ତର ।
ଯଥା ଅନୁକ୍ରମେ ସିନା ଜାଣିବ ଗୋଚର ।୪।
ଲୌହ ଖଣ୍ଡକରେ ଯେ ଲେଖିବ କଟୀ ପରେ ।
ପରଶ୍ରାବ ମନ୍ତ୍ରଗୋଟି କହିଲୁ ଏଠାରେ ।୫।
ଶିଂସାର ଲେଖନ ଲେଖ ଆରମ୍ଭରେ ପୁଣ ।
ବିରେଲା ମନ୍ତ୍ରକୁ ଯେ ଲେଖିବ ବିରେଳେଣ ।୬।
ନାଭିତଳେ ଲେଖିବ ଯେ ବ୍ରହ୍ମାମନ୍ତ୍ର ପୁଣି ।
ସାନକର ଖଡ଼ି ଖଣ୍ଡିଏ ଯେ ନଦୀର ଘେନ ।୭।
ମନ୍ତ୍ର ମାନଙ୍କର ଯେ ଅଛଇ ଲକ୍ଷଣ ।
ଗୁରୁଙ୍କର ବିସ୍ତର ଯେ ଟୀଷ୍ଟର କାରଣ ।
ଏ କଳି ଯୁଗରେ ନରେ ଧରିବେ କେମନ୍ତେ ।
ନାମ ମନ୍ତ୍ର ଗୁରୁ ତିନ ନ ଧରନ୍ତି ଚିତ୍ତେ ।୮।
ଫଣସ୍ତ ଲଗୁଛୁ ପ୍ରଭୁ କଳିପୁଞ୍ଜ ନର ।
ବିବେକ ସନ୍ଧି ନ ଘେନ ଦୁଃଖେ ତତପର ।୧୦।
ଶୁଣ ହେ ସୁସାଧୁ ଜନେ ସତ୍ୟ ନର ମାନେ ।
ଜାଣନ୍ତି ଋଷି ଯେ ଗଣ ଏଥିର ବିଧାନେ ।୧୧।

---

୨—୧ ଉଷୋର ମନରେ (କ)

ତ୍ରେତୟାରେ ନଳ ନୀଳ ସୁଷେଣ ଜାଣିଲେ ।
ଶାଗ୍ରବ ବଶିଷ୍ଠ ମୁନିମାନେ ହେରୁ କଲେ ।୧୨।
ଦ୍ୱାପରେ ସେ ପରୀକ୍ଷିତ ଖାଣ୍ଡୁକ ରାଜନ ।
ଉଦ୍ଧବ ଜାଣନ୍ତି ଗୁରୁ-ପୂଜା ସେ ପ୍ରଧାନ ।୧୩।
ଏମନ୍ତ ହୋଇଣ ଚାରି ଯୁଗେ ଯେତେ ଜନ ।
ଗୁରୁପୂଜା ଗୁରୁ ହେରୁ କଲେକ ଭିଆଣ ।୧୪।
କଳିଯୁଗେ ରାମାନନ୍ଦ ନିମାନନ୍ଦ କହ୍ନୁ ।
ସ୍ୱାମୀ-ଶ୍ୟାମ ମାଧବ ଯେ ସ୍ୱର ଶର୍ମା ଦାଣ୍ଡି ।୧୫।
ଏ ସ୍ୱର ଗୋସାଇଁଙ୍କର ଏମନ୍ତ ଭିଆଣ ।
କେଜାଣି କହନ୍ତି ମନ୍ତ୍ର କେ ନ ଜାଣେ ପୁଣ ।୧୬।
ପ୍ରତାପ ନୃପତି ଯେ ଏ ପ୍ରକାର ଧାରଣ ।
ପ୍ରତାପ ଠାବରୁ ମୁକୁନ୍ଦରେ କହୁ ପୁଣ ।୧୭।
ମୁକୁନ୍ଦ ଠାବରୁ ଦିବ୍ୟ କଳାର ଈଶ୍ୱର ।
ମନ୍ତ୍ରକୁ ଲୋଡ଼ିନ ପାଦ ନ କଣ ବିଗ୍ରହ ।୧୮।
ଦିବ୍ୟ ଗୋପୀନାଥ ବୋଲେ ଉଚ୍ଛିଷ୍ଟର ଗୋଳ ।
ନାମକୁ ନ ଚିହ୍ନି ପେଟ ନିମନ୍ତେ ସକଳ ।୧୯।
ବାଳକ ଯେ ସ୍ତ୍ରୀ ଶୁ ପୁଂ ବଧୂ ଆଦିକଣ ।
ସମସ୍ତେ ହରିନାମକୁ କଣ୍ଠରେ ଯେ ଧର ।୨୦।
ଗୁରୁ ପୂଜା ନିଷ୍ଠାଧର୍ମ ନ ବୁଝିଣ ଥିବ ।
ଗୁରୁ ଅଙ୍ଗ ନ ଧରିଣ ପଥ ଯେ ପଡ଼ିବ ।୨୧।
ଶିଷ୍ୟର ରୂଚିବ ସେବା କ କହିବ ଅବା ।
ମୂଢ଼ାନ୍ତ ଶିଷ୍ୟ ପୃଥ୍ୱୀରେ ବହୁତ ଯେ ଥିବା ।୨୨।
କୋଟିକେ ଗୋଟିଏ ଯେହୁ ଜାଣିଣ ଯେ ଥିବ ।
ନ’ନ ଷୀନ ହୋଇକର ବୃତ୍ତିଣ ରହିବ ।୨୩।

---

୧୬—୨ କହନ୍ତି ମନ୍ତ୍ର ନ ଜାଣେ ପ୍ରମାଣ (କ)

ସହସ୍ରେ ମୂଢ଼ ସଙ୍ଗତେ ଏକ ଯେ ପଣ୍ଡିତ ।
ପଣ୍ଡିତ ବଚନ ଯେ ଯେ ସ୍ୱୀକାରନ୍ତି ସମସ୍ତ ।୨୩।
ସହସ୍ରେ ପଣ୍ଡିତ ସଙ୍ଗେ ଏକ ମୂର୍ଖ ଥିଲେ ।
ମୂଢ଼ାନ୍ତ ବଚନ ଯେମନ୍ତେ ନ ରହଇ ଭଲେ ।୨୪।
ତେସନ ପଣ୍ଡମ୍ଭେ ପିନା ବଣ୍ଣଣ ଭୂଷିବ ।
ଉତ୍ତମ ମତ ଦେଖିଲେ ଅକାର କହିବ ।୨୫।
ଚଉଣ ଗୋପାଳେ ଆମ୍ଭେ ଜଣାଉଛୁ ପୁଣ ।
ମନ୍ତ୍ର ପୂଜା କରି ନ ପାରିବ ଯେଉଁ ଜନ ।୨୬।
ସେ ଜନ କେମନ୍ତେ ମନ୍ତ୍ର ପାଇବ ଗୋସାଇଁ ।
ଏଥିର ସନ୍ଦେଶ ଗୁରୁ ଫେଡ଼ି ଦେବା କହି ।୨୭।
ଶୁଣ ହେ ବରଜ ଦାସ ଏଥିର ବିଚାର ।
କଳିଯୁଗ ଲୋକଙ୍କୁ ଅଟଇ ବଡ଼ ଘୋର ।୨୮।
ଦ୍ୱାପର ଯୁଗରେ ବଡ଼ା କରନ୍ତି ପୋଷେଲା
ସ୍ୱାଗର କାହ୍ନର ଘର ଦ୍ୱାପରର ଲୀଳା ।୩୦।
ବଳିରାଜା ସୁବର୍ଣ୍ଣ ପାତ୍ରରେ ଅନ୍ନ ଖାଇ ।
ଖତ କୁଢ଼େ ପକାନ୍ତି ଯେ ଅନ୍ନେ ଲୋଭ ନାହିଁ ।୩୧।
ଏକ ଗୋଟି କହୁଡ଼ି ଯେ କଳିଯୁଗେ ବଡ଼ ।
ଗୁରୁଙ୍କୁ ଦେଖିଣ ଶିଷ୍ୟ ଲୁଚବେ ଝାଡ଼ାଡ଼ ।୩୨।
କଳିଯୁଗେ ଅକାର ଶିଷ୍ୟଙ୍କୁ ଯେବେ କହି ।
ବଚନ ଗୋଟିଏ ଅକାରଙ୍କୁ ଯେବେ ପାଇ ।୩୩।
ରତ୍ନ ଧାନେ ମସାଏ ସୁବର୍ଣ୍ଣ ଯେବେ ମିଳେ ।
ଶିଷ୍ୟଙ୍କୁ ଲେଖିବ କିହ୍ନା ଭଗତ ଯେ ମୂଳେ ।୩୪।
ବଚନ ସଂସିଦ୍ଧି କିହ୍ନା ହୁଅଇ ପ୍ରମାଣ ।
ଏମନ୍ତ ହୋଇଣ ପିନା ଶିଷ୍ୟ ଗୁରୁ ପୁଣ ।୩୫।

---

୨୬—୨ଥ ଚାର କହିବ (କ), ୨୯—୧ ହେ ବରଜବଂଶ (ଖ)
୩୩—୧ଥ କର ଶିଷ୍ୟଙ୍କୁ (କ); ୩୪—୨ଥ ଚାରକୁ ସେ ତେଜଇ (ଚ).

ଏକ ଯେ ପଣ୍ଡିତ ବୁଦ୍ଧି ଗୁରୁଙ୍କ ଲକ୍ଷଣ ।
ବୁଝାନ୍ତି ଶିଷ୍ୟଙ୍କୁ ଗୁପ୍ତ ମନ୍ତ୍ରର ଧାରଣ ।୩୬।
ବିଦ୍ୟାବାଟ ଅଟଇ ଯେ ମନ୍ତ୍ରଙ୍କର ମୂଳ ।
ବିଦ୍ୟାଶୂନ୍ୟ ଘଟକୁ ଯେ ଧ୍ୟାନ ଜ୍ୟୋତି ସ୍ଥଳ ।୩୭।
ବିଦ୍ୟାଧ୍ୟାନ ମୂଳ ଅଟେ ମତ ସାର ସାର ।
କଣ୍ଟକ ବୃକ୍ଷ କି ହେବ ଚନ୍ଦନ ପ୍ରକାର । ୩୮ ।
ଭକ୍ତିବାକ୍ୟ ଶାସ୍ତ୍ରପଥ ଯେଉଁ ଜନ ଶୁଣି ।
ଶାସ୍ତ୍ର ସାଧିଣ ନେଇ ନ ପାରନ୍ତି ପୁଣି । ୩୯ ।
ଭକ୍ତିବାକ୍ୟ ଶାସ୍ତ୍ର ଶୁଣି ଶ୍ରବଣ କରନ୍ତି ।
ସୁ ଜନଙ୍କୁ ବୋଲିବା ଯେ ଭକ୍ତିଜ୍ଞାନ ମତି । ୪୦ ।
ମୁକ୍ତିବାକ୍ୟ ଶୁଣିଲେ ଯେ ଭକ୍ତି ଢଳ ଢଳ ।
ଶାସ୍ତ୍ର ଶୁଣିଲେ ହୁଲୁସଇ ପ୍ରେମମୂଳ । ୪୧ ।
କହୁଗଲେ ବୁଝୁଥାଇ ଭକତ ଯେ ନର ।
ଶ୍ରୀଭାଗବତଙ୍କୁ ପରୀକ୍ଷିତ ମତସାର । ୪୨ ।
ଯେଉଁଠାରେ ନ ବୁଝନ୍ତି ଶୁକଙ୍କୁ ପଚ୍ଛ୍ରଣ ।
ଭଗତ ପଥ ହେତୁକୁ ମନରେ ବସ୍ତୁର । ୪୩ ।
ହୀନ କ୍ଷୀଣ ଅଚ୍ୟୁତ କି ମୁଖେ କହୁ ପାରେ ।
କୋଟି ଜନ୍ମ ହେଉ ଥିଲେ ଗୁରୁ ହେଉ ଧରେ । ୪୪ ।

ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ନବମ ଛାନ୍ଦ ॥



୩୬—୨ ମନ୍ତ୍ର ଉଚ୍ଚାରଣ (କ)
୩୯—୨ ଶାସ୍ତ୍ର ଶୋଧଣ (କ)

# ଦଶମ ଛାନ୍ଦ

ଶିଷ୍ଟ ଗୁଣାଧିପର ଯେ ନ ଯେଜମା ଦୋଷ ।
ସେହି ଶିଷ୍ୟମାନଙ୍କର ମନ ଯେ ଅପଶ୍ୟ । ୧ ।
ସେ ଜନକୁ ଗୁରୁ ପୁଣ କି ହେତୁ ଜଣାବ ।
ଗୁରୁଙ୍କ ତ ଲଜ୍ଜାଭାବ ଶୁଣିଲେ ପଡ଼ିବ । ୨ ।
ଶୁଣ ହେ ପଣ୍ଡିତ ବ୍ରହ୍ମଗଣଙ୍କର ବାଣୀ ।
ଟିକର-ଖଣ୍ଡିରେ ଯେହ୍ନେ ନ ରହଇ ପାଣି । ୩ ।
ଅପଶ୍ୟ ଘଟ ଗୁରୁଙ୍କ ଟିକରର ସମ ।
ମାଙ୍କଡ଼ା ପଥରକୁ ମୁଗୁନି କଣ କମ । ୪ ।
ଆକାଶର ଜଳ ପୃଥ୍ୱୀ ସମଂରେ ପଡ଼ିଲା ।
ଟିକରେ ନ ରହେ ଜଳ ଗୁରୁ କସ କଲା । ୫ ।
ଜଳଟ ହାଣ୍ଡିର ପ୍ରାପ୍ତେ ହୋଇଲା ସେ ଘଟ ।
ଉପର ହାଣ୍ଡି ପର୍ଯ୍ୟନ୍ତ ମତ ଯାର ଶ୍ରେଷ୍ଠ । ୬ ।
ମେଘ ହୋଇ ବୃଷ୍ଟି ଯଦ ପୃଥ୍ୱୀରେ ନୋହିବେ ।
ମନ୍ତ୍ରଶୂନ୍ୟ ଧ୍ୟାନ ଶୂନ୍ୟ ଗୁରୁ ସେହି ଭାବେ । ୭ ।
ଉଚ୍ଚ ନୀଚ ଦୁଇଠାରେ ଜଳ ହୋଏ ଶୂନ୍ୟ ।
ବିବେକ ଗୋଷ୍ଠିରେ ପୁଚ୍ଛ ଏମନ୍ତ ବଚନ । ୮ ।
ନିର୍ଧନ ଲୋକକୁ ଧନ ମାଗିଲେ କି ପାଇ ।
ବଚନର ଦୃଢ଼ଭାଷା କହିବ କି ବାଇ । ୯ ।
ମନ ଯା ନିଶ୍ଚଳ ନୋହି ରହିବ କି ଧ୍ୟାନ ।
ନ ଜାଣିଲା ନାହିଁ ହେବ ଜାଣିଲା ସମାନ । ୧୦ ।
ଦଣ୍ଡବତ ଅଷ୍ଟାଙ୍ଗ ଭାବରେ ମୋର ପାଦେ ।
ସଂଶୟ ତୁଟିଲା ଗୁରୁ ଏ ମନ ବିଷାଦେ । ୧୧ ।

---

୪—୨ ମୁଗୁନି କରି ସମ (ଖ)

ନୋହିଲେ ଗୋପାଳ କୁଳ ତାରିବାର ପାଇଁ ।
ଆଜ୍ଞା ଦେଲେ ତୁମ୍ଭଙ୍କୁ ଯେ ନରାତ୍ମା ଗୋସାଇଁ । ୧୨ ।
ସୁଦାମ ସୁନ୍ଦରାନନ୍ଦ ସେଠାରେ ହୋଇଲ ।
ଏଠାରେ ଅଚ୍ୟୁତାନନ୍ଦ ନାମ ଯେ ବହିଲ । ୧୩ ।

ସନାତନ ନାମ ତାଙ୍କ ଶ୍ରୀଚରଣ ଦାସ ।
ତାଙ୍କ ପାଦେ ତୁମ୍ଭର ଯେ ମନର ହରଷ । ୧୪ ।
ତାଙ୍କ ଆଜ୍ଞା ମନେ ଧରି ଆମ୍ଭଙ୍କୁ କହିଲ ।
ଗୋପାଳ କୁଳକୁ ଧନ ଗୁପତେ ରଖିଲ । ୧୫ ।

ଶ୍ରୀଅଚ୍ୟୁତ ଶ୍ରୀଅଚ୍ୟୁତ ବନ୍ଧୁ ପରମାଣ ।
ଚବିଶ ଗୋପାଳ ଆମ୍ଭେ ପଶିଲୁ ଶରଣ । ୧୬ ।
ଦିନ ହୀନ ହୋଇ କରି ତୁମ୍ଭ ପାଦ ତଳେ ।
ଶରଣ ରଖିବ ଗୁରୁ କଳି ଘୋର କାଳେ । ୧୭ ।

ଦିନ ଅଷ୍ଟ ବାର ଗୋପ ଗ୍ରାମ ବିଷ୍ଟୁ କରି ।
ଷୋଳ ବାର ରହାସେ ଯେ ହତ୍ଆନ ବସ୍ତୁର । ୧୮ ।
ଦିନ ହୀନ ଏଣୁକଲ ଗୁରୁଙ୍କ ଚରଣ ।
କୋଟି ଜନ୍ମ ଭାଗ୍ୟ ଥିଲା ଶୁଣିଲୁ ଶ୍ରବଣ । ୧୯ ।

ଶୁଣ ହୋ ପଣ୍ଡିତ ବୋଧ ତୁମ୍ଭେ ନୋହ ଭିନ୍ନ ।
ତୁମ୍ଭ ଆମ୍ଭ ଜନ୍ମେ ଜନ୍ମେ ସଙ୍ଗ ନୋହେ ଆନ । ୨୦ ।
ଶ୍ରୀକୃଷ୍ଣ ଆଜ୍ଞାକୁ ଶୁଣି ଉଦ୍ଧାର ଏ ମନ୍ତ୍ର ।
କୃଷ୍ଣ ହରେ ମନ୍ତ୍ରପୂଜା ଏବେ ଦେବା କହୁ । ୨୧ ।

ଚଉଶ ପାଖୁଡ଼ା କରି ଦଳ ଯେ ଥାପିବ ।
ନବତନ ବସ୍ତୁଗୋଟି ଚଉପାଶେ ଦେବ । ୨୨ ।
ଲେଖନ ଯତ କହୁତେ ଯେ ଅବା ଯେ ବିଧି ।
ଶିଷ୍ୟଙ୍କୁ କହିବ ଯେ ଉତ୍ତମ କରି ସିଦ୍ଧି । ୨୩ ।
ଚଉଶ ଦଳ ନ ଭେଦ ଯେଉଁ ଗୁରୁ କହି ।
ପୁଣ ଯେ ପାଷାଣ୍ଡ ହୋଏ ଅନ୍ନ ନ ମିଳଇ । ୨୪ ।

ଅନ୍ଧ ଭୂଷ୍ଣ ହୁଅଇ ଯେ ନ ଜାଣେ ପ୍ରମାଣ ।
ବଚନ କହିଲେ ତାର ନ ଶୁଣେ ଶ୍ରବଣ । ୧୫ ।
ଶ୍ରୀଗୁରୁ ଭଣ୍ଡାର ମୁହିଁ କହିବ କି କ୍ଷମ ।
ନ ଜାଣି କହୁଛୁ ମୁହିଁ ଅତ୍ୟନ୍ତ ଅଧମ । ୧୬ ।
ପାଇଲେ ସୁଜନଜନ ଲଗାଇବ କୂଳେ ।
ଭାସି ଯାଉଅଛୁ ମୁହିଁ ଭବ-ନଦୀ ଜଳେ । ୧୭ ।

ଇତି ଶ୍ରୀ ଧ୍ରୁବଭକ୍ତ ଗୀତା କଥନେ ନାମ ଦଶମ ଛାନ୍ଦ ॥

## ଏକାଦଶ ଛାନ୍ଦ

ବତ୍ସ ମୁକୁନ୍ଦ ! ବଚନ ଶୁଣ ଏ ପଞ୍ଚାକ୍ଷର ଗୁଣ ।
ଓଁକାର ଲିହ୍ନ ଅର୍ଦ୍ଧାଙ୍ଗେ ଥୋଇ ଉଁକାର ଦେବ ପୁଣ ।
ତ୍ରିକୋଣ ଥାପି ଉପରେ ଶୂନ୍ୟ ଏମନ୍ତ୍ର ଗୁରୁ ସ୍ତବ ।
ବଂ ବସାଇ ଦକାର ବନ୍ଧ ମନ୍ତ୍ରକୁ କର ଠାବ ।୧।
ରକାର ଅର କୋଣରେ ବନ୍ଧୁ ରେକାର ତଥି ପାଶ ।
ଲକାର ଆର କୋଣେ ବସାଇ ଏମନ୍ତ୍ର ମନ୍ତ୍ର ଘୋଷ ।
ଚତୁପାଶରେ ଏକ ବସନ ମନ୍ତ୍ରକୁ ନିଶ୍ଚଳ ।
ଅତି ଗୁପତ ଅତି ଏ ଗୁପ୍ତ ମନକୁ ଥିବ ସ୍ଥଳ ।୨।
ପଣ୍ଡିତ ଜନ ଥିର ବଚନ ଶତେକ ପଣ୍ୟ ଘଣ୍ଟ ।
ବିବେକୀ ପାରେ ଆତ୍ମା ବସ୍ତୁରେ ତେବେ ଏ ମନ୍ତ୍ର ଭେଟ ।
ଏମନ୍ତ ଜପ ମନ୍ତ୍ର ସ୍ୱରୂପ ମରଣ କାଳେ ସାକ୍ଷୀ ।
ଏ ମନ୍ତ୍ର ସାଧି ପାଇଲେ ଧ୍ୟାନେ ପାପରେ ନୋହେ ଲେଖା ।୩।
କ୍ଷଣେ ନିମିଷେ ଏକ ଦଣ୍ଡ ଯେ ମନ୍ତ୍ରକୁ କରୁଥିବ ।
ପଞ୍ଚ ପାତକ ଖଣ୍ଡନ ହେବ ଶିଷ୍ୟ ଭଗତ ସ୍ତବ ।
ମନ୍ତ୍ର ଗୁଣିବ ଯତ୍ନେ ବସିବ ତନ୍ତ୍ରେ କରିବ ଠାବ ।
ଗୁରୁଙ୍କ ବିଧି ଏମନ୍ତ ଯେତି ଶୁଣ ହେ ଚନ୍ଦ୍ର ଦେବ ।୪।
ମୁକୁନ୍ଦ ମୁହିଁ ବିନୟ ହୋଇ ସଂଶୟ ମୋର ଛିଣ୍ଡ ।
ଯନ୍ତ୍ର ତନ୍ତ୍ର ଏ ମନ୍ତ୍ର କାହିଁ ଏତେ ଯେ ବ୍ରହ୍ମମନ୍ତ୍ର ।

---

୧—୨ ଓକାର ଲିହ୍ନ (ଖ) ; ୧—୪ ରଂ ବଂ ପାଇ [କ] ; ୨—୧ ଲକାର ଆରକୁ ସେ ବନ୍ଧବ ରେକାର ନ ଥିବ ପାଶେ [ଖ] ; ୨—୨ ମନ୍ତ୍ର ଘୋଷେ [ଖ] ; ୩—୪ ଏ ମନ୍ତ୍ର ସାଧି [ଖ] ; ୪—୧ କ୍ଷମିଷେ ଏ ଦଣ୍ଡବତେ [କ] ; ୪—୩ ମନ୍ତ୍ରେ ଶୁଣିବ (ଖ) ;

କେ ପୁଣ ବନ୍ଧ ପାରବ ଗୁରୁ ମନ୍ତ୍ର ମଣ୍ଡଳେ ନର ।
ବୃଷସ୍ବା ଜଡ଼େ ଭବ ସାଗରେ ବୁଡ଼ନ୍ତେ ତତପର । ୫ ।
ମନକୁ ସଙ୍ଗୀ ମୁକୁନ୍ଦ ଭେଦ ଭଲ ପୁଚ୍ଛିଲ ଷ୍ଟ୍ରମା
କହିବା ଏବେ ଏ ଦୃଷ୍ଟାନ୍ତର ଓଲଟ ଭେଦ ମିଶା ।
ତରଳ ବନେ ହେମ ଯେସନେ ଆନେ କ ହୋଏ ଭ୍ରଳ ।
ଗଛଣୀ ମୂଳେ ଧାନ ଯେସନେ ମନ୍ତ୍ରକୁ ତନ୍ତ୍ର ମୂଳ । ୬ ।
ମାପୁଣୀ—ଯାଧେ ଚଣ୍ଡୂଳ ଯେହ୍ନେ ସମସ୍ତ ଜନ ବୋଧ ।
ମନ୍ତ୍ର ସନ୍ତ୍ରକୁ ତନ୍ତ୍ର ଭେଦଲେ ଶେଷର ଖଣ୍ଡେ ବାଧ ।
ଗୁରୁ ଯେସନେ ରଖି ଆସନେ ରାଜାକୁ ସିଂହାସନ ।
ତନ୍ତ୍ର ନ ଭେଦ ଗୁରୁ ହୁଅନ୍ତ ନିଷ୍ଫଳ ହୋଏ ଜନ୍ମ । ୭ ।
ଅମାପ କର ଅଲେଖା ଧର ଦେବେ ହୁଅଇ ଧନ୍ଦ ।
ମୂର୍ଖ ପଣ୍ଡିତ ବୁଝିବା ପାଇଁ ଗୁରୁ ବଚନ ବନ୍ଧ ।
ଯେସନେ ଏକ ଧାନରୁ ପୁଣ ବହୁତ ଧାନ ହୋଏ ।
ପାଞ୍ଚ ଗଛଣୀ ଧାନ ମଧ୍ୟରୁ ବହୁ ବ୍ୟାପିତ ହୋଏ ।୮।
ଗୁରୁ ବଚନ ଏମନ୍ତ ଘେନ ଶିଷ୍ୟଙ୍କୁ ଗୁରୁ କହେ ।
ସାରଙ୍ଗ ପ୍ରଭୁ କରୁଣା କଲେ ଦାନ ଅଚ୍ୟୁତ କହେ ।
ସପ୍ତଦ୍ୱୀପ କଟକ କଲେକ ଥାନ ହରିଡ଼ା ମୂଳେବାସ
ଯେ ପରିବାର ମୁହିଁ ଅଟଇ ଶୂଦ୍ର ଅଚ୍ୟୁତ ଦାସ ।୯।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଏକାଦଶ ଛନ୍ଦ ॥

*** X ***

୫—କେ ପୁଣ ବନ୍ଧ (କ)
୮—୧ ହୁଅଇ ସନ୍ଧ (କ); ୮—୨ ଗୁରୁ ବଚନ ବନ୍ଧ (କ) ; ୮—୩ ଧାନମଧ୍ୟେ (ଖ);

# ଦ୍ୱାଦଶ ଛାନ୍ଦ

ବୋଲି—ଯୁଗଳ ମନ୍ତ୍ରର ସ୍ତବ ଶୁଣ ନନ୍ଦ ଦାସ ।
ସିଦ୍ଧି ସାଧକମାନଙ୍କୁ ଯେ ଏଣେ କର ଶିଷ୍ୟ ।୧।
କୃଷ୍ଣପକ୍ଷ ଦଶମୀ ଯେ ଏକାଦଶୀ ତିଥି ।
ଷୋଳ କୋଠା ଲେଖିବ ଯେ ଲିପିଥିବ ପୃଥ୍ୱୀ ।୨।
ଷୋଳ ଯେ ଅକ୍ଷର ତହିଁ ସକଳି ଲେଖିବ ।
ରାଧେ କୃଷ୍ଣ ରାଧେ କୃଷ୍ଣ କୃଷ୍ଣ ଶ୍ୟାମ ଦାମ ।୩।
ଦଣ୍ଡବତ ହୋଇବ ବସନ ଏକ ଥୋଇ ।
ପଞ୍ଚାଙ୍ଗ ସ୍ତବରେ ଦଣ୍ଡବତ ଏଥି ବନ୍ଧ ।୪।
ମସ୍ତକ ଲଗିବ ଦୁଇ ହସ୍ତ ଭୂମିତଳେ ।
ପାଦ ଆଣ୍ଠୁ ରହିବ ଯେ ଧରଣୀ ନିସ୍ତଳେ ।୫।
ଅଧମ ଯେ ନନ୍ଦ ଦାସ ପଚ୍ଚରଇ ବାଣୀ ।
ନାମ ନ ଘେନିଲେ କିସ ହୋଇଯାନ୍ତି ପ୍ରାଣୀ ।୬।
ଭଲ ପଚ୍ଚରିଲ ଦାସ ଉତ୍ତମର କଥା ।
ବିବେକ ଜନ ଜାଣନ୍ତି ଏଥିର ବ୍ୟବସ୍ଥା ।୭।
ନାମ ନ ଘେନିଲି ଲୋକ ଚଣ୍ଡାଳରେ ସରି
ଜଳ ହସ୍ତେ ଖାଇଲେ ମଦିରା ପାନ କରି ।୮।
ଶ୍ୱାନ ବିଷ୍ଠା ପ୍ରାସ୍ତେ ମଣି ତାର ଅନ୍ନହାଥ ।
ଯେଉଁଠାରେ ବସେ ସେ ମଶାଣି ଭୂମିପଥ ।୯।
ପିତୃ ଲୋକମାନେ ଅନ୍ନ ନ ପାନ୍ତି ତା ଘରେ ।
ସୂର୍ଯ୍ୟଙ୍କୁ ନିଷେଧ ଜଳ ଦେଲେ ତା ହସ୍ତରେ ।୧୦।

---

୩—୨ ରାଧେ କୃଷ୍ଣ କୃଷ୍ଣ ଶ୍ୟାମ (କ); ୫—୨ ଧରଣୀ ନିସ୍ତଳେ;
୯—୧ ଅନ୍ନଭାବ (କ) ;

ବିଧବା ଯୁବତୀ ଯେତେକ ସଙ୍ଗରେ ନିଷେଧ ।
ପୃଥିବୀ ନ ସହେ ଭାର ସେ ଯେ ନରଘାତ ।୧୧।
ନାମ ନ ଘେନିଲା ଜନ ପଶୁରେ ସେ ସର ।
ନାମକୁ ପରତେ ହେଲେ କୃଷ୍ଣ ଅଙ୍ଗ ଧର ।୧୨।
ହରିନାମ କଳିଯୁଗେ ଅଟଇଟି ସାର ।
ପାଇଲେ ସୁଜନ ଜନ ଗୁରୁ ସେବା କର ।୧୩।
ଗୁରୁ ଅଟେ ଫଳବୃକ୍ଷ ଶିଷ୍ୟ ସେ ଖେଚରା ।
ଗୁରୁଙ୍କୁ ପୁଛିବ ଶିଷ୍ୟ ଭଗତର କଥା ।୧୪।
ଗୃହରେ ଆସନ ଦେଇ ଗୃହରେ ଭୋଜନ ।
ଫୁଲ ପାନ ଚନ୍ଦନ ଯେ ଦେଇଣ ବସନ ।୧୫।
ଗୁରୁ ମାତା ପଲ ଦ୍ୟନ୍ତ ଗୁରୁ ପିତା ଫଳ ।
ଅନୁକ୍ଷଣେ ଧ୍ୟାଇଥିବ ଗୁରୁ ପାଦତଳ ।୧୬।
ଗୁରୁଙ୍କର କାନ୍ତ ଷୋଳକଳା ଯେ ଅଟଇ ।
ଗୁରୁଙ୍କ ଚିହ୍ନନ୍ତ ବଇଷ୍ଣବ ଅଟେ ସେହୁ ।୧୭।
ଏଣୁକରି ବଇଷ୍ଣବ ଚରଣର ଧୂଳି ।
ଜନମେ ଜନମେ ଆଶ୍ରା କରିବ ସଙ୍ଖାଳି ।୧୮।
ବୈଷ୍ଣବ ଗୋସାଇଁ ସିନା ଗୁରୁ ଚିହ୍ନାଇଲେ ।
ଗୁରୁ ପୁଣ କୃଷ୍ଣଠାରେ ପରତେ ଯେ କଲେ ।୧୯।
କଳିଯୁଗେ ଏଣୁକରି ବୈଷ୍ଣବ ଠାକୁର ।
ଚୋର କଳ୍ପଦ୍ରୁମ ଧରି ବୈଷ୍ଣବ ବେଶର ।୨୦।
ନୀଳାଚଳେ ଭଜନ ଯେ ରଚିଲେକ ପୁଣି ।
ପଞ୍ଚ ଭିକ୍ଷା ମାଗିକରି ହରିନାମ ଗୁଣି ।୨୧।
କଦଳୀ ପଟ୍ଟ ଆସନ ଗୁଳ କନ୍ଥାବଡ଼ ।
ପୁଷ୍ପଭୋଗ ତେଜିଣ ଯେ ହରିନାମ ଦୃଢ଼ ।୨୨।

---

୧୮—୨ ଜନ୍ମେ ଜନ୍ମେ ଆଶ୍ରା (କ); ଚୈତନ୍ୟ ଜନ୍ମେ ଜନ୍ମେ ଆଶ୍ରା (ଖ);

ଯେଣୁକରି କଳିଯୁଗେ କୃଷ୍ଣ ବଇଷ୍ଣବ ।
କଳିଯୁଗେ ବଇଷ୍ଣବ ଅଟ ବଡ ସ୍ୱଭ ।୨୩।
ରାଜେନ୍ଦ୍ର ଠାବରୁ ବଡ଼ ଯୋଗୀନ୍ଦ୍ର ଟି ହୋଇ ।
ମନ୍ତ୍ରକୁ ପରତେ ହେତୁ ନାମ ଯୋଗୀରାଜ ।୨୪।
ପରଜା ପାଳନ ସ୍ୱପ୍ନା ଅଟଇ ଯେ ଦୃଢ଼ ।
ଏଣୁକରି ରାଜେନ୍ଦ୍ର ଟି ସଂସାରରେ ବଡ଼ ।୨୫।
ରାଜେନ୍ଦ୍ର ଜନର ବୀଜ ଅଟଇଟି ସତ ।
ଯୋଗୀନ୍ଦ୍ର ଜନର ଦୃଢ଼ ଅଟଇଟି ମତ ।୨୬।
ସତ ମତେ ବହୁଅଛୁ ପୃଥିବୀ ଧାରଣା ।
ଜାଣୁ ଜାଣୁ ନନ୍ଦ ଦାସ ହେଉଅଛୁ ବଣା ।୨୭।
ଭଗତ ଜ୍ଞାନର ହେତୁ ଅନୁଭବ ମୂଳ ।
ମନକୁ ପରତେ ହେଲେ ଭାଙ୍ଗିବ ଯେ ଗୋଳ ।୨୮।
ମନ ହେତୁ ନ ଜାଣିଣ ମୂଢ଼ ମୋର ମତ ।
ମନ ହେତୁ ହେଉ ଗୁରୁ ସଙ୍ଗ କର ମିତ ।୨୯।
ପାମର ଅଚ୍ୟୁତ ଗୁରୁଚରଣକୁ ଆଶ ।
ମରଣ ସମୟେ ପ୍ରଭୁ ହୋଇବାକ ଦୃଶ୍ୟ ।୩୦।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଦ୍ୱାଦଶ ଛାନ୍ଦ ॥



# ତ୍ରୟୋଦଶ ଛାନ୍ଦ

ବୋଲି—ଶୁଣ ହେ ଛକଣ ଦାସ ଗୁରୁଙ୍କ ଗୁପତ ।
ପଞ୍ଚାକ୍ଷର ବୋଲି କରି ମନ୍ତ୍ର ହେଉ ତନ୍ତ୍ର । ୧ ।
ଓଁକାର ଉପରେ ଅର୍ଦ୍ଧାଙ୍ଗକୁ ବସାଇବ ।
ଅର୍ଦ୍ଧାଙ୍ଗ ଉପରେ ବିନ୍ଦୁ ଗୋଟିଏ ଥୋଇବ । ୨ ।
ପଢ଼ିଲେ ଅକ୍ଷର ଗୋଟି ଏ ମନ୍ତ୍ରଟି ହୋଇ ।
ଚତୁଷ୍କୋଣ ମଧ୍ୟରେ ଯେ ଅକ୍ଷର ବସାଇ । ୩ ।
ଗୃହଦଳେ ବସାଇବ ଗୃଣଯେ ଅକ୍ଷର ।
ହ୍ରଗ ବୋଲି ଅକ୍ଷର ଯେ ଓଁକାର ତଳର । ୪ ।
ରଉଁ ମାତ୍ରା ବସାଇଣ ତଥିର ପାଶରେ ।
ଋକାର ବସିବ ପୁଣ ତଥିର ଅଗ୍ରରେ । ୫ ।
ଯନ୍ତ୍ର ବିଧି ଏମନ୍ତ କରଣ ବସାଇବ ।
ନବତନ ବସନ ଗୋଟିଏ ବେଢ଼ାଇବ । ୬ ।
ଶିଷ୍ୟଙ୍କୁ ଯନ୍ତ୍ର ବାନ୍ଧିଲେ ଏ ମନ୍ତ୍ର ବୁଝାଇ ।
ତନ୍ତ୍ରରେ କହିବ ନୈଋତ ଧ୍ୟାନରେ ଦେଖାଇ । ୭ ।
ମୂର୍ଦ୍ଧନରେ ଉଙ୍କାର ଯେ ରେକାର ବୁକରେ ।
ଟକାର ବସିବ ଅଷ୍ଟ ଯେବଣ ଠାବରେ । ୮ ।
ଋକାର ବସିବ ପୁଣି ଧ୍ୱକାର ବିସର ।
ଗ୍ର ଆ ବୋଲି ସିଦ୍ଧାର ଯେ ମନ୍ତ୍ରକୁ ବିସ୍ତର । ୯ ।
ମୁଖରେ ପଢ଼ିଲେ ପୂର୍ଣ୍ଣ ମନ୍ତ୍ର ବୋଲି କହ୍ନ ।
ଅକ୍ଷର କରଣ ପୂର୍ଣ୍ଣ ଯନ୍ତ୍ରରେ ବସାଇ । ୧୦ ।

---

୨—୧ ଓଁକାର ଉପରେ (ଖ) ୩—୨ ଚତୁର୍ଗୁଣ (କ) ୪—୨ ଓଁକାର (କ,ଖ)
୫—୧ ହ୍ରଂମାତ୍ରା.. ତନ୍ଧିର (ଗ) ୫—୨ ତନ୍ଧିର ଅଗ୍ରରେ (କ)
୯—୨ ବଉଁ ବୋଲି......ବିମର (ଖ)

ମନ୍ତ୍ରକୁ ଶନ୍ଧବ ଦେହ ମଧ୍ୟରେ ବସ୍ତୁଶ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଗୁରୁ ଶିଷ୍ୟ ଯେ ସୁମଶ । ୧୧ ।
କର ନ୍ୟାସ କରିବ ଯେମନ୍ତ ପୁଣି କରେ ।
ଅଙ୍ଗନ୍ୟାସ କରିବ ଯେ ପୁଣି ହୃଦୟରେ । ୧୨ ।
ଏକ ଯେ ଅକ୍ଷର ଯଦି ମନ୍ତ୍ରକୁ ଛୁଡ଼ନ୍ତି ।
ତତକ୍ଷଣେ ମନ୍ତ୍ରଛୁଡ଼ ଦୋଷ ଯେ ପାବନ୍ତି । ୧୩ ।
ଛୁଡ଼ଣ ନିମନ୍ତେ ମନ୍ତ୍ର ଏଣୁକରି ଯନ୍ତ୍ର ।
ଯନ୍ତ୍ର ନବାଶଲେ କାହୁଁ ·ଇବ ତଦନ୍ତ । ୧୪ ।
ଏଣୁକରି ତନ୍ତ୍ର ଗୋଟି ଅଟଇଟି ବୀଜ ।
ତନ୍ତ୍ରହିଁ ହିଜଲେ ମନ୍ତ୍ର ଅଟେ କେଉଁ କାର୍ଯ୍ୟ । ୧୫ ।
ଏଣୁକରି ତନ୍ତ୍ରକୁ ଯେ ଛନ୍ଦ୍ରରେ ରଖିବ ।
ଛନ୍ଦ୍ରକୁ ଯେ ଜ୍ୟୋତିରୂପ ନେଇଣ କରିବ । ୧୬ ।
ଜ୍ୟୋତିକ ଯେ ଅଜ୍ୟୋତି କରିଣ ଯଦି ପାରି ।
ତେବେ ସିନା ଜାଣିମା ଯେ ଗୁରୁ ଆଗ୍ରେ କରି । ୧୭ ।
ଏ ଭେଦ ନ ଜାଣି ଯେଉଁ ଜନ କରେ ଶିଷ୍ୟ ।
ଅତାପ ପକ୍ଷୀର ଡିମ୍ବ ପ୍ରାୟେ ହୋଏ ନାଶ । ୧୮ ।
ସେ ଶିଷ୍ୟର ଯଶସ୍ତ୍ର ହୋଇବ କାହିଁ ଦୂର ।
ସେ ଗୁରୁଙ୍କୁ ବ୍ୟାଧ ସଙ୍ଗେ ସରି ସମ କରି । ୧୯ ।
ସେଟର ନିମନ୍ତେ ଲକ୍ଷେ ଜନ୍ମ ସେ ମାରଣ ।
ଉଦର ପୋଷିଣ ନ ପ ରଇ ସେନ୍ଦ୍ର ପୁଣ । ୨୦ ।
ସନ୍ଧପେ ଶିଷ୍ୟ କରିଣ ଅତାପିତ ଡିମ୍ବ ।
ସେ ଡିମ୍ବ ମଧ୍ୟରୁ ପକ୍ଷୀ କଷ୍ଟତ କି ଗମ୍ୟ । ୨୧ ।
ଅତ ଏ ଶନ୍ଧନ ସନ୍ଧ ଗୁରୁଙ୍କ ବସ୍ତୁର ।
କୋଟି ଜନ୍ମ ଘାନ୍ୟରେ ଯେ ଯନ୍ତ୍ର ବଧି ଧରି । ୨୨ ।

---

୧୧—୧ ଯନ୍ତ୍ରକୁ ଶନ୍ଧବ (କ)
୧୪—୨ ନିଷ୍ଠଇଲେ କାହିଁ (କ); ୧୫—୧ ଯନ୍ତ୍ର ଗୋଟି (କ);

ତତ୍ତ୍ୱ ନ ଭେଦିଲେ ପୁଣ ଯିବ ଚଉରାଶି ।
ମାନବ ଜନମ ପୁଣ ଅଟେ ପୂର୍ଣ୍ଣମାସୀ । ୨୩ ।
ପୂର୍ଣ୍ଣମୀ ଅଟଇ ତତ୍ତ୍ୱ ବୁଝି ଯେ ଜାଣନ୍ତି ।
ତତ୍ତ୍ୱ ନ ଜାଣିଲେ ପୁଣ ଅମାବାସ୍ୟା ହୋନ୍ତି । ୨୪ ।
ଏଣୁକରି ତତ୍ତ୍ୱଭାବ ଗୋବିନ୍ଦ ଚରଣ ।
କ୍ଷଣେ ଦଣ୍ଡେ ବସି କର ସମାଧି ଧାରଣ । ୨୫ ।
ଶିଷ୍ୟର ବୋଧ ନିମନ୍ତେ ଏତେ ପରମାଣ ।
ନୋହିଲେ ନିଶ୍ଚୟ ଗତି ସମାଧି ଧାରଣ । ୨୬ ।
ଓଁକାର ତୋଳିବ ଦଶ ଦଳରେ ବସ୍ତିର ।
ଦଶକୁ ରଖିବ ଷୋଳ ଦଳରେ ଫନ୍ଦାଇ । ୨୭ ।
ଷୋଳକୁ ରଖିବ ପୁଣ ସ୍ୱରଭେଦ ସ୍ଥାନ ।
ସ୍ୱର ଯେ ରହିବ ଦୁଇ ଦଳେ ଯେଉଁ ଧ୍ୟାନ । ୨୮ ।
ଏମନ୍ତେଣ ଏକମାତ୍ର ଭରଥ ସାଗରେ
ଧାସିବ ନିରତେ ମନ ରଙ୍ଗ ଉବଂସବେ । ୨୯ ।
ଅଲପ ଅଲପ କରି ସାଧିବ ଭୋଜନ ।
ନିଶ୍ଚଳ ଚରଣ ପୁଣ କରିବ ଆସନ । ୩୦ ।
ତେବେ ସିନା ଜାଣିମା ଶିଷ୍ୟର ଗତି ହୋଏ ।
ଗୁରୁ ଚିହ୍ନାଇଲେ ପଦ ଗୁଡ଼ିଲ ସଂଶୟେ । ୩୧ ।
କୋଟି ଯୁଗ ଏ ଭେଦ ନ ଜାଣି ହୋଏ ଦାସ ।
ଯେଟର ନିମନ୍ତେ ଭେକଟଲେ ହୋଏ ବଶ । ୩୨ ।
ଝଗଡ଼ ଜନ୍ତାଳେ ପଡ଼ି ପେଟେ ବନ୍ଧ ହେଲି ।
ପାମର ଅଚ୍ୟୁତ ଭବ ସାଗରେ ବୁଡ଼ିଲି । ୩୩ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଷଷ୍ଠୋଦଶ ଛାନ୍ଦ ॥

—:୦:—

୨୪-୧ ନିମନ୍ତେ ଜ୍ୟୋତ (କ); ୨୫-ହକାର (କ); ୨୭-୨ ଦ୍ୱାଦଶ ରଖିବ (ଖ);

# ଚତୁର୍ଦ୍ଦଶ ଛାନ୍ଦ

ଶ୍ରୀଗୋପାଳ ମନ୍ତ୍ରାମନ୍ତ୍ର ଯେମନ୍ତ ସ୍ୱରୂର ।
ସେତପିଙ୍କି ବାଳକ ଦାସ ହେ ହେତୁ କର ।
ସ୍ୱର କୋଣ ଧରିବ ଯେ ପୁଣ ସ୍ୱର ସ୍ୱର ।
ଆବର ସ୍ୱର ଧଇଲେ ଷୋଳ ହେବ ସ୍ୱର । ୧ ।
ନାମ ବୋଲି ସ୍ୱର ମଧ୍ୟ ରଖିବ ଯେ ପୁଣ ।
ମଧ୍ୟରେ ଗ ର ଗୋଟିଏ କରିବ ନକ୍ଷାଣ ।
ଷୋଳଥାନେ ରଖିବ ଯେ ଏ ଷୋଳ ଅକ୍ଷର
ଅଷ୍ଟାଦଶ ଅକ୍ଷର ଏମନ୍ତ ସ୍ୱର କର । ୨ ।
ଏ ମନ୍ତ୍ର ଯନ୍ତ୍ର ଲେଖିଣ ଏକ ବସ୍ତ୍ର ଭିନ୍ତି ।
ବସ୍ତ୍ର ପୂଜା ଭୋଗ ଦେଇ ଶିଷ୍ୟଙ୍କୁ ବୁଝାଇ ।
ପୁଣ ତନ ଭାଗ ଯେ କରିବ ଭକ୍ତେ ନେଇ ।
ଜନ ବଲ୍ଲଭାସ୍ତୁ ବୋଲି ଓଁକାରେ ବସାଇ । ୩ ।
ଗୋପୀ ଗୋବିନ୍ଦାସ୍ତୁ ବୋଲି ଅଙ୍କାଙ୍କେ ସ୍ଥାପିବ ।
କ୍ଲୀଁ କୃଷ୍ଣାସ୍ତୁ ନମ ଯନ୍ତ୍ରରେ ଗୁଣିବ ।
ଏମନ୍ତେଣ ଦ୍ୱାଦ ଛନ୍ଦ ଏକାଦଶ ବନ୍ଧ ।
ଗୁରୁ ବୁଝାଇଲେ ଶିଷ୍ୟ ଲଭଇ ସେ ସିଦ୍ଧି । ୪ ।
ଜନ ବଲ୍ଲଭାସ୍ତୁ ଶିଷ୍ୟ କରଣ ସ୍ୱରୂର ।
ଗୋପୀ ଗୋବିନ୍ଦାସ୍ତୁ ଗୁରୁ ଅଙ୍କୁ ସୁମର ।
କ୍ଲୀଁ କୃଷ୍ଣସ୍ତୁ ନମଃ କୃଷ୍ଣ ହେତୁ ରମ୍ୟ ।
ମନ୍ତ୍ର ହୋଇଣ ଦଶ ବସ୍ତୁରଙ୍କୁ ଗମ୍ୟ । ୫ ।

---

୪—୨ କ୍ଲୀଁ (କ);

ଜନ ଚନ୍ଦ୍ରାବଳୀ ଗୋବିନ୍ଦାସ୍ବୁ ରାଧା ହେତୁ ।
କ୍ଲୀଁ କୃଷ୍ଣ ଜିତଧି ଜଣବ ଟି ହେତ୍ରୁ ତନ୍ତ୍ରୁ ।
ଏମନ୍ତ ହୋଇଣ ବଜ କୃଷ୍ଣ ମନ୍ତ୍ର ଧ୍ୟାୟେ ।
ଏ ଭେଦ ଜାଣିଲେ ଶିଷ୍ୟ ଗୁଡ଼ିବ ସଂଶୟେ । ୭ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ଯଦ ଶିଷ୍ୟଙ୍କୁ ନ କହେ ।
ସେ ଗୁରୁ ଯେ ବସ୍ତ୍ର ଦ୍ରୋହ ଦୋଷ ପୁଣ ପାଏ ।
ଭିକ୍ଷା ମାଗି ଖାଇବା ଅଟଇ ବଡ ସୁଖ ।
ଗୁରୁ ପଣ ଅଟଇ ଯେ ଅତି ବଡ଼ ଦୁଃଖ । ୭ ।
ଶ୍ରୀ ଗୋପାଳ ମହାମନ୍ତ୍ର ସୁଖେ ଯେ ଭଜିବ ।
ମାଏଁସ ମସ୍ର ମୃଗରେ ବିବର୍ଜିତ ହେବ ।
ମିଥ୍ୟା, ପରଦାରା, ମୁଗେ, ଇନ୍ଦ୍ରେ ସାଧନ ।
ଆସୁ, ଧୂମ, ଗଞ୍ଜା, ବ୍ରଜବାସୀ ନିଷେଧନ । ୮ ।
କରପତ୍ର ଯୋଡ଼ିଣ ବାଳକ ଦାସ କହୁ ।
କି ନିମନ୍ତେ ନିଷେଧ ଯେ ଏତେ ଦ୍ରବ୍ୟ ହୋଇ ।
କହିବା ପରମ ଗୁରୁ ଫେଡ଼ିବା ସଂଶୟ ।
ଶ୍ରୀରାମ ଶ୍ରୀଗୁରୁଦେବ ଆମ୍ଭେ ତାଙ୍କ ପୁଅ । ୯ ।
ଯେଉଁଠାରେ ଗୋପାଳ ରୂପଙ୍କୁ ଭୋଗ ବନ୍ଧୁ ।
ସେଠାରେ ମସ୍ର ମାଂସ ସଜାଡ଼ି ଯେ ନୋନ୍ଧୁ ।
ମସ୍ର ମାଂସ ଭୋଗ ଅଟେ ଅସୁରଙ୍କ ପୁଣ ।
କୃଷ୍ଣର ଭୋଗ ଅଟଇ ନିରାମିଷ ଜାଣ । ୧୦ ।
ଉଚ୍ଛିଷ୍ଟ ହୁଅଇ ହସ୍ତ ଅଙ୍ଗ ନିରନ୍ତର ।
ଏଣୁକରି ଧୂମ ଅଟେ ଅସୁର ଆହାର ।
ଜଟିକ ଅଟଇ ଶିବ ଆହାର ସେ ପୁଣି ।
ଏଣୁକରି କୃଷ୍ଣ ଜନେ ଗଞ୍ଜା ନାହିଁ ପୁଣି । ୧୧ ।
ଆସୁର ଜନର ଅଟେ ଆସୁ ଯେ ଆହାର ।
ପର ସ୍ତ୍ରୀ ସ୍ପର୍ଶ ପାପରେ ଯେ ଅତି ବଡ଼ ଘୋର ।
ମିଥ୍ୟା ଭାଷୀ ଜନ ଅଟେ କେଉଣ୍ଟୁଡ଼ି ଯେ ବୀଜ ।
ଜନ୍ମ ଅନ୍ତେ ଚଉରାଶୀ କୁମ୍ଭି ପାକେ ସଡ । ୧୨ ।

ମେଣ୍ଟି ନ ପାରଲେ ପାଦେ ପୂଜେଣ୍ଟି ଯେ ମିଛ ।
ଗୀତା ଭାଗବତ ବେଦ ପୁରାଣରେ ପୂଚ୍ଛ ।
ଏ ମଞ୍ଚ ମଣ୍ଡଳେ ପୁଣ ସ୍ଥାନ ବଡ ହୁଏ ।
ଜନ୍ମ ଜାତ ଭୂମିରେ ଯେ ସ୍ଥାନ ବଡ଼ ନୁହେଁ ।୧୩।
ପରମ ଗୁରୁ ବଚନ ହେଉ ହେଲା ମନ ।
ଅତି କ୍ଷୀଣ ଅଟଇ ଯେ ବାଳକ ଜୀବନ ।
ଖେଗ ସିଦ୍ଧି ପରେ ଯେତେଦିନ ଥିବ ଦେହ ।
ଶ୍ରୀଗୁରୁ ବଚନେ ମୋର ଫିଟିଲା ସନ୍ଦେହ ।୧୪।
ଅତ୍ୟନ୍ତ ପଥରେ ଖେଗ ସିଦ୍ଧିର ବଶ୍ୱର ।
ବାଳକ ଦାସ ତୋହର କରୁ ତତପର ।
ଦୀନ ଦୁଃଖୀ ଅତ୍ୟନ୍ତ ଯେ ପଡ଼ିଣ ସଂସାର ।
ଏ ଭବ ସଂସାର ଅଟେ ଅତି ବଡ଼ ଘୋର ।୧୫।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଚତୁର୍ଦ୍ଦଶ ଛାନ୍ଦ ॥

**X**

୧୪—୩ ହେଉହେଲା (କ), ୧୪—୩ ଖେଗସିଦ୍ଧି ଠାରେ

# ପଞ୍ଚଦଶ ଛାନ୍ଦ

ଶୁଣ ହେ ଗୋବିନ୍ଦ ଦାସ କହୁବା ବଚନ ।
ଯାହା ପଚାରିଲ ତୁମ୍ଭେ ଅତି ଏ ଗହନ ।୧।
ନର ଦେହ ବହିଣ ଅଛନ୍ତି ଯେତେ ମହୀ ।
ବୈଷ୍ଣବ ଅଟନ୍ତି ଏହୁ ସଂସାର ଗୋସାଇଁ ।୨।
ବୈଷ୍ଣବ ଗୋସାଇଁ ହେତୁ ଅମନ ଭୁବନ ।
ଅମନେ ଭୁବନେ ବାସ ଗୁରୁଙ୍କର ସ୍ଥାନ ।୩।
ସେ ଗୁରୁଙ୍କୁ ଯେଉଁ ବଇଷ୍ଣବ ଚହ୍ନାବନ୍ତି ।
ସେ ଜନଙ୍କୁ ମାନବ ସହିତେ ନାହିଁ ଅନ୍ତ ।୪।
ସୃଜାତ ଅଷ୍ଟାଦଶ ପାଠକରୁ ସାର ।
ଛତିଶ କୁଳରୁ ଶ୍ରେଷ୍ଠ ବୋଲିଣ ବିଚାର ।୫।
ସକଳ କୁଳ ପାଲଟ ଅଚ୍ୟୁତ ସେ ଗୋପେ ।
ଏ ସନ୍ଧି ବିଧବ ମନେ ଭାଗବତ ଶାସ୍ତ୍ରେ ।୬।
ଅନନ୍ତ ଯେ ବୁଦ୍ଧିମନ୍ତ କରିବ ବିଚାର ।
ତ୍ରିକୋଣ ମଧ୍ୟରେ ଏକ ବସିବ ସେ ଗାର ।୭।
ହର ଯେ ଅନନ୍ତ ବୋଲି ପାଞ୍ଚ ଯେ ଅକ୍ଷର ।
ପଞ୍ଚଆନେ ବସାଇବ ପଞ୍ଚ ପାଖୁଡ଼ାର ।୮।
ତ୍ରିକୋଣ ବର୍ତ୍ତୁଳ ହର ବେନି ଯେ ଅକ୍ଷର ।
ଓଁକାର ବସିବ ପୁଣ ତ୍ରିକୋଣ ଶିଖର ।୯।
ଗାରପାଶେ ବେନିଅକ୍ଷର ନନ୍ତ ବୋଲି ଥୋଇ
ହର ଅଟେ କୃଷ୍ଣ ଯେ ଅନନ୍ତ ଦଳ କହି ।୧୦।

---

୬—୨ ବନ୍ଧବ ମନେ (କ); ୯—୧ ହର ପାଞ୍ଚ (କ)
୧୦—୧ ଅନନ୍ତ ବୋଲି (ଖ) ? ୧୦—୨ କୃଷ୍ଣଦେବ (ଖ)

ନନ୍ତ ଅଟେ ଶିଷ୍ୟସ୍ୱର ହରି କୃଷ୍ଣ ଧ୍ୟାୟେ ।
ଅକାର ରଖିବ ଗୁରୁଧ୍ୟାନ ପୂର୍ଣ୍ଣମୟେ ।୧୧।
ଅକାରକୁ ଅର୍ଦ୍ଧାଙ୍ଗ ମଧ୍ୟରେ ବସାଇବ ।
ନନ୍ତ ବୋଲି ବେନକ୍ଷର ଓଁକାରେ ବସିବ ।୧୨।
ହରି ବୋଲି ବନ୍ଦୁ ମଧ୍ୟେ ବସିବ ପ୍ରମାଣ ।
ଏମନ୍ତ ହୋଇଣ ତତ୍ତ୍ୱ ବଧ୍ୟମାନ ଶୁଣ ।୧୩।
ଅକାର ଯେ ଗୁରୁଅଙ୍ଗ ନନ୍ତ ଶିଷ୍ୟ କହୁ ।
ହରି କୃଷ୍ଣ ବନ୍ଦୁ ମଧ୍ୟେ ତତ୍ତ୍ୱବଧ୍ୟ କହୁ ।୧୪।
ତ୍ରିକୋଣ ଆପିଣ ପଞ୍ଚ ଅକ୍ଷର ବୁଝାଇ ।
ବସନ ଗୋଟିଏ ପୂଜା ରଖିବ ଯେ ତହିଁ ।୧୫।
ଯନ୍ତ୍ର ମନ୍ତ୍ର ତନ୍ତ୍ର ହେରୁ ଶିଷ୍ୟଙ୍କୁ କହୁବ ।
ରାମ ଅଟେ ଅନନ୍ତ ଯେ ହରି କୃଷ୍ଣ ଦେବ ।୧୬।
ଶିଷ୍ୟର ବଚନ ଯେ ଅନନ୍ତ ହରିବାଣୀ
ଗୁରୁଙ୍କ ବଚନ ହରି ଅନନ୍ତ ଯେ ଗୁଣି ।୧୭।
ଏଣୁକରି ଅନନ୍ତ ଯେ ଅର୍ଦ୍ଧାଙ୍ଗରେ ବାସ ।
ଅର୍ଦ୍ଧାଙ୍ଗ ଅଟଇ ମାଇ ଅଗ୍ନିର ପ୍ରକାଶ ।୧୮।
ହରି ଯେ ଅକ୍ଷର ତିନ ଗୁରୁଙ୍କ ପ୍ରମାଣ ।
ନନ୍ତ ବୋଲି ବେନକ୍ଷର ଶିଷ୍ୟରେ ଯେ ପୁଣ । ୧୯ ।
ଆହ୍ଵ ଅନନ୍ତର ମନ୍ତ୍ର ଅଟଇ ଟି ଏହୁ ।
ଏଣୁ କରି ରାମକୃଷ୍ଣ ଗୋଲୋକରେ କହୁ । ୨୦ ।
କେ ବୋଲଇ ରାମ ରାମ କେ କୃଷ୍ଣ ସୁମରି ।
କେ ବୋଲଇ ଅନନ୍ତ ଯେ କେ ବୋଲଇ ହରି । ୨୧ ।

---

୧୧—୧ ଅନନ୍ତ ଅଟେ (ଖ) ୧୧—୨ ପୂର୍ଣ୍ଣମୟେ (ଖ), ୧୨—୨ଅନନ୍ତ ବୋଲି ବେନକ୍ଷର ଓଁକାର (ଖ), ୧୩—୨ ଏମନ୍ତ ବୋଲିଣ (କ), ୨୦—୧-ଅନନ୍ତରଚୂଣ (କ).

ହରି ହେ ଅନନ୍ତବାଣୀ ବ୍ରଜସୁତ ଶୁଣି ।
କାଳଇଁ ଅକ୍ଷର ରସ ଗୋପସୁତ ଶୁଣି । ୧୨ ।
ସୁମରଣ ବ୍ରଜପୋଷ୍ୟ ହରି ହେ ଅନନ୍ତ ।
ଅନନ୍ତ ହେ ହରି ଏଣୁ ଗାଇ ଦେବା ଚିନ୍ତ । ୧୩ ।

ନମୋଽନନ୍ତାୟ ସ୍ତୁତି ହେ ବ୍ରଜସୁତ କରେ ।
ହରେ ସ୍ତୁତି ଅନନ୍ତ ହେ କଲେକି ସୁସ୍ୱରେ । ୧୪ ।
ଅନନ୍ତ ହରି ହେ ଗୋଳ ଶୁଭିବ ଚହଲ ।
ଚମକିଲା କଳିଯୁଗ ପାଦ ଟଳ ଟଳ । ୧୫ ।

ଏ ଘୋର କଳିରେ ପାପ ପ୍ରବଳ ମୋହର ।
ହରି ହେ ଅନନ୍ତ ବୋଲି ଶୁଭିଲା ସୁସ୍ୱର । ୧୬ ।
କଳିଯୁଗ ପାଦତଳେ ପଡ଼ିଲାକ ଶୁଣି ।
ହରିଜନ ସଂସାରେ କି ଜାତ ହେବେ ପୁଣି । ୧୭ ।
ମୋହର ଗୃହିବ ବଳ କର ଆଦି-ନାଥ ।
କଳିଯୁଗ ପଣ କପାଁ ଫେଡ଼ିଲୁ ତୁ ଶତ । ୧୮ ।
ମନ୍ଦ ମନ୍ଦ ହସିଣ ହେ ଶ୍ରୀ ରଙ୍ଗାଧର ।
ପୃଥ୍ୱୀ ହେ ଶୁଦ୍ଧାର କଲ ଦେବ ସର୍ବଠାରେ । ୧୯ ।
ହରିଜନ ଜନମ ସଂସାରେ କିଛି କର ।
କର୍ମ ନଷ୍ଟ ଦେଖିଣ ହେ କଳି ପାଛୁ ଡ଼ର । ୩୦ ।
ସଂସାରେ ହୋଇବେ ଜାତ ଭଗତ ମୋହର ।
କର୍ମ ନଷ୍ଟ ବାଧି ଭକ୍ତ କରିବେ ବିସ୍ତର । ୩୧ ।

ଥୋକେ ଲୋକ ପାପିଷ୍ଠ ହେ ଖାଗରେ ରହିବେ ।
ଥୋକେ ଲୋକ ପୃଥ୍ୱୀଦେବୀ ହିତରେ ହେ ଥିବେ । ୩୨ ।
ହରିଜନ ସଂସାରେ ହୋଇବ ଯନ୍ଦ ଜାତ ।
ତାଙ୍କ ଆଗେ ମୋହର କି ହୋଏ ପ୍ରଭୁ ମତ । ୩୩ ।
ବ୍ରହ୍ମାଣ୍ଡନାଥ ହେ ପୁଣ ମୃଦୁ ହସି କହି ।
ପଣ ହେ ଆଶ୍ରୁଷି ଜନ ତୋର ସାଗେ ରହି । ୩୪ ।

ସତ ସତ ସ୍ନାନ ସନ୍ଧ୍ୟା ଧ୍ୟାନ ସେ ଭଜନ ।
ଶ୍ରୀମୂର୍ତ୍ତି ଶ୍ରୀଗୁରୁ ସେବା ଶ୍ରୀଗୀତା ପଠନ । ୩୫ ।
ସେ ଜନ ଠାବରେ ତୋର ନାହିଁ ଅଧିକାର ।
ଅକର୍ମ୍ମ ଜନର ରଜା କଳିଯୁଗ ତୋର । ୩୬ ।

ପୁଣ ସ୍ତୁତି କଲେ ସେ କଳିଯୁଗ କହୁ ।
ସତ୍ୟ କହ ଏ କଥା ତ ଅଛଇ ଗୋସାଇଁ । ୩୭ ।
କଳିଯୁଗେ ଏହୁ ନୀତି କଲେ ସର୍ବଜନ ।
କଳିଯୁଗ ଅଛଇ ଯେ ପାପର ବିଧାନ । ୩୮ ।

ଅତଏବ ହୋଇଲେଟି ପୃଥିବୀ ହଜିବ ।
ପୃଥିବୀ ହଜିଲେ ତୋର ଯୋଗ ଭୋଗ ଯିବ । ୩୯ ।
ତୁମ୍ଭେ ଭୋଗ କରି କହୁ ପୃଥ୍ୱୀଦେବୀ ଥାଉ ।
ଆମ୍ଭ ନରଦେହ ଦେଲେ ପୃଥ୍ୱୀ ସୁଖ ପାଉ । ୪୦ ।

ଯେତେ ଜନ ସୁକର୍ମ୍ମ କରିବେ ଏ ମତର ।
ଛୀନ ହୀନ ଥିବେ ସେହୁ ସଂସାର ସାଗର । ୪୧ ।
କହୁଦିନ ବୃତ୍ତିଥିବେ ମୋର ପଣ କାଳେ ।
ତାଙ୍କ ବଳ ହୋଇବ ଯେ ସତ୍ୟ କଳିବେଳେ । ୪୨ ।

ମିଥ୍ୟା ପରଦାର ପରହିଂସକ ଯେତେକ ।
ଗଜ ତୁରଙ୍ଗ ଯେ ହସ୍ତୀ ଚଢ଼େ ଯେତେ ଲୋକ । ୪୩ ।
ପଦାତି ଚଢ଼ିଣ ଆଶା କରନ୍ତି ଯେ ନର ।
ଏତେ ଜନ ଅଛନ୍ତିଟି ମୋହର ଭିତର । ୪୪ ।

ମଦ୍ୟମାଂସ ଆପୁ ଧୂମ ଗଞ୍ଜା ଅଗ୍ନିହ୍ୱାନ ।
କୁକ୍କୁଡ଼ା ମଦର ମାଂସ ଶୂକର ଭୋଜନ । ୪୫ ।
ଏମାନ ଅଛଇ ମୋର ଆଧାରର ପ୍ରୀତି ।
କଦର୍ଥି କରନ୍ତି ତୋର ଜନ ଏହା କହି । ୪୬ ।

ସନ୍ଧ୍ୟା ଯାଏ କରେ ବୃଷ ଗୋପଥ ହରଣ ।
ଅମାବାସ୍ୟା ସଂକ୍ରାନ୍ତି ରନ୍ଧ କରେ ପୁଣ । ୪୭ ।

ରବି ଶନି ମଙ୍ଗଳ ପାହାନ୍ତି କରେ ରତି ।
ତୋହର ଭକତ ଏହା ନିବର୍ତ୍ତି କରନ୍ତି । ୪୮ ।

ପ୍ରାତସ୍ନାନ ଶୀଘ୍ରେ ଦୀପ ଉଜ୍ଜ୍ୱଳ ବସନ ।
ଅପାଳିଷ୍ଟ ହାଣ୍ଡି ଉଆ ଅନ୍ନ ଯେ ଭୋଜନ । ୪୯ ।

ଏମାନ ଅଟଇ ମୋର ଅପ୍ରୀତି ଗୋସାଇଁ ।
ତୋହର ଭଗତ ଏହା ଭିଆଇବେ ମହୀ । ୫୦ ।

ଉଚ୍ଛୁନା ଆଉ ଭୋଜନ ମହୁଲ ବସନ ।
ସନ୍ଧ୍ୟା ସାରି ଦୀପ ଦବା ଅଙ୍କରେ ସ୍ନାହାନ । ୫୧ ।

ଏ ଅଟଇ ମୋର ହିତ କଳିଯୁଗ ଜନ ।
ମୋହର ତୋ ଭଗତର ନୋହିବ ତ ପ୍ରୀତି । ୫୨ ।

ମୋର ଭକ୍ତ ପରେ ତୋ'ର ନାହିଁ ରାଜପଣ ।
ମୋର ନାମ ଶୁଣି ଭକ୍ତେ ସୁଖୀ ହେବେ ପୁଣ । ୫୩ ।

ରଖିଥିବ ଗୁପତରେ କେହି ନ ଜାଣିମ ।
ସତ୍ୟ କଳିଠାରେ ସବୁ ହୋଇବ ଉତ୍ତମ । ୫୪ ।

ମୋର ଭକ୍ତ ଜତ ହେବ ଦେଖିବୁ ରୁ ପୁଣି ।
ଶ୍ରୀମୁଖ ବଚନ କଳିଯୁଗ ଅଛୁ ଶୁଣି । ୫୫ ।

ଏଣୁ ରାମକୃଷ୍ଣ ଆଜ୍ଞା ହୃଦରେ ଶୁଣିଣ ।
ଜାତ ହେଲୁ ଓଡ୍ରରାଷ୍ଟ୍ରେ ଶୂଦ୍ରକୁଳେ ପୁଣ । ୫୬ ।

ତୁମ୍ଭେ ଗୋପକୁଳେ ଜାତ ହୋଇଲ ଗୋବିନ୍ଦ ।
ହରି ଯେ ଅନନ୍ତ ଗୁଣ କଳି ଚାଉ ଧନ୍ଦ । ୫୭ ।

ହରି ଯେ ଅନନ୍ତ ତୁମ୍ଭେ ଆମ୍ଭର ଚେତନ ।
କଳି ପାପ ଛେଦିବାକୁ ଏ ନାମ କୀର୍ତ୍ତନ । ୫୮ ।

---

୫୧—୨ 'ସାଣ୍ଢବାଢବ (କ) ?'

ଅନନ୍ତ ହୃଦେ ଯେ କଥା ଅଛ ଏ ଗୁପତ ।
ଚଉଦ ଭୁବନ ଲୋକ ଅନନ୍ତ ଗର୍ଭେତ । ୬୯ ।

ଅନନ୍ତ ଗୋପାଳ ଜାତ ବ୍ରହ୍ମାଣ୍ଡ ଧାରଣ ।
ରାମ କୃଷ୍ଣ ପାଦେ ଦୀନ ଅଚ୍ୟୁତ ଶରଣ । ୭୦ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ପଞ୍ଚଦଶ ଛନ୍ଦ ॥



# ଷୋଡ଼ଶ ଛାନ୍ଦ

ମୁକୁନ୍ଦ ଦାସର ମନ ଫେଡ଼ିବା ସଂଶୟେ ।
ଅଣାକ୍ଷର ବୋଲି କରି ମନ୍ତ୍ର ପୁଣ କହେ । ୧ ।
କେମନ୍ତେ ପଢ଼ିବା ମନ୍ତ୍ର ସେ ତ ବଡ଼ ଧନ୍ଦ ।
ଏକ ଯେ ଅକ୍ଷର ମନ୍ତ୍ର କେମନ୍ତେଣ ବନ୍ଧ । ୨ ।
ଏକ ଯେ ଅକ୍ଷର ଚିହ୍ନ ପଞ୍ଚ ଯେ କରିବ ।
ପଢ଼ିବ ମନ୍ତ୍ର ଯେ ପୁଣ ଉତ୍ତମ ହୋଇବ । ୩ ।
ମଣ୍ଡଳ ଗୋଟିଏ ବେଢ଼ାଇବ ଅକ୍ଷରରେ ।
ପଞ୍ଚମାତ୍ରା ବସାଇବ ଚିହ୍ନ ଯେ ପାଶରେ । ୪ ।
ଅନାହତ ଯେ ଆଦ୍ୟମୂଳ ସପ୍ତକ୍ଷର କରି ।
ସ୍ୱର ବୋଲି ବେନକ୍ଷର ନବ ଏ ବସ୍ୱର । ୫ ।
ସ୍ୱରଂ ବୋଲି ବେନକ୍ଷର ପୁଣ ବସାଇବ ।
ସ୍ୱର ଦୁଇ ମିଶାଇବ ଚେର ଯେ ହୋଇବ । ୬ ।
ସ୍ୱରେ ଯେ ଅକ୍ଷର ଦୁଇ ମିଶିଲେ ପନ୍ଦର ।
ମଣ୍ଡଳ ଅଟଇ ଯେତୁ ଓଁକାର ଅକ୍ଷର । ୭ ।
ଏମନ୍ତେଟି ଏକାକ୍ଷର ଷୋଳକ୍ଷର ହୋଏ ।
ମନ୍ତ୍ର କରି ପଢ଼ିଲେ ଯେ ଶିଷ୍ୟ ବୋଧ ପାଏ । ୮ ।
ଏ ମନ୍ତ୍ରକୁ ଓଁକାର ଉପରେ ବସାଇବ ।
ସକଳ ମନ୍ତ୍ରଙ୍କ ରାଜା ଏ ଅଟଇ ବେଦ ।୯।

---

୨—୨ କେମନ୍ତେଣ ବନ୍ଧ [କ]; ୬—୧ ସ୍ୱରଂ ବୋଲି [ଖ]; ୬—୨ ସ୍ୱର ଦୁଇ ମିଶାଇଣ ଧରିବ [ଗ] ୭—୨ ଅଟଇ ସେ ଓଁକାର [କ]; ୮—୧ ଷୋଳକ୍ଷର ହୋଇ । ଏମନ୍ତ କରି ପଢ଼ିଲେ ବୋଧ ପାଇ [କ];
୯—୧ ଓଁକାର ଉପରେ (ଚ)

ଏ ମନ୍ତ୍ର ଯନ୍ତ୍ରକୁ ଦେଖ ଭେଟିଲେ ଗୋଟିଏ ।
ଏ ମନ୍ତ୍ର ସାଧି ପାରିଲେ ଭଗତ ହୁଅନ୍ତେ ।୧୦।
ଏ ମନ୍ତ୍ର ଜପିବ ମନ ଥିର ଯନ୍ତ୍ର ଥିବ ।
ଚଞ୍ଚଳ ଚିତ୍ତ ହୋଇଲେ ପଶି ନ ପାରିବ ।୧୧।
ପବନ ସଙ୍ଗତେ ପଶି ପାରିବୁ ତୁ ପୁଣ ।
ତେବେ ସିନା ପାଇବ ହେ ଏକାକ୍ଷର ଗୁଣ ।୧୨।
ଅକାର ଶବଦ ଯେ ଅଟଇ ପୁଣ ମୂଳ ।
ହୁଙ୍କାର ଶବଦ ତହିଁ ଅଟଇ ଯେ ମେଳ ।୧୩।
ଓଁକାର ଶବଦ ପୁଣ ତହୁଁ ଯେ ଷରିଲା ।
ଢଳରୂପ ଓଁକାରରୁ ଜନମ ହୋଇଲା ।୧୪।
ଢଳରୂପୁଁ ପଞ୍ଚାଶ ଯେ ଅକ୍ଷର ବାହାର ।
ଏମନ୍ତ ହୋଇଣ ଅଣ ଅକ୍ଷର ବିସ୍ତର ।୧୫।
ଏ ମନ୍ତ୍ର ଅଟଇ ଗୁପତ ଶିଷ୍ୟଙ୍କୁ କହିବ ।
ବିଦ୍ୟା ଶୀଳ ପଣ୍ଡିତ ଯେ ହୃଦ ପୂର୍ଣ୍ଣ ହେବ ।୧୬।
ମନଭେଦୀ ଥିର ଶାନ୍ତ ଅନୁଭବ ଥିବ ।
ଏମନ୍ତ ପାତ୍ର ଦେଖିଲେ ଅଣାକ୍ଷର ଦେବ ।୧୭।
ବନସ୍ତ ଭିତରେ ନେଇ ଧାନକୁ ବୁଣିଲେ ।
ପଡ଼ିଆ ବାଲିରେ ବୀଜ ନ ଉଠଇ ଭଲେ ।୧୮।
ଅପଣ୍ୟ ମୂଢ଼ ଘଟରେ ଏ ମନ୍ତ୍ର କହିଲେ ।
ପୁତ୍ର ନାତି ଦରିଦ୍ର ହୁଅନ୍ତି ତାର କୁଳେ ।୧୯।
ଗୁପତ ଗୁପତ ଏହୁ ଅଟେ ଏ ଗୁପତ ।
ଯନ୍ତ୍ର ମଧ୍ୟେ ସାର ଅଟେ ଜାଲନ୍ଧ୍ରୀ ଯନ୍ତ୍ରତ ।୨୦।
ତନ୍ତ୍ର ମଧ୍ୟେ ସାର ଅଟେ ମାନବେ ଯେ ପୁଣ ।
ପାଠ ମଧ୍ୟେ ସାର ଅଟେ ନବ ବ୍ୟାକରଣ ।୨୧।

---

୧୦—୧ ଏମନ୍ତ ମନ୍ତ୍ରକୁ ଦେଖ (ଗ) ୧୪—୧ ଓଁକାର (ଖ);
୧୪—୨ ଓଁକାରରୁ (ଜ)

ଶାସ୍ତ୍ର ମଧ୍ୟେ ଗୀତା ସାର ବେଦରେ ଓଁକାର ।
ପକ୍ଷୀ ମଧ୍ୟେ ଗୁରୁ ସାର ପୁରାଣ ବସ୍ତୁର ।୧୨।
ଭୋଜନକୁ ମାତା ସାର ସ୍ନେହେ ମିଷ୍ଟା ବଢ଼ି ।
ଭୋଜନକୁ ସାର ମହା-ପରସାଦ ଦୃଢ଼ ।୧୩।
ଏମନ୍ତ ଶିଷ୍ୟ ଦେଖିଲେ ସନ୍ତକୁ ଆପଦ ।
ବସ୍ତୁ ଯେ ଗୋଟିଏ ପାଶେ ବୋଢ଼ାଇଣ ଦେବ ।୧୪।
ବିବିଧ ସ୍ୱାଦୁ ଫଳ ଜଣବ ଯେ ଭୋଗ ।
ମଣୋହ୍ମ ବଧ କରିବ ଜାଲନ୍ଧର ଆଗ ।୧୫।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଚଉଦପୁର ସ୍ୱାମୀ ।
ଆବର ନକାମ ଙ୍କୀ ପତଙ୍ଗାଦ୍ଭ ମିଶା ।୧୬।
ଯାହାକୁ ନାକଲେ ସେହୁ ହରାଇବ ପୁଣ ।
ଏତ ଶ୍ଳୋକେ କହିଲୁ ମୁକୁନ୍ଦ ତୋତେ ଜାଣ ।୧୭।
ଶ୍ରୀ ବୃନ୍ଦାବନରେ ବୃନ୍ଦାବତୀ କୁଞ୍ଜଦ୍ୱାରେ ।
ମୁକୁନ୍ଦ ଦାସ ଗୁରୁର ସେବା ତତପରେ ।୧୮।
ତେଣୁକର ଶୁଣିଲେ ଦେ ଅଣ ଅକ୍ଷର ।
ଏମନ୍ତେ ଶରଣ ଦାନ ଅନୁଷ୍ଠ କଙ୍କର ।୧୯।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଷୋଡ଼ଶ ଗ୍ରନ୍ଥ ।

—:o:—

୧୨—୧ଓଁକାର (କ) ୧୩—୧ ମହାପରସାଦ ବଢ଼ (ଖ)—ଡାକଲେ
୧୭—୧ ସ୍ନେହେ (କ)

# ସପ୍ତଦଶ ଛାନ୍ଦ

ଶୁଣ ତୁମ୍ଭେ ଅନନ୍ତ ହେ କୃଷ୍ଣ ମନ୍ତ୍ର କଥା ।
ଅଠ ଏ ଗୁପତ କୃଷ୍ଣ ମନ୍ତ୍ରର ବାରତା । ୧ ।
ଏ ମନ୍ତ୍ରକୁ ଯନ୍ତ୍ରବଧି କହୁଦେବା ଶୁଣ ।
ହେତୁକରି ସୁମରିଲେ ମନ୍ତ୍ର ଶାସ୍ତ୍ରେ ପୂର୍ଣ୍ଣ । ୨ ।
ଛତ୍ରକ୍ଷର କରିବ ସେ ଜୀବକୁ ଧରିଲେ ।
ଯନ୍ତ୍ରରେ ବସିବ ଅଷ୍ଟ ଅକ୍ଷର ତ କଲେ । ୩ ।
କଲଉଁ ବୀଜକୁ ଦ୍ୱିଜ କଲେ ଆଠ ହୋଇ ।
ନମ ମିଶିଲେ ଟି ଯନ୍ତ୍ରେ ସପ୍ତ ସ୍ୱରଗ ହୋଇ । ୪ ।
ଅଷ୍ଟ କୋଣ ଧରିଲେ ସେ ଯନ୍ତ୍ରବଧି ତୁଲ ।
ଏମନ୍ତ୍ର ହୋଇଣ କୃଷ୍ଣ ମନ୍ତ୍ରେ ଯନ୍ତ୍ରେ ଭଲ । ୫ ।
ସେ ଯନ୍ତ୍ରକୁ ବସ୍ତ୍ର ଯେ ଗୋଟିଏ ପିନ୍ଧାଇବ ।
ତେବେ ସେ ଶିଷ୍ୟଙ୍କୁ ମନ୍ତ୍ର ପରାପତ ହେବ । ୬ ।
ମନ୍ତ୍ରକୁ ପୂଜା ନ କରି ଶିଷ୍ୟଙ୍କୁ କହିଲେ ।
ଗୋହତ୍ୟା ପାତକ ଦୋଷ ଲଗଇ ସେ ଭଲେ । ୭ ।
କୃଷ୍ଣନାମ କୃଷ୍ଣ ସ୍ୱର ଶୁଣ ହେ ଅନନ୍ତ ।
ଦାସର ଭରଣ ହେରୁ ଦୃଢ଼ କରି ଚିତ୍ତ । ୮ ।
କ୍ଳଉଁ ଅକ୍ଷର ବିନ୍ଦୁ ମଧ୍ୟରୁ ବାହାର ।
କୃଷ୍ଣାସ୍ତ୍ର ବୋଲିଣ ମନ୍ତ୍ର ଓଁକାର ବାହାର । ୯ ।
ନମ ଦୁଇ ବସିଲେଟି ଅଷ୍ଟାଙ୍ଗରେ ସରି ।
ଶାହାସ୍ରେ ରଖିଲୁ ମନ୍ତ୍ର ଗୁପତ ଯେ କରି । ୧୦ ।

---

୧—୨-ମନ୍ତ୍ରର ବ୍ୟବସ୍ଥା (ଖ)  ୨—୨-ସ୍ମରିଲେ (କ)
୧୦—୧ ଅଷ୍ଟାଙ୍ଗରେ ସର (ଖ);

ଯନ୍ତ୍ର ତନ୍ତ୍ର ବିଧିକଥା ଅଛି ଯେ ଗହନ ।
କହୁବା ଯେ ଦୃଷ୍ଟାନ୍ତର ମନେ ତୁମ୍ଭେ ଘେନ । ୧୧ ।
ଗୃହକାମୀ ଜନଙ୍କର ଗୃହଧନ ଯେତେ ।
ଯେତେଠାରେ ଯେତେ ଧନ ଜାଣଇ ତା ଚିତ୍ତେ । ୧୨ ।
ଦବା ନଣ୍ଡି ଦୂରଠାରେ ଲେଉଡ଼ିଲେ ତା ପାଏ ।
ଅଳଗ ଜନ ଖୋଜିଲେ ବଡ଼ ଧନ୍ଦ ହୋଏ । ୧୩ ।
ଏଣୁକରି ଗୁରୁ ଅଟେ ଆପଣାର ଘର ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଧନ ଏଣୁ ଦୃଷ୍ଟାନ୍ତର । ୧୪ ।
ଏଣୁକରି ବାର ଯେ ବରଷ ଗୁରୁ ସେବା
ସେବା କର୍ମ ଦୁଇବିଧି ଯି ବିଧି ଯେ ଦେବା । ୧୫ ।
ଅନ୍ନ ବସ୍ତ୍ର ଦେଇ ଗୁରୁ ପୂଜି ପରୁଶବ ।
ଏକ ବିଧି ଏମନ୍ତ ଯେ ଶିଷ୍ୟର ଦୁର୍ଲ୍ଲଭ । ୧୬ ।
ଅନ୍ନ ବସ୍ତ୍ର ଯେଉଁ ଶିଷ୍ୟ ଦେଇଣ ଯେ ପାଶ ।
ଦେବାର ଭଗତ ଏହୁ ଶୁଣ ହେ ବନ୍ଧୁଶ । ୧୭ ।
ଏ ବିଧି କଲେଣ ଶିଷ୍ୟ ଲଭଇ କାରଣ ।
ଏ କଥା ଅଛି ଦୁର୍ଲ୍ଲଭ ଗୁରୁଙ୍କ ଚରଣ । ୧୮ ।
ନୋହିଲେ ଏକ ଭଗତି ସେବା ଯେ କରିବ ।
ଝୁଲ କନ୍ଥା ଦନ୍ତ-ଧାପନା ଘଟୀ ଧରିବ । ୧୯ ।
ଚରଣ ଧୁଇବ କରି ଶ୍ରୀପଦ ପଦ୍ମର ।
ସେବା ବିଧି ଆଦୋରଲେ ମନ୍ତ୍ର ସିଦ୍ଧି କର । ୨୦ ।
ନୋହିଲେ ସେ ଏକ କର୍ମ କରିବ ସେ ପୁଣ ।
ଗୁରୁ ଆଳେ ଲେଖି ହୋଇ ରହିଥିବ ପୁଣ । ୨୧ ।
ସମସ୍ତ ଯେ ଅପସର ବରଷର ଦିନ ।
ଅପସରେ କରିବ ଯେ ଗୁରୁଙ୍କ ଦର୍ଶନ । ୨୨ ।

---

୧୭—୨ ବସ୍ତ୍ରଗଲେ (ଚ);

ନର୍ମ କିଛୁ କରିବ ଯେ କିଛୁ ଧନ ଦେଇ ।
ସେବା ନର୍ମ ଦେବା ଏଣୁ ଜନ ବଧି କହୁ । ୧୩ ।
ନିର୍ବଧି କରିଣ ଗୁରୁ ସେବା ଯେ କରିବ ।
ଗୁରୁ ମନ୍ତ୍ର ତନ୍ତ୍ର ତେବେ ପରାପତ ହେବ । ୧୪ ।
ଅଗ୍ନି ତାର ପ୍ରାପ୍ତେ ମନ ହୋଇଲେ ସେ ପୂର୍ଣ୍ଣ ।
ଅଗ୍ନି ସେ ଉତ୍ସବ ହୋଏ ବରଷକେ ଶୁଣ । ୧୫ ।
କପଟ ଯୁବତୀ ଯେସନେ ସ୍ୱାମୀ ଠାରେ ଚଣ୍ଡ ।
ତେମନ୍ତ ପରାପ୍ତେ ହେଲେ ମନ୍ତ୍ର ଅପ୍ରାପତ । ୧୬ ।
ଅର୍ଥୀ ଯୋଗୀ ପ୍ରଣାମେ କି ସନ୍ତୋଷେ ସେ ହୋଇ ।
ଏମନ୍ତ ପରାପ୍ତେ ହେଲେ ଭକ୍ତ ହୃଦେ ନୋହି । ୧୭ ।
ଅତି ଏ ଗୁପତ ଏହା କହିଲୁ ତୁମ୍ଭରେ ।
ରାମଚନ୍ଦ୍ର ସୁଦସ୍ୟାରେ ପରାପତ ତୋରେ । ୧୮ ।
ମଧୁମତୀ କୁଞ୍ଜଦ୍ୱାରେ ସେବା ଯେ ତୁମ୍ଭର ।
ତେଣୁ କରି କୃଷ୍ଣମନ୍ତ୍ର ହୃଦରେ ସୁମର । ୧୯ ।
ଧ୍ୟାନ ସେ ଅତ୍ୟନ୍ତ ଭୂତ୍ୟ ପରକ୍ଷତ୍ୟ ଦାସ ।
ପରମ ଗୁପତ ମନ୍ତ୍ର ଯନ୍ତ୍ର ବଡ଼ ରସ । ୩୦ ।

ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ସପ୍ତଦଶ ଛାନ୍ଦ ।



---

୧୭—୧ ଅର୍ଥୀ ଯୋଗୀ ପ୍ରଣତେ (କ,ଖ) କଷ ସେ ତୋଷ ହୋଇ (ଗ)

## ଅଷ୍ଟାଦଶ ଛାନ୍ଦ

ପୂଛନ୍ତି ନନ୍ଦନା ମନ୍ତ୍ର ରାଧା ଠାକୁରାଣୀ ।
ଶୁଣନ୍ତେ ଆନନ୍ଦ ଦାସ ହୃଦସ୍ଥରେ ଗୁଣି । ୧ ।
ରଖିଚ ହୃଦସ୍ଥ ସ୍ଥାନେ ଗୁପତ ଏ ମନ୍ତ୍ର ।
ଅତ ଦୃଢ଼ ଅନ୍ତ ଗୂଢ଼ ନ କହ ଉକତ । ୨ ।
ଘୃଣ ଘୃଣ ଧଇଲେ ଅଠରେ ହେବ ସଣ ।
ଅଷ୍ଟାକ୍ଷର ବସାଇବ ମନ୍ତ୍ରକୁ ସୁମଣ । ୩ ।
ଶ୍ରୀଯୁଂ ବୋଲ ବେନକ୍ଷଣ ବସାଇବ ପୂର୍ଣ୍ଣ ।
ରାଧିକାସ୍ବୈ ଷ୍ଟକ୍ଷର କରିବ ନର୍ମାଣ । ୪ ।
ନାମ ଦୁଇ ମିଶିଲେ ତ ଯନ୍ତ୍ର ହେବ ତୂଲ ।
ସେହ୍ନ ଯନ୍ତ୍ର ପାଟ ବସ୍ତ୍ର ଫୁଲ ଏକ ଭୂଲ । ୫ ।
ମୂଳ ଦେଲ ଶିଷ୍ୟଙ୍କୁ ଯେ କହିବ ଯତନେ ।
ଅନ୍ୟ ଜନ୍ୟ ଥିଲେ ଶିଷ୍ୟ ଜପଇ ମନ୍ତ୍ରନେ । ୬ ।
ଶୀଲଭି ଓଁକାର ବସେ ରାଧିକାସ୍ବୈ ଅର୍ଚ୍ଚେ ।
ନାମ ସେ ଓଁକାର ଦେଲେ ଶିଷ୍ୟ ହୋଏ ବୋଧ । ୭ ।
ଯନ୍ତ୍ର ତନ୍ତ୍ର ମନ୍ତ୍ର ହୃଦେ ଗୁଣିଥିବ କଥ ।
ତେବେ ସିନା ପାଇବ ହେ ରାଧା-କୃଷ୍ଣ-ଭକ୍ତ । ୮ ।
ପ୍ରଭୁଙ୍କ ଉତ୍ତର ନାହିଁ ସଂସାରେ ବୋଲନ୍ତି ।
ସ୍ୱର୍ଗକୁ ଜଣାଣି ନାହିଁ ଦୁଷ୍ଟାନାର ଦ୍ୟନ୍ତି । ୯ ।
ସ୍ୱର୍ଗକୁ ଜଣାଣି ଅଟେ ଗୋବିନ୍ଦର ନାମ ।
ସତ ସେ ବଚନ ପ୍ରଭୁ ଉତ୍ତର ଜାଣିମ । ୧୦ ।
ଏଣୁକରି ସର୍ବକାଳ ମୁଖରେ କହିବ ।
ଶ୍ରୀକୃଷ୍ଣ ଶ୍ରୀରାଧା ମନ୍ତ୍ର ମୁଖରେ ଜପିବ । ୧୧ ।

---

୭—୧-ଶୀରଭି (ଖ); ଉକାର (କ);

ଇନ୍ଦ୍ରେ ଧଣବ ଯେତ ଉଚ୍ଚ ପର୍ବତ ।
ରାଧାକୃଷ୍ଣ ମନ୍ତ୍ର ତେବେ ହୃଦୟରେ ଚିନ୍ତ । ୧୨ ।
ଯାର କଳ୍ପନାରୁ ଜାତ ଚଉଦ ବ୍ରହ୍ମାଣ୍ଡ ।
ଆକାଶ ତେଜ ନ ଥିଲ ବାୟୁ ପୃଥ୍ୱୀ ଖଣ୍ଡ । ୧୩ ।
ରାଧାକୃଷ୍ଣ ଇଚ୍ଛିନ୍ତି ଯେ ଚିନ୍ତାମଣି ଆଦେ ।
ଶଏ ଦୀର୍ଘ ଶଏ ଯେ ଯୋଜନର ବିଧାନେ । ୧୪ ।
ସୁବର୍ଣ୍ଣ ହୀର ମାଣିକ୍ୟ ମାରଗ ମର୍କତ ।
ବୈଦୂର୍ଯ୍ୟ ପ୍ରବାଳ ସେ ଯେ ମୁକୁତା ଯଞ୍ଜିତ । ୧୫ ।
ଦୁଇଶ ଯୋଜନର ଯେ ଏମନ୍ତ ଭିଆଣ ।
ଚଉଦ ଭୁବନ ସାର ଚିନ୍ତାମଣି ଆଦ । ୧୬ ।
ଚିନ୍ତାମଣିଆନ୍ତୁ ଷୋଳ ବଇକୁଣ୍ଠ ହୋଏ ।
ପଞ୍ଚଭୂତ ସ୍ୱରୂପ ଯେ ମୂର୍ତ୍ତିବନ୍ତ କାୟେ । ୧୭ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ହୋଇଲ ।
ପୃଥ୍ୱୀର ଭିଆଣ ପୁଣ ବ୍ରହ୍ମା ସରଜିଲ । ୧୮ ।
ପୁଣି ସପ୍ତ ପାତାଳ ଯେ ଶିବ ଭିଆଇଲେ ।
ବଇକୁଣ୍ଠ ବିଷ୍ଣୁ ପୁଣ ସ୍ୱର୍ଗରେ ରହିଲେ । ୧୯ ।
ଏଣୁ କରି ସ୍ୱର୍ଗ ମଞ୍ଚ ପାତାଳଟି କହ୍ନ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ପାତାଳ ଧରଇ । ୨୦ ।
ଥାବର ଜଙ୍ଗମ କୀଟ ପତଙ୍ଗ ଏ ସ୍ଥିର ।
ଚଉରାଶି ଯୋନରେ ଯେ ଆତଯାତ ସାର । ୨୧ ।
କୃଷ୍ଣ ରାଧା ମନ୍ତ୍ର ଜପେ ସାଧୁ ଦେହ ହୋଏ ।
ମାୟା ଜଡ଼େ ଭୂଲିଲେ ଯେ ପଶୁ ଜନ୍ମ ପାଏ । ୨୨ ।
ପ୍ରାତଃ ସ୍ନାନ କରି ରାଧାକୃଷ୍ଣ ମନ୍ତ୍ର ଗୁଣ ।
ଦିନ ଧୂପ ପାଞ୍ଚ ଅବକାଶରେ ଶରଣ । ୨୩ ।
ଷଣେ ଦଣ୍ଡେ ନମି ଷ ହୋ ତୁଳସୀ ମାଳରେ ।
ତ୍ରୟେ ଗ୍ରନ୍ଥେ ପର୍ବେ ଜପ ଲକ୍ଷେ ବା ମୁଖରେ । ୨୪ ।

---

୨୪—୨ ଗ୍ରେଓ ଗ୍ରନ୍ଥେ ପର୍ବେ ଜପ (କ) ?

କୃଷ୍ଣ କଥା ନ କହୁଣ ଅନ୍ୟ କଥା କହେ ।
କାକ ମୁଖ ବୋଲି ଜାଣ ସେ ମୁଖ କଷ୍ଟସ୍ୱେ । ୧୫ ।
କୃଷ୍ଣ ଧ୍ୟାନ ନ କରଣ ଅନ୍ୟେ କର ମନ ।
ଜାଣିମା ସେ ଚର୍ମପଟ୍ଟ ଅନ୍ଧର ଲୋଚନ । ୧୬ ।
କୃଷ୍ଣ ଭକ୍ତ ନ ଭୁଞ୍ଜାଇ ଆନକୁ ଭୁଞ୍ଜାଇ ।
ଗୃଧ୍ରକ ପକ୍ଷୀକୁ ଅନ୍ନ ଦେଲା ପ୍ରାୟେ ହୋଇ । ୧୭ ।
କୃଷ୍ଣ ଭକ୍ତ ଭୁଞ୍ଜାଇଣ ଖାଇବ ଯେ ଶେଷ ।
କୃଷ୍ଣ ମନ୍ତ୍ର ସୁମରଣ ଥିବ ଗୃହ ବାସ । ୧୮ ।
ଦାସ ସୁତ ଆବୋରିଲେ ତାର ଜନ୍ମ ହୋଏ ।
କୃଷ୍ଣ ମନ୍ତ୍ର ଜପ ଭକ୍ତପାଦ ରେଣୁ ଧ୍ୟାୟେ । ୧୯ ।
କୃଷ୍ଣନାମ ଅଟେ ସତ ବେଦରେ କଳିତ ।
ମରଣେ ସମୟେ କୃଷ୍ଣମନ୍ତ୍ର ନାମ ତନ୍ତ୍ର । ୨୦ ।
ମାତ୍ସାଧନ ଆବୋରି ଯେତେକ ଥାଇ ପୁଣ ।
ସକଳ ବନ୍ଧନ ଗ୍ରନ୍ଥି ମରଣ କାଳେଣ । ୨୧ ।
ଗୁରୁସେବା କୃଷ୍ଣ-ସେବା ଧନ ଯେତେ ଦେବା ।
ତୀର୍ଥ ବ୍ରତ ମନ୍ତ୍ରଜପ ଏ ପଥେ ଚଳିବା । ୨୨ ।
କୃଷ୍ଣ କୃଷ୍ଣ ସୁମର ହେ ପାପ ହେବ ନାଶ ।
ପାମର ଅଚ୍ୟୁତ ରଙ୍ଗା ଚରଣକୁ ଆସ । ୨୩ ।
କରୁଣା କରବ ନାଥ ଏ ଭବ ସାଗରେ ।
ଶ୍ରୀକୃଷ୍ଣ କରୁଣା କଲେ ଭବ ସିନ୍ଧୁ ତରେ । ୨୪ ।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ଅଷ୍ଟାଦଶ ଖଣ୍ଡ ॥

—:o:—

# ଜନବଂଶ ଛାନ୍ଦ

ମନ୍ତ୍ରରାଜ ବୋଲିକରି ମନ୍ତ୍ରଙ୍କର ରାଜ ।
ହ୍ଲୀଁ ଶ୍ଲୀଁ କ୍ଲୀଁ ପୁଣି ଅଟେ ତିନ ବୀଜ । ୧ ।
ଶୁଣ ଗୋପ ବସ୍ତ୍ରଦାସ ଏମନ୍ତ ଯନ୍ତ୍ରରେ ।
ଗୋପୀଜନ-ବଲ୍ଲଭସ୍ୟ ମନ୍ତ୍ରରେ ସୁମରେ । ୨ ।
ଅଷ୍ଟକୋଣ ମଧ୍ୟରେ ଯେ ତ୍ରିକୋଣ ରଖିବ ।
ତ୍ରିବୀଜକୁ ତ୍ରିକୋଣରେ ନେଇଣ ଥୋଇବ । ୩ ।
ତ୍ରିକୋଣ କନକଷ୍ଟେ ରଖ କ୍ଲୀଁ ଯେ ଅକ୍ଷର ।
ହ୍ଲୀଁ ଶ୍ଲୀଁ ରଖ ପୁଣ ଏ ବେନ ପାଶର । ୪ ।
ଗୋପୀଜନ ସ୍ଥିର ଯେ ରଖିବ ଆଦ୍ୟ ସ୍ଥିର ।
ବଲ୍ଲଭସ୍ୟ ସ୍ଥିର ସ୍ଥାନ୍ତ୍ୟ ସ୍ଥଳରେ ସୁମର । ୫ ।
ଶୁକଲ ପାଟ ବସନ ଏକ ବେଢ଼ାଇଣ ।
ଶିଷ୍ୟ ଯେ କରିବ ତେବେ ମନ୍ତ୍ର ଦରଶନ । ୬ ।
ଗୋପୀ ଦୁଇ ଅକ୍ଷର ଯେ ଶ୍ରୀଁ ବୀଜରେ ରହେ ।
ଜନ ଦୁଇ ଅକ୍ଷର ଯେ ହ୍ଲୀଁ ବୀଜରେ ରହେ । ୭ ।
ବଲ୍ଲ ଦୁଇ ଅକ୍ଷର ଯେ କ୍ଲୀଁରେ ଥୋଇ ।
ତ୍ରିବୀଜେଣ ଛତ୍ରାକ୍ଷର ଛନ୍ଦଣ ଅଛଇ । ୮ ।
କ୍ଲୀଁ ଉକାରେ ଥୋଇ ଶ୍ଲୀଁ ଅର୍ଦ୍ଧରେ ।
ହ୍ଲୀଁ ଔକାରେ ଥୋଇ ମନ୍ତ୍ର ବାନ୍ଧିବରେ । ୯ ।

---

୧—୨ ହ୍ଲୀଁ ଶ୍ଲୀଁ କ୍ଲୀଁ (ଖ); ୨—୧ ଏ ମନ୍ତ୍ର ଜପରେ (କ)
୪—୧ ହ୍ଲୀଁ ଶ୍ରୀଁ (ଗ); ୭—୧ ଶ୍ରୀ ସ୍ୱଂ ବୀଜେ ରହେ (ଖ);
୭—୨ ହ୍ଲୀଁ (ଗ); ୮—୧ କ୍ଲୀଁ ରେ ଥୋଇ (କ)
୯—୧ କ୍ଲୀଁ ଉକାରେ · ଶ୍ଲୀଁ ଅର୍ଦ୍ଧରେ (ଡ); ୯— · ହ୍ଲୀଁ ଔକାରେ (ଡ)···
ଚନ୍ଦ୍ରବିନ୍ଦୁ (ଖ);

ଏଣୁ କରି ଓଁକାରଟି ବେଦର ପ୍ରମାଣ ।
ଗୀତା ଭାଗବତ ଶାସ୍ତ୍ର ଓଁକାରୁ ଢ଼ିଆଣ । ୧୦ ।
ବତୁଷଷ୍ଠି ବର୍ଣ୍ଣ ଶୂଦ୍ର ଘୃଣଳାଦି ନର ।
ଅଷ୍ଟାଦଶ ପାତକ କୃଷ୍ଣ ଅଙ୍ଗରୁ ବାହାର । ୧୧ ।
ଏଣୁକରି କୃଷ୍ଣ କୃଷ୍ଣ ସର୍ବଦା ସ୍ମର ।
କୃଷ୍ଣ ଅଟେ ପିତା ମାତା ରାଧା ରାଧା ସ୍ମର । ୧୨ ।
କୃଷ୍ଣଙ୍କୁ ନ ଭଜି ଅନ୍ୟ ଦେବତାଙ୍କୁ ଭଜେ ।
ସମୁଦ୍ର ମଧ୍ୟରେ ଯେହ୍ନେ ବୋଇତ ଯେ ଭଜେ । ୧୩ ।
ତେସନ ପରସ୍ତେ ନରଦେହ ହୋଏ ନାଶ ।
କୂଳରେ ଲାଗିଲେ କୃଷ୍ଣ କୃଷ୍ଣ ତହ୍ନେ ଘୋଷ । ୧୪ ।
ଗଙ୍ଗାରେ ସ୍ନାହାନ କଲେ କୁପେ ନାହିଁ ଆଶ ।
ନୃପତ ସେବକଲେ ପାଷଣ୍ଠାରେ କାର୍ଯ୍ୟ କସ । ୧୫ ।
ସଂସ୍କୃତ ବିଦ୍ୟା ଥିଲେ ପ୍ରାକୃତ କି ଗଢ଼ ।
ଧାନ ଯେ ତଣ୍ଡୁଳ ଥିଲେ ଦୁର୍ଭିକ୍ଷ କି ବଡ଼ । ୧୬ ।
ନରଜନ୍ମ ଗୋଷ୍ଠାକୁ ଯେ କୃଷ୍ଣନାମ ଗଢ ।
ଗୃହଧର୍ମ କରୁଥିଲେ ପୂଜିବ ଅଢଥି । ୧୭ ।
ଅଢଥି ମୂଜା ନକଲେ ନପାଇ ଏ ଭେଦ ।
ଖୋଜିଲ ଲୋକ ତରଇ ବାଦୀକ ପ୍ରମାଦ । ୧୮ ।
କୃଷ୍ଣନାମ ଖୋଜିଥିବ ଘୁଭୁଙ୍କ ମୁଖରେ ।
ହରିନାମ ପୁଚ୍ଛିବ ଯେ ଅଢଥିଠାବରେ । ୧୯ ।
ପୁଣ ଗୋଷ୍ଠି ମେଳାରେ ଖୋଜିଲେ ପାଇ ଧନ୍ଦ ।
ଖୋଜିଥିବେ ମନମେଳେ କୃଷ୍ଣ ଯେ ଗୋବିନ୍ଦ । ୨୦ ।
ନୋହିଲେଟି ଶାସ୍ତ୍ରପଥେ ଖୋଜ କୃଷ୍ଣ-କଥା ।
ମୂଢ଼ଜନ କହିବକ ପଣ୍ଡିତ ବାରତା । ୨୧ ।

---

୯—୧ ଓଁକାରଟି [ଖ];
୧୦—୨ ଓଁକାରୁ [ଖ],

ସାଧୁଜର ସଙ୍ଗେ ଦରିଦ୍ରକୁ କଲେ ସଣ ।
ଦରିଦ୍ରକୁ ଧନ ଯେ ମାଗିଲେ ଫୁଟି ମଣ । ୨୨ ।
ଖୋଜ ଭେଦ କୋଟିକେ ଗୋଟିଏ ସିନା ସାର ।
ଖୋଜନ୍ତି ଲୋକ ଯେ ପାର ହୁଅଇ ସଂସାର । ୨୩ ।
ଖୋଜ ଭେଦ ଅଙ୍ଗ ନୋହୁ ଶିଷ୍ୟ ଯେବେ କରେ ।
ଗୁରୁ ଶିଷ୍ୟ ବସନ୍ତ ଯେ ପଥର ନାବରେ । ୨୪ ।
ପୃଥ୍ୱୀପର୍ଯ୍ୟଟନ କରେ ବାର ଯେ ବରଷ ।
ମେଲା ଖେଳା ମନ୍ତ୍ର ଜପ ପାପ ହେବ ନାଶ । ୨୫ ।
ପରମ ଗୁପତ ଭକ୍ତ ଗୁରୁଗୀତା ପାଠ ।
ନ ଫେଡ଼ ନ ଫେଡ଼ ଅନେ ଗୁରୁଭକ୍ତ କୋଠ । ୨୬ ।
ଚମ୍ପକଲତା ସଖୀର କୁଞ୍ଜଦ୍ୱାର ସେବା ।
ପୂର୍ବଜନ୍ମେ ଜନ୍ମଫଳେ ଏମନ୍ତକୁ ଦେବା । ୨୭ ।
ଦୀନ ଦୁଃଖୀ ଶୂଦ୍ର ମନ୍ଦ ପାମର ଅତ୍ୟନ୍ତ ।
ପାଷାଣ୍ଡ କହିଲେ ଗ୍ରନ୍ଥ ଦରିଦ୍ର ପ୍ରାପତ । ୨୮ ।

ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଊନବିଂଶ ଛାନ୍ଦ ॥

—※—

# ବଂଶ ଛାନ୍ଦ

ରାମ ଯେ ତାରକ ମନ୍ତ୍ର ଗନ୍ଥ-କଥ୍ୟ ଶୁଣ ।
ଘନ୍ଦାସ ଯାଦବଦାସ ତୁମ୍ଭେ ଶ୍ରେଷ୍ଠ ପୁଣ । ୧ ।

ପଞ୍ଚକୋଡ଼ି ତନକ୍ଷର ଅଟଇ ଯେ ସାର ।
ଓଁକାରକୁ ପାଞ୍ଚଧର ହେବ ଅଷ୍ଟୋତ୍ତର । ୨ ।

ଓଁ ଆତ୍ମାରାମ ପରମାତ୍ମା ରାମ କହ ।
ତତ୍ତ୍ୱ ନିରଞ୍ଜନ ଯେ ତାରକ ରାମ ବ୍ରହ୍ମ । ୩ ।

ଅଦେରାମେ ଅନ ଦ ଯେ ରାମ କୃଷ୍ଣ ଧର ।
ନିରଞ୍ଜନ ତାରକକୁ ହୃଦରେ ସୁମର । ୪ ।

ରାମ କାଶୀକ୍ଷେତ୍ର ବାରାଣସୀସ୍ଥାନ କହ ।
ତତ୍ତ୍ୱ ନିରଞ୍ଜନ ଯେ ତାରକ ରାମ ଧାସ୍ମି । ୫ ।

ନ୍ୟୋଢରାମ ଅନ୍ୟୋନ୍ଦି ଯେ ରାମତତ୍ତ୍ୱ ଧର ।
ନିରଞ୍ଜନ ତାରକ ଯେ ରାମଗଢ କର । ୬ ।

ରାମ ଅଗଢଙ୍କ ଗଢ ରାମତତ୍ତ୍ୱ ସାର ।
ନିରଞ୍ଜନ ତାରକ ଯେ ରାମକୁ ସୁମର । ୭ ।

ତେର ଅଷ୍ଟ ଧଣଣ ଯେ ମନ୍ତ୍ରକୁ ଲେଖିବ ।
ଭୂମି ଯେ ଖଣ୍ଡେ ଏ ପୁଣି ଲିପି କରି ଦେବ । ୮ ।

ସେ ଭୂମିରେ ଚୂର୍ଣ୍ଣ କରି ମୃତ୍ତିକା ରଖିବ ।
ସବୁ ଗୋଟି ଲେଖି ପୂଜାବସ୍ତୁ ବେଢ଼ାଇବ ।୯।

---

୨—୨ ଓଁକାରକୁ ବେଦ ଧର [କ];
୪—୨ ତରେ ଦଣ୍ଡ ଯେ ନ ଚଳ [ଖ]

ତେବେ ସେ ଶିଷ୍ୟର ହେବ ବଡ଼ ମନସାର ।
ସନ୍ଥ ନ ଭେଟଲ ଶିଷ୍ୟ ଅଗାଡ଼ରେ କର ।୧୦।

ଅଗାଡ଼ ମଧ୍ୟରୁ ଯେସନ୍ତେ ବୀଜନୋହେ ଜାତ ।
ଗୋଷ୍ଠି ସନ୍ଥ ଜାଣନ୍ତି ଯେ ବଚନ ଉଦନ୍ତ ।୧୧।

ମୂଢ଼କୁ କହିଲେ ସ୍ୱାଷା ନ ବୁଝଇ ପୁଣି ।
ପଥରକୁ ପାଣି ଯେସନ୍ତେ ନ ପାରଇ ଜଣି ।୧୨।

ପଦ୍ମପତ୍ରେ ପାଣିଯେସନ୍ତେ ନ ମିଶଇ ପୁଣ ।
ମନକୁ ଅବଶ କଲେ ଏସନ ଯେ ଜାଣ ।୧୩।

ପଣ୍ୟଘଟ ଅଟଇ ଯେ କ୍ଷୀରେ ନୀର ମତ ।
କୃଷ୍ଣକଥା ଶୁଣିଲେ ଯେ ଆନନ୍ଦିତ ଚିତ୍ତ ।୧୪।

ଧନ ଅରଜଣ ଯେତ୍ତୁ ଗୁରୁଙ୍କୁ ନ ଦେଲ ।
କୃଷ୍ଣଭକ୍ତ ଦେଖି ଚିତ୍ତ ଦୃଢ଼ ଯେ ନ କଲ ।୧୫।

ଯେଉଁ ଜନ ପଦାର୍ଥଟି କୃଷ୍ଣ ସ୍ନେହ ନାହିଁ ।
ଧିକ ଧିକ ଜୀବନ ତା ମୁଖହିଁ ନ ଗ୍ରହି ।୧୬।

ସେ ଜନର ମୁଖ ଯଦ ପ୍ରସାଦୁ ଗ୍ରହିବ ।
ତନ୍ତେ ନାମ ଜପି କୃଷ୍ଣ ରୂପକୁ ଧ୍ୟାଇବ ।୧୭।

କଳିଯୁଗେ ଦଣ୍ଡାସାର ନାମ ମୁଖେ ଧର ।
ସେରେ ଥିଲେ ମୁଚିବ ଯେ ପରମସ୍ତ କର ।୧୮।

ନ ଥିଲାର ଜନ ପୁଣ କାହୁଁ ଆଣିଦେବ ।
ଥିଲା ଲୋକ ନ ଦେଲେ ତା ଗୃଧିକ ବୋଲାଇ ।୧୯।

ଶ୍ୱାନ କାକ ଜନ୍ମ ହେଲେ ସୁହେରୁ କପାଳ ।
ମାନବ ଦେହକୁ ସାର ଭକ୍ତ ସେବା ବଢ଼ ।୨୦।

---

୧୧—୨ ବଚନ ଦଢ଼ ଅନ୍ତ [କ];

କୋଟିକରେ ଗୋଟିକକୁ ଏ ଗ୍ରନ୍ଥ କହିବ ।
ଧନ ଲୋଭେ ଦେଲେ ଗ୍ରନ୍ଥ ଦରିଦ୍ର ହୋଇବ ।୨୧।

ବାର ଯେ ବରଷ ଗୁରୁ ପାଦରେ ସେବଣ ।
ଧନ ଦାବି ଏକ୍ତିଲ ଯେ ମନରେ ମୋ ପୁଣ ।୨୨।

ସେବା ଲୋଭ ଦେବା ଧନ ଦେଖିଲେ କହିବ ।
ମୁଁ କାରପଣ ବନ୍ଦିଲେ କୃଷ୍ଣ ବ୍ୟାଧି ଦେବ ।୨୩।

ଗୁରୁ ଭଣ୍ଡାରର ଧନ କର୍ଣ୍ଣରେ ଶୁଣିଲି ।
ସମୁଦ୍ର ଜଳରୁ କୁଶ ଅଗ୍ରେ ଜଳ ନେଲି ।୨୪।

ବିନା ଶିଷ୍ୟେ ନ କହିବ ଏ ଗ୍ରନ୍ଥ ବିଚାର ।
ଦାମ୍ଭିକ ନାସ୍ତିକ ଆଗେ ଗୋପ୍ୟ ଗୋପ୍ୟ କର ।୨୫।

ଚନ୍ଦ୍ରଭାଗୀ ନଦୀର ତଟେ ମୋହର ଜନମ ।
ଅନନ୍ତ ଗୋପାଳ ଆଗ୍ରେ ଅଚ୍ୟୁତ ମୋ ନାମ ।୨୬।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ବଂଶ ଛାନ୍ଦ ।।

— X —

# ଏକବିଂଶ ଛାନ୍ଦ

ଚୈତନ୍ୟ ମନ୍ତ୍ର କେତେ ଅକ୍ଷର ଧରିବ ।
ଶ୍ରୀବୀଜକୁ ବେନି କଲେ ଚତୁ ହୋଇବ ।୧।

ଦୁଇ ପତ୍ର ଧରିଲେ ଯେ ମନ୍ତ୍ର ହେବ ସଣ ।
ଚଇତନ୍ୟ ମନ୍ତ୍ରକୁ ଯେ ସର୍ବରେ ସ୍ମରଣ ।୨।

ଶ୍ରୀକୃଷ୍ଣ ଯେ ବୋଲି ମନ୍ତ୍ର ନିନ ଅକ୍ଷରକର ।
ଚୈତନ୍ୟ ଗୌରଙ୍କ ଆଠ ଅକ୍ଷର ଯେ କର ।୩।

ନମ ଦୁଇ ମିଶିଲେ ଯେତେ ଅକ୍ଷର ହୋଇ ।
ମନ୍ତ୍ର ଯନ୍ତ୍ର କଲେ ପୁଣ ଶିଷ୍ୟ ବୋଧ ପାଇ ।୪।

ଶିଷ୍ୟ ବେନିଅକ୍ଷର ରଖ ଅଙ୍କାଙ୍ଗରେ ପୁଣ ।
ନମ ବେନି ଅକ୍ଷରକୁ ଓଁକାରେ ରଖିଣ ।୫।

ଏଗାର ଅକ୍ଷର ପୁଣ ବିନ୍ଦୁରେ ରଖିବ ।
କୃଷ୍ଣ ଚଇତନ୍ୟ ମନ୍ତ୍ର ଏମନ୍ତେ ଯେ ଜବ ।୬।

କଳିଯୁଗରେ କୃଷ୍ଣ ନାମ ଅଟଇ ଯେ ସାର ।
କଳିଯୁଗେ କୃଷ୍ଣଭକ୍ତ ପ୍ରଳୋବଧି କର ।୭।

ତୋର କହୁଚି କଳିଯୁଗେ ବଡ଼ସୁଖ ।
ଭିକ ମାଗି କୃଷ୍ଣ ନାମ ଜପୁଥିବ ମୁଖ ।୮।

---

୨—୧ ବିନ୍ଦୁରେ ଧରିବ (ଖ)

ଦ୍ୱେଷ ନାଶ ମିଥ୍ୟା ଦ୍ୱନ୍ଦ୍ୱ ନ ଧରିବ ଅଙ୍ଗ ।
ତେବେ ସିନା ପାଇବ ହେ କୃଷ୍ଣ ଭକ୍ତ ସଙ୍ଗ ।୯।

ପାମର ଅଚ୍ୟୁତଙ୍କୁ ଯେ ଉଚ୍ଚାରଣ କର ।
କୃଷ୍ଣ-ଭକ୍ତ ପାଦ ଧୋଇ ମସ୍ତକରେ ଧର ।୧୦।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଏକବିଂଶ ଛାନ୍ଦ ।



## ଦ୍ୱାବଂଶ ଛାନ୍ଦ

ଶୁଣ ହେ ପବନ ଦାସ ଗୁପତ ବିସ୍ତର ।
ହରେକୃଷ୍ଣ ମହାମନ୍ତ୍ର ସମ୍ବନ୍ଧ କର । ୧ ।
ଚତୁଷ୍କଗ କରିବ ଯେ ବଢ଼ାଇଣ ଗୁଣ ।
ଅଠ ଷ୍କଗ ଧରିଲେ ଯେ ଷୋଳ ହେବ ସର । ୨ ।
ଷୋଳରେ ବେଢ଼ିବ ଷୋଳ ହୋଇଣ ବତିଶ ।
ଅକ୍ଷର ଗୋଟିଏ ଦଳ ଗୋଟିକରେ ଘୋଷ । ୩ ।
ହରେକୃଷ୍ଣ ହରେକୃଷ୍ଣ ମନ୍ତ୍ରଙ୍କର ସାର ।
କୃଷ୍ଣ କୃଷ୍ଣ ହରେ ହରେ ହୃଦରେ ସୁମର । ୪ ।
ହରେରାମ ହରେରାମ ଜପ ସୁମରିବ ।
ରାମ ରାମ ହରେ ହରେ ନଢ଼ଣା ଅକ୍ଷରେ ଗୁଣିବ । ୫ ।
ସମ୍ବନ୍ଧ ଏମନ୍ତେଣ ଲେଖିବାକୁ ମନ୍ତ୍ରୀ ।
ଶୁକଳ ପାଟ ବସନ ଯନ୍ତ୍ରକୁ ବେଢ଼ାଇ । ୬ ।
ଶିଷ୍ୟ କର୍ଣ୍ଣ ମୂଳରେ ଯେ କହିବ ଶବଦ ।
ତେବେ ସିନା ପାଇବ ଯେ ଶବଦର ଭେଦ । ୭ ।
ହରେ ଯେ ଓଁକାର ଥୋଇ କୃଷ୍ଣ ଯେ ବିନ୍ଦୁରେ ।
ରାମ ଯେ ଅର୍ଦ୍ଧାଙ୍ଗେ ଥୋଇ ଜପ ନାମ ସ୍ୱରେ । ୮ ।
ବତିଶରୁ ତେତିଶ ହୋଇଲେ ବଡ଼ ପାପ ।
ଗୋହତ୍ୟା ଦୋଷ ଲାଗଇ ମନ୍ତ୍ର କଲେ ଜପ । ୯ ।
ଏକତ୍ରିଂଶ ଅକ୍ଷର ହୋଇଲେ ସଦ ପୁଣି ।
ବ୍ରହ୍ମହତ୍ୟା ପାତକ ଯେ ମନ୍ତ୍ର ସଦ ଗୁଣି । ୧୦ ।
ଏଣୁକରି ଯନ୍ତ୍ର କଲେ ହୁଡ଼ଣ ଯେ ନୋହୁ ।
ସମ୍ବନ୍ଧ ନ ଜାଣିଲେ ମୂଢ଼ ବୋଲି କହୁ । ୧୧ ।

ବିନା ମାତ୍ରେ ଘଟ ଗୃହେ ରଖିଣ ସେ ଥିବ ।
ତୃଷିତ ଜନ ଯେସନେ ନିବାରଣ ନୋହିବ । ୧୨ ।
ସବୁ ତତ୍ତ୍ୱ ନ ଭେଦିଲା ଗୁରୁ ସେହି ମତ ।
ପଣ୍ଡିତ ଜନଙ୍କୁ ପୁଚ୍ଛ ବଚନ କେମନ୍ତ । ୧୩ ।
ବିଶାଖା ସଖୀର କୁଞ୍ଜ ଦ୍ୱାରେ ଗୃହ ସେବା ।
ପାଇଲ ଯେ ମନ୍ତ୍ର ଯନ୍ତ୍ର ବିଧି ଅଟେ ସେବା । ୧୪ ।
ବିନା ଶିଷ୍ୟେ ନ କହିବ ଏ ଗ୍ରନ୍ଥକୁ ପୁଣି ।
ଗୁରୁ ନ ସେବିଲା ଜନେ ନ କହିବ ପୁଣି । ୧୫ ।
ଅନ୍ଧ-ମୂର୍ଖ ଷଣ୍ଢେ କି ଅମୃତ-ଆହାର ।
ସ୍ୱୈରଙ୍କୁ ଧର୍ମ ପୁରାଣ ଅଟଇ ସେ ଦୂର । ୧୬ ।
ଅପଣ୍ୟ ହୋଇଲେ ଶିଷ୍ୟ ତେସନ ପରାଧେ ।
ନ ଭେଟିଲ ଗୁରୁ ତାହିଁ ସଙ୍ଗତରେ ଥାଏ । ୧୭ ।
ସାଧୁ ସଙ୍ଗ ଗୁରୁ ସଙ୍ଗ ନିରନ୍ତରେ କର ।
ଲୋପ୍ୟ ହେବା ଯାଏ ଘଟ ଶାସ୍ତ୍ର-ପଥ ସ୍ଥିର । ୧୮ ।
ତେବେ ସେ ପାଇବ କିଛି ଗୁରୁଙ୍କ ଭଣ୍ଡାର ।
ଏ ସଙ୍ଗ ନ କଲେ ବସେ ଦଦସ୍ତ ନାବର । ୧୯ ।
ଦୀନ ଦୁଃଖୀ ଅବ୍ୟକ୍ତ ମୁଁ ଭବରେ ପଡ଼ିଣ ।
ଭରସା କରିଛି ନାବ ସନ୍ତର ଚରଣ । ୨୦ ।
ଏକଙ୍କୁ ଆରେକ ଏଥୁ ସଂସାରେ ଅନ୍ଧନ୍ତା ।
ହରି କଥା ଛାଡ଼ି କୁଟ କଥା କରେ ଚିନ୍ତା । ୨୧ ।
ହରେକୃଷ୍ଣ ହରେକୃଷ୍ଣ ମୁଖରେ ସୁମର ।
ସେବେ ଥିଲେ ମୁଠିଏ ସେ ପର ହସ୍ତ କର । ୨୨ ।
ଧନ ଜନ ପୁଣ ଅଟେ ଗୋବିନ୍ଦ ଭଣ୍ଡାର ।
ନଟର ପରିସ୍ରେ ହଟ ଭଣ୍ଡାନ୍ତ ସଂସାର । ୨୩ ।
ହଟିଆ ନାଗର ହଟ କରୁଛୁ ଛନ୍ଦେଣ ।
ଏକଙ୍କୁ ଦେଖାଇ କରୁ ଦାନ ଧନ ପୁଣ । ୨୪ ।

ଧନପଣ ଜନେ ଖେଳ ହୁଅଇ ଶରୀର ।
କୃଷ୍ଣ ପଥ ଛାଡ଼ି ମାୟାପଥେ ଜର ଜର । ୧୫ ।
ଏ ହେତୁ ଜାଣିଣ ତୁମ୍ଭେ ସଂସାରେ ଯେ ଫେର ।
ନାମ କୀର୍ତ୍ତନ କର ପ୍ରାଣୀ ହେବେ ପାର । ୧୬ ।
ଶୁଣ ହେ ପବନ ଦାସ ପୁଣ ପୁଣ ତୁହ୍ମ ।
ଏଥ ଏ ଗୁପତ ଗ୍ରନ୍ଥ ପାଷାଣ୍ଡେ ନ କହ୍ମ । ୧୭ ।
ଆନକୁ କରିଲେ ପାଠ ଦରିଦ୍ର ହୋଇବ ।
ଧନ ଲୋଭେ ପାଠ ଦେଲେ ପୁଣ୍ୟ ନାଶ ହେବ । ୧୮ ।
ଅଷ୍ଟାଙ୍ଗ ପଞ୍ଚାଙ୍ଗ ବିଧି ଯେଉଁ ଜନ କରେ ।
ଏ ଜନକୁ କହିଲେ ଯେ ଦୋଷ ନାହିଁ ତାରେ । ୧୯ ।
ସନାତନ ଗୁରୁ ମୋତେ କହିଲେ ଗୁପତେ ।
ଗୁପତେ କହିଲି ମୁହିଁ ରାମଚନ୍ଦ୍ର ହିତେ । ୨୦ ।
ରାମଚନ୍ଦ୍ର କହିଲେ ଯେ ପବନ ହିତରେ ।
ପବନ କହିବ ତୁମ୍ଭେ ତୁମ୍ଭ ଶିଷ୍ୟ ଘରେ । ୨୧ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଦ୍ୱାବିଂଶ ଛାନ୍ଦ ॥



## ତ୍ରୟୋବଂଶ ଛାନ୍ଦ

ଶୁଣ ଆହେ ଶ୍ରୀଦାମର ସମସ୍ତ ଗୋପାଳ ।
ରାମଚନ୍ଦ୍ର ପାଞ୍ଚସାର ସାତ ଜନ୍ମେ ମେଳ ।୧।
ଉତ୍ଥାନ ପାଞ୍ଚ ସାଙ୍ଗରେ ସାତଗୁଣ ଥାଏ ।
ବେଦ ଦ୍ୱାଦଶରେ ମନ୍ତ୍ର କରିବ ଯେ ଲକ୍ଷେ ।୨।

ବୃତ୍ତି,ଷୋଳ ଧରିଲେ ଯେ ପୂର୍ଣ୍ଣ ବୃତ୍ତ ହେବ ।
ମୂର୍ତ୍ତି ବୃତ୍ତ ଧରିଲେ ଯେ ଦ୍ୱାଦଶ କରିବ ।୩।
ପୂର୍ଣ୍ଣ ବୃତ୍ତ ଧରିଲେ ଯେ ଷୋଳ ଖଣ୍ଡ ହୋଏ ।
ଷୋଳନାମ ମନ୍ତ୍ରଗୋଟି କରିବ ଯେ ଲକ୍ଷେ ।୪।

ହରେରାମ କୃଷ୍ଣ ଶ୍ୟାମ ସ୍ମରଣ ମନ ।
ଶ୍ରୀରଙ୍ଗ ଶ୍ରୀରଙ୍ଗ ନୀଳ ରାମ କର ଧ୍ୟାନ ।୫।
ନନ୍ଦ କନ୍ଦ ଧ୍ୟାନ ଧର୍ମ ବର୍ଣ୍ଣଣ କର ।
ସାଧୁ ମଧୁ କାମ ବ୍ରହ୍ମ ଷୋଳ ନାମ ଧର ।୬।

ଏକ ନାମ ଏକ ଥାନେ ଲେଖିବ ଯନ୍ତ୍ରରେ ।
ଷୋଳ ଯେ ମଣ୍ଡଳ ବସ୍ତ୍ର ଦେବ ସେ ଯନ୍ତ୍ରରେ ।୭।
ବସ୍ତ୍ରକ ବସ୍ତ୍ରକ ଷୋଳ ଦେବ ସେଠାବର ।
ଭୂମିଦାନ ଦେବ ଶିଷ୍ୟ ଗୁରୁଙ୍କ ସେବାର ।୮।

ଅଷ୍ଟରତ୍ନ ଦକ୍ଷିଣା ଯେ ଦେବ ପୁଣ ଶିଷ୍ୟ ।
ଅତିଗୋପ୍ୟ ଅତିଗୋପ୍ୟ ନ କର ପ୍ରକାଶ ।୯।
କୋଟିକରେ ଗୋଟିଏ ଦେଖିବେ ହେତୁ ମନ ।
କଷ୍ଟ ଯେ ପାଇବ ସେ ବରଷେ ଦେଲେ ଧ୍ୟାନ ।୧୦।

---

୧—୧ ଶୁଣ ହେ ଶ୍ରୀଦାମ ରସ (କ);
୨—୧ ସାତ ପୂର୍ଣ୍ଣ ଥାଏ (କ)

ନୀଳଉଁ ବନ୍ଧୁରେ ଦେବ ଶ୍ରୀଁ ସ୍ୱମ ଅର୍ଦ୍ଧ ।
ସ୍ୱରଂ ହ୍ୱରେ ଓଁକାରେ ଯେ ଶିଷ୍ୟ ପାଉ ବୋଧ । ୧୧ ।
ଶ୍ୟାମ ଯେ ଶୂନ୍ୟରେ ଯୋଇ ଶ୍ରୀ ନାମକୁ ଥୁଅ ।
ନନ୍ଦ କନ୍ଦ ଓଁକାରରେ ମନ୍ତ୍ର ଗୋଟି ଦଅ । ୧୨ ।

ଦାନ ଯେ ବନ୍ଧୁରେ ଯୋଇ ଧର୍ମ୍ମ ଯେ ଅର୍ଦ୍ଧରେ ।
ସାଧୁ ଯେ ବନ୍ଧୁରେ ଦେଲେ ମଧୁ ଯେ ସ୍ୱମରେ । ୧୩ ।
କାମ ଯେ ଓଁ କାରେ ଦେଲେ ହୋଇଲାକ ଭୂଲ ।
ଉନ ପାଞ୍ଚେ ପନ୍ଦର ଯେ ବସ୍ତୁଗଲେ ଭଲ । ୧୪ ।

ବ ଅ କୁ ବନ୍ଧୁରେ ଦେଲେ ର କୁ ମଧ୍ୟରେ ।
ହ୍ରୁ କୁ ସେଠାବରେ ଯେଂଖୋଲରେ ସ୍ୱମରେ । ୧୫ ।
ଭୂପଣମାନଙ୍କୁ ସିନା ମିଳେ ଭୂମିଦାନ ।
ଅନ୍ୟଜନ କାହୁଁ ଦେବ ଏ ଦକ୍ଷିଣା ପୁଣ । ୧୬ ।

ଏ ବଡ଼ ସଂଶୟ ଅଟେ ଲାଗିଲା ତ ଧନ୍ଦ ।
ଏ କଥାକୁ ପ୍ରତିକାର କର ଗୁରୁଦେବ ।୧୭।
ଶୁଣ ଆହେ ଗୋପସୁତ କହୁବା ବସ୍ତୁର ।
ବରଷ ଦିନରେ ଉପୁଜିବ ଯେତେ ଘର ।୧୮।

ସେ ଧନକୁ ଷୋଳ ଭାଗ କରିବ ମନରେ
ବରଷ ଦିନରେ ଭାଗେ ଦେବ ଗୁରୁ ଘରେ ।୧୯।
ଏକଥା ଅଟଇ ଭଲ ବସ୍ତୁରକୁ ପୁଣ ।
ଫେଡ଼ିଲେ ସଂଶୟ ଗୁରୁ ପାଇଲୁ କାରଣ ।୨୦।

ଗୁରୁ ଯେ ଗୋଲୋକ ଦେଲେ ଏ ଦକ୍ଷିଣା ପୁଣ ।
ଶିଷ୍ୟର ଦକ୍ଷିଣା କାହିଁ ଲାଗିବ କାରଣ ।୨୧।

---

୧୧—୧ କଲଉଁ ବନ୍ଧ, କୃଷ୍ଣବନ୍ଧ, ଶ୍ରି ସ୍ବଂ ସ୍ୱମ ଅର୍ଦ୍ଧ (କ);
୧୨—୧ ଶ୍ରି ସ୍ବଂ ଦାମ ଥୁଅ (କ);
୧୩—୨ ମନ୍ତ୍ରକୁ ସେଠା ଠାରେ ଖୋଲରେ (ଖ); ସ୍ୱମ୍ଭରେ (କ)

ଭୂମିର ଯେତେକ ଫଳ ଉପୁଜାଏ ମଧ୍ୟ ।
ପୁଷ୍ଟ ନାହିଁ ଥିଲେ ଗୁରୁ ତୁଲ ଅଟେ ସେହି ।୨୨।
ପୁଷ୍ଟି ନାହିଁ ନ ଥିଲେ ଯେ କରଇ ଶରୀର ।
ଗୁରୁଙ୍କର ମହୋତ୍ସବ ଦିବସ ଯେ କର ।୨୩।

ଷୋଳକ୍ରୋଶ ଘେର ଯେ କରଇ ଏମନ୍ତ ।
ମୁକ୍ତି ମଣ୍ଡଳରେ ଜାତ ହୋଇଲେ ମରେ ତ ।୨୪।
କଷ୍ଟ ହି ସ୍ୱତନ୍ତ୍ର ଶେଷ ଧଇଲେ ମଞ୍ଚରେ ।
ଅସୁରହିଁ ମରନ୍ତ ଯେ ପାଇଥିଲେ ବରେ ।୨୫।

ସହଜ ଅଟଇ ନରଙ୍କର ତ ମରଣ ।
ବାସନା ରହଇ ଏତା ଯୁଗେ ଯୁଗେ ପୁଣ ।୨୬।
କାଠ ସଙ୍ଗେ ଚନ୍ଦନ କି କରିବା ଯେ ସରି ।
ମାଙ୍କଡ଼ା ପଥରି ସଙ୍ଗେ ହୀରା ତୁଳକିନ୍ତି ।୨୭।

ଧାନକୁ ଅଗାଡ଼ି ଯେସନେ ନୁହଇଟି ତୁଲ ।
ହସ୍ତୀର ସଙ୍ଗତେ ତୁଲ ଅଟେ କି ଶୃଗାଳ ।୨୮।
ନାମର ଭଜନ ଯେ ବାସନା ସେହି ମତ ।
କାଠ ଅଟେ ନାମ ନ ଭଜିଲା ଯେଉଁ ମତ ।୨୯।

ଶ୍ରୀରାମ ଯେ ସୁମରିଲା ବିଭୀଷଣ ମନ ।
ଚତୁର୍ଯୁଗେ ଅମର ଯେ ହୋଇଲା ସେ ଥାନେ ।୩୦।
ଅସୁର ବାହାର ହେଲା ରାମ ନାମ ଧରି ।
ବାସନା ରହିଲା ସତ୍ୟ କଳରେ ଯେ ପରି ।୩୧।

ଯୁଗେ ଯୁଗେ ଜାତେଶ୍ୱର ହୋଇଲା ସେ ପୁଣ ।
ଅମର ବୋଲଣ ସେ ଏମନ୍ତ କରି ଜାଣ ।୩୨।
ଜାତେଶ୍ୱର ପୁରୁଷକୁ ଅମରଟି କହି ।
ଶ୍ରୀରାମ ଭଜିଲେ ମୃତ୍ୟୁ ଯମ ଭୟ ନାହିଁ ।୩୩।
ଅଛିଲ ଯେ କୃଷ୍ଣ ନାମ ଧରିଣ ଅମର ।
ଭୁଷଣ୍ଡି କାକ ହୋଇଲା ଜନ୍ମ ଜାତେଶ୍ୱର ।୩୪।

ଏଣୁକରି କୃଷ୍ଣଜନ ଜାତେଶ୍ୱର-ଦେହ୍ନ ।
ଘଟଗଲେ ହେବୁ ତାଙ୍କ ସ୍ୱପ୍ନରେ ଦାହି ।୩୫।
ଯେଉଁ ଜନ୍ମ ହେଲେ ହର ହଅନ୍ତୁ ଦର୍ଶନ ।
ଅହଲ୍ୟା ପଥର ହେଲ ସଂଜ୍ଞାବ ଯେସନ ।୩୬।

ହରେକୃଷ୍ଣ ରାମଶ୍ୟାମ ଦାମୋଦର ଧର ।
ଶ୍ରୀ ନନ୍ଦନନ୍ଦନ ନାମ ହୃଦରେ ସୁମର ।୩୭।
ପଦ୍ମମୂଳ ଦୀନବନ୍ଧୁ ବାସୁଦେବ ନାମ ।
ଶ୍ରୀ ମଧୁସୂଦନ ନାମ କୃପାମୟ ଧାମ ।୩୮।

ଶରଣ ସୋଦର ନାଥ ବ୍ରହ୍ମାଣ୍ଡ ଗୋସାଇଁ ।
ସ୍ୱାରବି ରାମ ଶୀରବି ରାଧା କାଳବି କୃଷ୍ଣ କନ୍ଧ । ୩୯ ।
ରାଧାକୃଷ୍ଣ ରାମ ନେବଗାରେ କର ହେତୁ ।
ଚୋପର ଚଣ୍ଡଳ ମାଳା ଅଭ୍ୟନ୍ତର ହେତୁ ।୪୦।

ଏ ଗ୍ରନ୍ଥ ବନ୍ଧ ପାରଲେ ଅଟନ୍ତି ହରଣ ।
ରୂପକେ ରଖିଲୁ ମନ୍ତ୍ର ପ୍ରଧାନ ଭାବଣ ।୪୧।

ଇତି ଶ୍ରୀ ଗୁରୁଭକ୍ତ ଲୀଳା କଥନେ ନାମ ଅଷ୍ଟାବିଂଶ ଗ୍ରନ୍ଥ ॥



# ଚତୁର୍ବିଂଶ ଛାନ୍ଦ

ଛାଳି ଯେ କଣ୍ଡୀଲ ଶୀଳା କହୁବା ଗୋସାଇଁ ।
କି ରୂପରେ ମନ୍ତ୍ର ଶିଷ୍ୟେ ଯନ୍ତ୍ର କରି କହୁ । ୧ ।
ଏକଥା ମନରେ ବଡ଼ ରହିଲା ତ ଧନ୍ଦ ।
ଛନତ କହୁଛୁ ମୁହିଁ ମୂଢ଼ ଯେ ମୁକୁନ୍ଦ । ୨ ।

ମଣ୍ଡଳ ଯେ ଦୁଇଗୋଟି ଲେଖିବ ଭୂମିରେ ।
ଦ୍ୱାଦଶର ଆଦ୍ୟ ସ୍ୱର ରହିବ ତହିଁରେ । ୩ ।
ତତ୍ପରେ ସପ୍ତଅଙ୍କ ଲେଖିବ ଯେ ପୁଣି ।
ଆଠ ଅଙ୍କ ତଥିପାଶେ ଲେଖିବ ଯେ ପୁଣି । ୪ ।

କର ମାତ୍ରା ଦେଇ ମଧ୍ୟେ ପୋଡ଼ା ଅନୁସ୍ୱାର ।
ଅର୍ଦ୍ଧାଙ୍ଗ ଉପରେ ଦେଇ ବସିବ ଓଁକାର । ୫ ।
ପଢ଼ିଲେ ଅକ୍ଷର ହେବ ବନ୍ଧଲେଣ ମନ ।
ଅପଣ୍ୟ ହୋଇଲେ ମନ ଗ୍ରନ୍ଥ ହେବ ଶୂନ୍ୟ । ୬ ।

ପବନନ୍ତୁଁ ବ୍ରକ୍ଷର ଧରିବ ଯେ ପୁଣି ।
ନମ ଦୁଇ ଅକ୍ଷର ଯେ ମିଶାଇବ ଗୁଣି । ୭ ।
ଆଦ୍ୟାକ୍ଷର ଲେଖିବ ଯେ ଡାହାଣ ଭାଗରେ ।
ଛଡ଼ାକ୍ଷର ଲେଖିବ ଯେ ବାମ ମଣ୍ଡଳରେ । ୮ ।

ଆଦ୍ୟରେ ମଣ୍ଡଳେ ଏକ ପିଣ୍ଡିଲା ବସନ ।
ବାମର ମଣ୍ଡଳେ ସବୁ ପାଗ୍ରେଡ଼ା ଯେ ହୀନ । ୯ ।
ବେନି ବସ୍ତ୍ର ବେଢ଼ାଇଣ ଦେବ ସେ ଯନ୍ତ୍ରରେ ।
ଶିଷ୍ୟ ଯେ ଦର୍ଶିବ କଲେ ସର୍ବ ପାପ ହରେ । ୧୦ ।

ଆଦ୍ୟାକ୍ଷର ଓଁକାରରେ ଲେଖିବ ସେ ପୁଣି ।
ପବନ ନାମ ମଧ୍ୟରେ ବିସ୍ମରିବ ପୁଣି । ୧୧ ।
ହୁଁ କାରକୁ ଯେ ରଖିବ ବିନ୍ଦୁକୁ ସାହାନ ।
ଏମନ୍ତ୍ରେଣ ତନ୍ତ୍ରବିଧି ହୃଦରେ ସ୍ମରଣ । ୧୨ ।

ଯେ ଗୁରୁ ଏ ଭେଦ ନ ଜାଣିଣ ଗର୍ବରେ ।
ଶିଷ୍ୟକୁ ମିଶାନ୍ତି ଆସି ଗର୍ହାସ ଠାବରେ । ୧୩ ।
ବିଶୁଳି ପାତକ ଦୋଷ ଲାଗଇ ତାହାରେ ।
ଶିଷ୍ୟ ବୁଡ଼ି ମରଇ ହେ ଅଗାଧ ଜଳରେ । ୧୪ ।

ଆଦିବିଷ୍ଣୁ ଯେତେବେଳେ ବ୍ରହ୍ମାଣ୍ଡ ରଚିଲା ।
ପବନ ସ୍ୱରୂପ ପୁଣ ଅଙ୍ଗୁ ଜାତ କଲା । ୧୫ ।
ସେ ପବନ ଅହଙ୍କାରେ ମୂରତି ଧରିଣ ।
ବିଷ୍ଣୁଙ୍କୁ ଲାଗିଲା ଭସ୍ମ ତାହାର ତେଜେଣ । ୧୬ ।

କୋପେ ବିଷ୍ଣୁ ଚକ୍ରରେ ଛେଦିଲେ ପୁଣ ତାରେ ।
ଜାଣି ଅଙ୍ଗୁଷ୍ଠିର ପବେ ଛୁଡ଼ିଲା ପ୍ରହାରେ । ୧୭ ।
ସଜଣ ତାହାର ତେଜ ସ୍ତୁତି କରେ ପୁଣ ।
କି ମାଗିବ ବର ମାଗ ଦେବୁ ପୁଛେ ପୁଣ । ୧୮ ।

ତୋହର ଶ୍ରୀମୁଖରେ ମୋର ରହିବ ସ୍ଥିରତ ।
ଦେବ ନର ମୋର କଥା ଶୁଣୁଥିବେ ନିତ । ୧୯ ।
ଏହି ବର ମାଗୁଅଛି ଶ୍ରୀମୁଖରେ ତୁମ୍ଭର ।
ତୁମ୍ଭର ଆଜ୍ଞାରେ ଜାତ ହୋଇଛି ସଂସାର । ୨୦ ।

ସେହି ଜନଷ୍ଟାଙ୍କୁ ଶ୍ୱାସ ସ୍ୱର ହେ କରଣ ।
ଆଦ୍ୟର ଯେ ଦୁଇ ସ୍ୱର ଭରଭାଳ ପୁଣ । ୨୧ ।
ପ୍ରାନ୍ତର ଯେ ଦୁଇସ୍ୱର ତାଳ ଯେ କରିବା ।
ତାଣ୍ଡବ ଗର୍ହାସ ନୃତ୍ୟ ଏଥିରେ ରଖିବା । ୨୨ ।

---

୧୧—୧ ଯୋଡ଼ା ଅନୁସାର (କ); ୧୨—୧ ବନ୍ଧିଲେ ଗମନ (କ),

ବର୍ତ୍ତମାନ ଲୀଳା ବୃନ୍ଦାବନରେ ରହିବୁ ।
ଦେବସଭା ଠାରେ ତାଳକୃତ୍ୟ ଯେ କହିବୁ । ୧୩ ।
ରହିବ ଏ ତୋର କଥା ମୋହର ପ୍ରମାଣ ।
କଳିଯୁଗେ ତୋର ଲୀଳା ଘରେ ଘରେ ପୁଣ । ୧୪ ।

କଂସ ଯେ ଅସୁର ରୂପ ଧରିବୁ ତୁ ପୁଣି ।
କଂସ ବିଷ୍ଣୁ ବିବାଦ ଯେ ଲାଗିଥିବ ପୁଣି । ୧୫ ।
ନଉମିସ ଯବନ ତୁ ହୋଇବୁ କଳିରେ ।
ବୈଷ୍ଣବ ହୋଇବୁ ଆମ୍ଭେ ଗଙ୍ଗାର ତଟରେ । ୧୬ ।

ଚଇତନ ଅବତାର କଂସାଳ କରିଣ ।
ସକଳ ଜନ ଜାଣିବେ ତୋହର ସେ ଗୁଣ । ୧୭ ।
ତୋର ମନ୍ତ୍ର ସ୍ତୁତି ନ ଜାଣିବେ ଯେଉଁ ପ୍ରାଣୀ ।
ଯେ ହସ୍ତେ ବାଇବ ପୁଣ ପାପ ହେବ ପୁଣି । ୧୮ ।

ସବୁ ତନ୍ତ୍ର ସ୍ତୁତି କରି ବାଇବେ ଯେ ଜନ ।
ସେ ଜନ ପାଇବେ ପୁଣ ବଇକୁଣ୍ଠ ଥାନ । ୧୯ ।
ବର୍ତ୍ତମାନ ମନ୍ତ୍ର ଯନ୍ତ୍ର ସ୍ତୁତି ଯେ କହିଲୁ ।
ହରିଦାସ ଭକତ ତୁମ୍ଭେ ତୁମ୍ଭକୁ ଯେ ଦେଲୁ । ୨୦ ।

ପବନ, ରାବଣ, କଂସ, ନଉମିସ ଚାରି
ଚାରି ଯୁଗେ ଲୀଳା କଲା ବିଷ୍ଣୁ ବଇରି ଧରି । ୨୧ ।
କୃଷ୍ଣଙ୍କୁ ବଇରି କରି ଲଭିଲା କାରଣ ।
କଂସର ହସ୍ତରେ କୃଷ୍ଣ ମଣ୍ଡେ ଜାତ ପୁଣ । ୨୨ ।

ବିଷ୍ଣୁର ବଚନ ପାଳି ତା ନାମ ଶୁଣିବ ।
ତାକୁ ମନ୍ତ୍ର ସ୍ତୁତି କଲେ ସେ ଶାନ୍ତ ମଣିବ । ୨୩ ।
ମନ୍ତ୍ର ସ୍ତୁତି ନ କରିଣ ଯେ ବାବନ୍ତି ପୁଣି ।
ନର ଜନମାନେ ତାକୁ ନ ପାରନ୍ତି ଜିଣି । ୨୪ ।

ମନ୍ତ୍ର ଯନ୍ତ୍ର ତନ୍ତ୍ର ସ୍ତୁତି ନ ଜାଣି ଣ ପୁଣ ।
ପୂଜା ଯେ ବପନ ନ ଦିଅନ୍ତି ଯେଉଁ ଜନ । ୨୫ ।

ଏ ବାର୍ଦ୍ଧ ନ କର ଯେବ କରତାଳ ଧରେ ।
ସେ ଜନ ଅଟଇ ପାପୀ ନଛୁଇଁ ତାହାରେ । ୩୬ ।
ଛୁଇଁଲେ ଯେ ବ୍ରହ୍ମ ନାମ ଶୁଣିବ ମନର ।
ଷୋଳ ଯୁଗ ପାପ ବସେ ତାହାର ଅଙ୍ଗର । ୩୭ ।

କରତାଳ ଯେତେ ଦୋଷ ବ୍ରହ୍ମବେଣ ଥାଏ ।
ଯେ ମନ୍ତ୍ର ନ ଜାଣି ବାଏ ତାର ଅଙ୍ଗେ ରହେ । ୩୮ ।
କୃଷ୍ଣଙ୍କୁ ଦେଖିଲା କପାଁ ରହଲା ତା ପାପ ।
ଏ କଥା ଅଟେ କେମନ୍ତ କହିବା ସ୍ୱରୂପ । ୩୯ ।

ହେ ଗୁରୁଦେବ ତ ବଡ଼ ଅଟଇ ଏ ଗୂଢ଼ ।
ଶ୍ରୀ ଗୁରୁଦେବ କହିବା ଅଟଇ ମୁଁ ମୂଢ଼ । ୪୦ ।
ପବନ ସ୍ୱରୂପେ ଯେତେ ପାପ ଥିଲା ଭଣ ।
ଆତ୍ମର ଦର୍ଶନେ ଚନ୍ଦ୍ର ରୂପ ସେହୁ ଧର । ୪୧ ।

ସେ ପାପ ରହଣ ଅଛୁ କଳଲୀଳା ପାଇଁ ।
ମନ୍ତ୍ର ଶୂନ୍ୟ କରତାଳ ବୀଣକାକୁ କହୁ । ୪୨ ।
ଏ କଥା ବଡ ସଂଶୟ ଲଗିଲା ତ ଚିତ୍ତେ ।
ବୀଣକାକୁ ଭେଟ ସେହୁ ହୋଇବେ କେମନ୍ତେ । ୪୩ ।

ଶୁଣହେ ଶ୍ରୀକୃଷ୍ଣ ଲୀଳା କହିବାକ ପୁଣ ।
ଚାରି ଯୁଗେ କୃଷ୍ଣ ଲୀଳା କରନ୍ତି ଭିଆଣ । ୪୪ ।
ଅହଲ୍ୟା କେମନ୍ତେ ଭେଟ ହୋଇଲା ରାମରେ ।
କୁବଳୟ କୃଷ୍ଣଙ୍କୁ ଯେ ଲଭିଲା ଦ୍ୱାପରେ । ୪୫ ।

ଦେହ ଗଲେ ଜନ୍ମଜାତ ହେଉଣ ଯେ ଥିବ ।
ଯୁଗ ଶେଷ ହୋଇଲେ ସେ ନୀରଜା ଭେଟିବ । ୪୬ ।
କୃଷିକାର୍ଯ୍ୟ ଯେସନେ କେ କୃଷି ରଖି ଥାଇ ।
ପୁଣି କୃଷି ହପୁଜାଇ କୃଷି ସେ ବାନ୍ଧଇ । ୪୭ ।

---

୩୯—୨ ନର ଜନ୍ମମାନେ ଖ):

ଯେଉଁ ବୀଜ ଯେଉଁ ତେଜ ଜାଣଇ ସେ ପୁଣ ।
ତେସନ ପରବ୍ରହ୍ମେ ଅଟେ ବିଷ୍ଣୁର ଭିଆଣ । ୪୮ ।
ପାପୀ ପାପ ହେତୁରୁ ଯେ ପାପ ଦେହ ପାଏ ।
ପୁଣ୍ୟ କଲେ ପୁଣ୍ୟ ଜନ୍ମ କୃଷ୍ଣ ପାଦେ ରହେ । ୪୯ ।

ଏଣୁକରି ବିଷ୍ଣୁର ଯେ ଅଟଇ ସଂସାର ।
ଏ ଛନ୍ଦ ନ ଜାଣେ ଯେତୁ ମୂଢ଼ମତି ନର । ୫୦ ।
ସତ୍ୟ ଯେ ତ୍ରେତୟା ଯୁଗ ଦ୍ୱାପର ଯେ କଳି ।
ଚାରି ଯୁଗେ ପୁଣ୍ୟ ପାପୀ ଅଛନ୍ତି ଯେ ମେଳି । ୫୧ ।

ପୁଣ୍ୟ ଜନେ ପାପୀଜନ କରିବା କି ଲକ୍ଷ ।
ଗୋରୁ ସଙ୍ଗେ ଖର ଗୋଟା କରିବା କି କକ୍ଷ । ୫୨ ।
କଣ୍ଟକୀ ବୃକ୍ଷ ସଙ୍ଗତେକ ତୁଳସୀ କି ସରି ।
ହେତୁ ଅଣହେତୁ ଏହୁ ରୂପେଣ ବିସ୍ତରି । ୫୩ ।

ଗତ ହେତୁ ପାଇଲ ହେ ଗୋପକୁଳେ ଜାତ ।
ସୁହାସ ଭଗତ ତୋରେ କହିଲୁ ଅଚ୍ୟୁତ । ୫୪ ।

ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଚତୁର୍ବିଂଶ ଛନ୍ଦ ।।

— — —

# ପଞ୍ଚବିଂଶ ଛାନ୍ଦ

ସାଷ୍ଟାଙ୍ଗ ପ୍ରଣାମ ଗୃହ୍ୟ ଚରଣର ତଳ ।
ସଂଶୟ ଫେଡ଼ିବା ଗୁରୁ ଖୋଲ ଯେ ମର୍ଦ୍ଦଳ ।୧।
ଏହୁ ଲୀଳା ଭିଆଣ ଯେ କାହିଁ ପୁଣି ହୋଇ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର କହୁ ଶିଷ୍ୟ ବୋଧ ପାଇଁ ।୨।

ମଧ୍ୟରେ ଲେଖିବ ଧାର୍ଦ୍ଧ ମଣ୍ଡଳ ଗୋଟିଏ ।
କନିଷ୍ଠ ମଣ୍ଡଳ ଏକ ବାମଭାଗେ ରହେ ।୩।
ତ୍ରିକୋଣ ଆଦ୍ୟେ ଲେଖିବ ଡାହାଣ ଭାଗରେ ।
ତ୍ରିକୋଣ କୋଣରେ କ୍ଷୁଦ୍ର ମଣ୍ଡଳ ଯେ ଧରେ ।୪।

ଡାହାଣ ମଣ୍ଡଳ ତ୍ରିକୋଣରେ ନମ ଦୁଇ ।
ବାମ ମଣ୍ଡଳ ଦୁଇରେ ହରଉଁ ଅଛଇ ।୫।
ଏମନ୍ତେଣ ଯନ୍ତ୍ରବିଧି ଲେଖିବ ଭୂମିର ।
ତେବେ ସେ ପାତକ ଶିଷ୍ୟ ହୋଇବ ଯେ ଦୂର ।୬।

ହଦେ ବସନ ଧୋବ ବସ୍ତ୍ର ଦୁଇ ଆଣି ;
ଡାହାଣ ବେନ ଅଙ୍ଗରେ କରି ନଓଗ୍ଲୁଣି ୭ ।
ରଙ୍ଗ ଯେ ଶ୍ୟାମଳ ବେନ ବସନ ବାମରେ ।
ଗୃହ ବସ୍ତ୍ର ଦେଇ ଶିଷ୍ୟ ଦଣ୍ଡବତ କରେ ।୮।

ଖୋଳ ଗୋଟି ସେଠାବରେ ରଖିଣ ଯେ ଥିବ ।
ଅମୃତ ମନ୍ତୋଳ୍ପ ଦେଇଣ ମନ୍ତ୍ର କହିବ ।୯।
ଶିଷ୍ୟର କନ୍ଧରେ ଗୁରୁ ଖୋଲ ପୁଣି ଦେଇ ।
ଶିଷ୍ୟ ପୁଣ ଭୂମିଗତେ ଦଣ୍ଡବତ ହୋଇ ।୧୦।

---

୫—୧ମ ଉ ଦୁଇ (କ);

ଓଁକାରେ ଲେଖିବ ହ୍ରଂ ବେଣ୍ଣ ଯେ ଅକ୍ଷର ।
ଓଁକାର ମଧ୍ୟରେ ନାମ ବେଣ୍ଣ ଜ ସୁନ୍ଦର ।୧୧।
ତତ୍ତ୍ୱବୁଧ ନ ଜାଣିଣ ବଜାବନ୍ତି ଖୋଳ ।
ହସ୍ତ ଦେଲେ ଲାଗଇ ଯେ ଗୋହତ୍ୟା ସକଳ ।୧୨।

ନୃସିଂହ ସ୍ୱରୂପ ହେଲେ ହରଣୀର ଛଳେ ।
ପୃଷ୍ଠକୁ ସୁଗଢ ଦେଇ ପେତାକୁ ମାଇଲେ ।୧୩।
ହରଣୀ ମାଗିଲା ବର କରୁଣା ଯେ କର ।
ଅନୁକ୍ଷଣେ ସେବଥିବ ତୁମ୍ଭର ସଙ୍ଗର ।୧୪।

ଏକ କୋଟି ମର୍ଦ୍ଦଳ ଯେ କଲେକ ଭିଆଣ ।
ତାଳ ତଳେ ମାଦଳ ଯେ ଥୋଇଲେ ସେ ପୁଣ ।୧୫
ମୃଦଙ୍ଗ ଭିଆଣ କରି କର୍ତ୍ତିଲେ ଥୋଇଲେ ।
ତାଣ୍ଡବ ରାହାସ ଲୀଳା ହୋଇବ ବୋଇଲେ ।୧୬।

ଦ୍ରୁଲୁ ଦ୍ରୁଲୁ ଦାଦା ଦାଦା ଦ୍ରିମି ଦ୍ରିମି ସ୍ୱର ।
ଧ୍ୱନିରେ ସନ୍ତୋଷ ହେଲେ ଦେବତା ଅସୁର ।୧୭।
ଧୌ ଧୌ ଧେଙ୍ଗା ନାଦ ଶବଦ ମଙ୍ଗଳ ।
ଏଥିରେ ସନ୍ତୋଷ ହେବେ ମାନବ ସକଳ ।୧୮।

ନନ୍ଦଘରେ ଜାତ ହେବୁ ମାନବ ଦେହରେ ।
ଗୋପୀଏ ବାଇବେ ଖୋଳ କର୍ତ୍ତାଳ ଯେ କରେ ।୧୯।
ବୃନ୍ଦାବନେ ରଚିବୁ ଯେ ଏ ରଙ୍ଗ ରାହାସ ।
ସରସ୍ୱତୀ ଭଣ୍ଡାରରେ ଥୋଇଲେ ହରଷ ।୨୦।

ପୁଣ ନବଦ୍ୱୀପେ ଜାତ ହୋଇବୁ ମଣ୍ଟର ।
ସଂକୀର୍ତ୍ତନ ଆରମ୍ଭିବୁ ବ୍ରାହ୍ମଣ ସଙ୍ଗର ।୨୧।
ଏମନ୍ତେଣ ନରହରି ତାହାକୁ ଯେ ବର ।
ଦେଲେ ତାଙ୍କୁ ଶ୍ରୀମୁଖରେ ଶ୍ରୀରଙ୍ଗା ଅଧର ।୨୨।

---

୧୧—୨ ମଝେ ବେଣ୍ଣ (କ);

ସୁନ୍ଦରାନନ୍ଦ ହୋଇଲା ଚଇତନ୍ୟଠାରେ ।
ସେ ଜନ୍ମ ଅନ୍ତର କଲୁ ଗୋଲୋକହେତୁରେ ।୨୩।
ନୀଳାଚଳ ଭଜନରେ ଠାକୁର ଅନ୍ତର ।
ଆଜ୍ଞା ଦେଲେ ସୁନ୍ଦରାନନ୍ଦ ହେ ହେତୁ କର ।୨୪।

ଏହୁ ଉତ୍ତରଖଣ୍ଡ ହେ ଅଟନ୍ତି ଯେ ମେଳ ।
ତୁମ୍ଭେ ଜାତ ହୁଅ ଏବେ ନେମ୍ବାଳ ସେ ସ୍ଥଳ ।୨୫।
ଏଣୁ ଗୋପୀ ଗୋପାଳ ଯେ ଅଛନ୍ତି ବହୁତ ।
ସେ ସ୍ଥଳରେ ତୁମ୍ଭେ ଶାଖା ଘେନି ହୁଅ ଜାତ ।୨୬।

ଦ୍ୱାଦଶରେ ତୁମ୍ଭେ ସାର ଅଟ ତ ପ୍ରମାଣ ।
ତୁମ୍ଭର ଦ୍ୱାଦଶ ଜାତ କରିବ ଯେ ପୁଣ ।୨୭।
ଦ୍ୱାଦଶରୁ ଦ୍ୱାଦଶ ଯେ ହୋଇବ ଭିଆଣ ।
ରାହ୍ମାସ ରମ୍ଭବ ସେହୁ ଓନ୍ତ୍ର ଯେ ରାସ୍ତ୍ରେଣ ।୨୮।

ଶ୍ରୀକୃଷ୍ଣକରୁଣା କଲେ କହିଲୁ ତୁମ୍ଭରେ ।
ଗତହେତୁ ବସଥିଲ ତୁମ୍ଭେ କ ମନରେ ।୨୯।
ଦ୍ୱାରଣ୍ୟମହଲା ଖୋଲ ଅଟଇ ଏ ଲୀଳା ।
ମନ୍ତ୍ର ଜାଣି ବାଇଲେ ସେ ପାତକ ଦୂରିଲା ।୩୦।

ମନ୍ତ୍ର ଯନ୍ତ୍ର ନ ଜାଣିଲେ ପାତକ ଲଭିଲା ।
ରଜକୀ ମଳନ ବସ୍ତ୍ର କାଠରେ କୋଡ଼ିଲା ।୩୧।
ଖୋଳ ଯେ କଂସାଳ ସେହୁ ଅଙ୍ଗରେ ବନ୍ଧିବ ।
ବୈଷ୍ଣବ ନାସ୍ତି ମିଥ୍ୟା ଠାରେ ନିବର୍ତ୍ତି କରିବ ।୩୨।

ଏ ଭେକ ଧରିଣ ବୈଷ୍ଣବ ନାସ୍ତି ମିଥ୍ୟା କଲେ ।
ଅନ୍ତର୍ଗତେ ବ୍ୟାଧି ତାଙ୍କୁ ହୁଅଇ ଯେ ଭଲେ ।୩୩।
ସେଲନ କରିବ ଅଳ୍ପ ବଚନ ଯେ ସ୍ଥିର ।
ତଥା ଅନ୍ନ ଗୁଆଘୃତ ନିରାମିଷ ଧର ।୩୪।

ପ୍ରଶ୍ନରୁ ସାଧିବ ଧ୍ୟାନ ଷୋଳ ଜ୍ୟୋତି କଳା ।
କଣ୍ଠରେ ସ୍ୱାତ୍ତ୍ୱ ଥୋଇଲେ ଲକ୍ଷ ଯେ ଧଇଲା ।୩୫।
ନୋହିଲେ ପାଳିଟ ହାଣ୍ଡି କରିବୁ ଯତନ ।
ଆମୁଷ୍ଠାଜନର ଘରେ ନ କରି ଭୋଜନ ।୩୬।

ଏ ହେତୁ ନ ଧରି ପେଟ ଜମନ୍ତେ ଭକ୍ଷିଲେ ।
ଯେତେ ଅରଜିଲେ ଲକ୍ଷ୍ମୀ ଗୁଡ଼ିଲ ତାହାରେ ।୩୭।
ମତ୍ସ୍ୟ ମାଂସ ମଇନ ଯେ ବସନକୁ ଦୂର ।
ଲୁଞ୍ଜ ଗୁଞ୍ଜ କପା ବସ୍ତ୍ର ଛଡ଼ି ଅଙ୍ଗେ ଧର ।୩୮।

ବ୍ୟାଘ୍ରନଖ ପଇତା ଯେ କଠାଉ ପାଦରେ ।
କାଛଟି ମେଖଳା ଟୋପି ବନ୍ଧିବ ଅଙ୍ଗରେ ।୩୯।
ଆଉ ଚୂଳ କୁଣ୍ଡଳ ଯେ କଙ୍କଣ କାଛଟି ।
ଗୋପାଳ ସହାସ ବେଶ ଏମନ୍ତରେ ଘଟି ।୪୦।

ଏ ଭେକ ଗୁଡ଼ି ସଂସାରେ ଭେକ ଯେ ଧଇଲେ ।
ହ କୁ ଳ ଧରଣି ଇକାର ଥୋଇଲେ ।୪୧।
କ ରେ ବା ଅକ୍ଷର ଙ୍କାର ମିଶାଇ ।
ଏମନ୍ତ ଲେକର ସଙ୍ଗେ ଲକ୍ଷ ପୁଣି ସେହି ।୪୨।

ଏଣୁକରି ଗୋପାଳର ଭେକ ତୁମ୍ଭେ ଧର ।
ଅତ୍ୟୁତ ପଥରେ ବାର ଗୋପାଳ ଯେ ସାର ।୪୩।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ପଞ୍ଚବିଂଶ ଗ୍ରନ୍ଥ ॥

—o—

୩୫—୨ ଥୋଇଲେ ଲକେଶ (କ);

## ଷଡ଼ବିଂଶ ଛାନ୍ଦ

ରାମ ପଞ୍ଚ ଭ୍ରାତ ସଙ୍ଗେ ସପ୍ତ ଭ୍ରାତ ମିଳି ।
ଚନ୍ଦ୍ରଦାସ ନିରଞ୍ଜନ ଦୁଇ ଗୋପ କେଳି । ୧ ।
ଚକ୍ରୀ ରାମ ଲେହ୍ନ ରାମ ଗୋପ ରାମ ସଙ୍ଗ ।
ଗୋପଲୀଳା ବିନୋଦ ଯେ କଲି ଶେଡ଼ ରଙ୍ଗ । ୨ ।
ଦକ୍ଷିଣଚନ୍ଦ୍ର ହେ ଦାସ ପରିଶଳ ସାଦ୍ଧା ।
ହରେକୃଷ୍ଣ ମନ୍ତ୍ରରୁ ଯେ କୃଷ୍ଣାଦ୍ଧ ହୋଇଲା । ୩ ।
କୃଷ୍ଣ ହରେ ଯେ ସେ ବୋଲି ଛାଡ଼ ଯେ ଅକ୍ଷର ।
ଷଟ କୋଣ ବସାଇଣ ମନ୍ତ୍ରକୁ ସୁମର । ୪ ।
କୃଷ୍ଣ ହରେ କୃଷ୍ଣ ହରେ କୃଷ୍ଣ କୃଷ୍ଣ ହରେ ।
ଯେ ସେ କୃଷ୍ଣ ସେ ସେ ହରେ କୃଷ୍ଣ କୃଷ୍ଣ ହରେ । ୫ ।
ଏମନ୍ତ୍ରେଣ କୃଷ୍ଣାଦ୍ଧ ଯେ ଭଗତ ଭଜନ ।
କୃଷ୍ଣ କୃଷ୍ଣ ବୋଲି କର ମୁଖରେ କୀର୍ତ୍ତନ । ୬ ।
ଷଟ କୋଣ ଆପି ବସ୍ତୁ କରି ନିଉଜ୍ଜ୍ୱଳ ।
ଶିଷ୍ୟ ଆସି ଭୂମିଗତେ ଦେବାକ ମଣ୍ଡଳ । ୭ ।
ଯନ୍ତ୍ର ମନ୍ତ୍ର ଦରଶନେ ପାତକ ନାଶଇ ।
ପୂର୍ବଭାଗ୍ୟ ଥିଲେ ସିନା ଏ ଗୁରୁ ମିଳଇ । ୮ ।
ହ ଅ ଯେ ବେନି ଅକ୍ଷର କରିବ ଏକତ୍ର ।
ରେ ସେ ଦୁଇ ଅକ୍ଷର ଯେ କରିବ ଗୁପତ । ୯ ।
କୃଷ୍ଣ ବେନି ବନ୍ଦ୍ରେଟି ତନ୍ତ୍ରରେ ରଖିବ ।
ହ କାର ଉକାରେ ଯୋଗ ମନ୍ତ୍ରକୁ ବାଢବ । ୧୦ ।
ରେ କାର ମଧ୍ୟରେ ଦେଲେ ହୋଇବାକ ଶୂଳ ।
ଯନ୍ତ୍ର ମନ୍ତ୍ର ହେତୁ ଭକ୍ତ ବାସନାର ଫୂଲ । ୧୧ ।

---

୩—୨ ମନ୍ତ୍ରରୂପେ (ଖ); ୯—୨ ରେ ଶବଦ ଦୁଇଅକ୍ଷର କରିବ ଗୁପତ(ଖ);

ଗୁରୁପାଦେ ସେବା କରି ମନ୍ତ୍ରକୁ ସୁମର ।
ତେବେଟି ଜୀବର ଗତି ହେବ ତ ଉଦ୍ଧାର । ୧୨ ।
କିରୂପେ ଗୁରୁଙ୍କ ସେବା କଲେ ଗତି ହୋଏ ।
ଅଗାଧ ସମୁଦ୍ର ଜଳେ ପଶି ପୁଣ କୋହେ । ୧୩ ।
ଗୁରୁ ପୁଣ ସୁଦସ୍ୟା କଲେଣ ସିନା ତରି ।
କପଟ କଲେଣ ଗୁରୁ ମନ୍ତ୍ର ଅପ୍ରାପତ । ୧୪ ।
ଅଗାଧ ସମୁଦ୍ର ଜଳେ ବୋଇତରେ ଯାଇ ।
ସେବା ଯେ ଉଗତି ତରି ବୋଇତ ଅଟଇ । ୧୫ ।
ସେବା ହେତୁକର ଗୁରୁ କରିବେ କରୁଣା ।
ଚନ୍ଦ୍ରଦାସ ମନ ତୋର କର ହେ ଫରୁଣା । ୧୬ ।
ଶିଷ୍ୟ ଘରେ ଗୁରୁ ଯେବେ ହୋଇବେ ପ୍ରବେଶ ।
ଆସନ ଦେବ ଯେ ପୁଣ କମଳ ଯେ କୁଶ । ୧୭ ।
ବ୍ୟାଘ୍ରାମ୍ବର କୃଷ୍ଣାଞ୍ଜନ ଗ୍ଲଲ ଆଣି ଦେବ ।
ଏ ଆସନ ନ ମିଳଲେ ତୃଣ ଶଯ୍ୟା ଦେବ । ୧୮ ।
ଏକ ପୀଢ଼ା ଉପରେଣ ପାଦବେନି ଥୋଇ ।
ପତି ପତ୍ନୀ ମିଳି ପାଦ ଧୋଇବେ ଯେ ଯାଇ । ୧୯ ।
ଚରଣ ଧୋଇବ ପତି, ପତ୍ନୀ ଦେବ ଜଳ ।
ଯତନ କରି ପୋଛିବ ଚରଣ ଯୁଗଳ । ୨୦ ।
ନବତନ ଏକବସ୍ତ୍ର ପୋଛିବ ଯେ ପାଦ ।
ପାଦ ନଉଗ୍ଲଲ ସେବା ହେତୁ ମନେ ବନ୍ଦ । ୨୧ ।
ଯେଉଁଠାରେ ପାଦ ବେନି ଧୋଇଣ ଯେ ଥିବ ।
ମସ୍ତକରେ ଜଳ କିଛି ନେଇଣ ଥୋଇବ । ୨୨ ।
କିଛି ଜଳ ଗର୍ଭକୁ ଯେ କ୍ଷେପିବ ତୁରିତ ।
ଭକ୍ତିଭାବେ କରଯୋଡ଼ି ଥିବ ସେ ସଙ୍ଗତ । ୨୩ ।

---

୧୩—୧ ଦସ୍ୟା ହୋଏ (ଖ); ୧୫—୨ ସେବା ଯେ ମଚ୍ଛିନ୍ଦ୍ର (କ);

କ୍ଷୁଧାଶାନ୍ତ ପୁଚ୍ଛି ଦେବ ଜଳପାନ ଆଣି ।
ବରଷରେ ଗୁରୁଦିନେ ଗୃହେ ପୂଜା ଆଣି । ୨୪ ।
ଘୃତ ଦୁଗ୍ଧ ପିଠାପଣା ଅନ୍ନ ଯେ ବ୍ୟଞ୍ଜନ ।
ଫୁଲ ପାନ ଚନ୍ଦନ ଯେ ସେବାର ବିଧାନ । ୨୫ ।
ବାରମାସି ଖର୍ଚ୍ଚ ଦେବ ଗୁରୁଙ୍କ ଘୁମୁର ।
ବାର୍ଷିକ ବୋଲି ଗୁରୁ ଦକ୍ଷିଣା ବେଭାର । ୨୬ ।
ବାରମାସି ଗୁରୁବୃଦ୍ଧି କେତେକ ଅଛଇ ।
ଏତୁ ବଡ଼ ସମ୍ବନ୍ଧ ତ ମନକୁ ଲାଗଇ । ୨୭ ।
ବାର୍ଷିକ ଗୁରୁବୃଦ୍ଧି କେମନ୍ତ ପ୍ରକାର ।
ଶିଷ୍ୟ ଗୁରୁ ବ୍ରହ୍ମସ୍ୱରୁ ହୋଇବ ତ ପାର । ୨୮ ।
ଷାଠିଏ ଗୌଣୀ ଧାନ ଦେବ ଭୋଜନରେ ।
ପାଞ୍ଚ ବସ୍ତ୍ର ଦେବ ପୁଣ ଏ ଜନ କାଳରେ । ୨୯ ।
ଦ୍ୱାଦଶ ପଦକା ଦେବ ହାଣ୍ଡି ର ନମନ୍ତ ।
ଅଗ୍ନି ବୋଧ ନିମନ୍ତେଣ ଜନ ବାହାଣ ତ । ୩୦ ।
ଘୃତ ଦୁଧ ନିମନ୍ତେଣ ଗୁରୁ ଯେ ବାହ୍ମାଣ ।
ଲବଣକୁ ଦେବ ପୁଣ କରଣ ନମୀଣ । ୩୧ ।
ଆସନକୁ ଦେବ ପୁଣ ବସୁପଣ ଲେଖି ।
ଗୃହ ଛୁଇବାକୁ ଯେ ଦ୍ୱିକୋଡ଼ି ପଣ ଲେଖି । ୩୨ ।
ଫୁଲପାନ ନିମନ୍ତେଣ ଦ୍ୱିକୋଡ଼ି ଯେ ପୁଣ ।
ବାରମାସି ଖରଚ ଯେ ଗୁରୁଙ୍କ ଭିଆଣ । ୩୩ ।
ଏଣୁକରି ବାର୍ଷିକ ଗୁରୁଙ୍କର ନ୍ୟାଏ ।
ଶିଷ୍ୟ ଯେ ନ ଦେଲେ ଗୁରୁ ବ୍ରହ୍ମସ୍ୱ ବୁଡ଼ାଏ । ୩୪ ।
ବ୍ରହ୍ମ ଅଂଶ ଗୁରୁ ଅଂଶ ରାଜ ଅଂଶ ଜନ ।
ଏ ଜନଠାରେ ବର୍ଣ୍ଣାସ ଚଣ୍ଡେ ଅବ ଯେନ । ୩୫ ।

---

୨୬—୧ ବାରମାସ ଗଣ୍ଡି (ଖ); ୨୭—୨ ବଡ଼ ସନ୍ଧି ଏତ (ଖ);
୨୮—୨ ଗୁରୁ ବ୍ରହ୍ମସ୍ୱରୁ ଶିଷ୍ୟ ହୋଇବାକ ପାର (ଖ);

ଜୀବନ ରଖଣ ସାନ୍ତୁ ଦେଇଣ ଯେ ଅନ୍ନ ।
ଜୀବକୁ ଉଦ୍ଧରେ ଗୁରୁ ମନ୍ତ୍ର ଦେଇ କର୍ଣ୍ଣେ । ୩୬ ।
ରାଜସ୍ଥାନବଳେ ସିନା ମନ ହୋଏ ସ୍ଥିର ।
ସଂସାରେ ଅନନ୍ତ ସାର ଏ ଧନ ଯେ ନର ।୩୭।
ଏଣୁକରି ଗୁରୁଙ୍କର ଦକ୍ଷିଣାଟି ଦେବ ।
ଗୁରୁପାଦେ ଏଣୁକରି ତନ ମନ ଥିବ ।୩୮।
ବାର ଯେ ଦ୍ୱିଗୁଣ ହୋଏ ଚବିଶ କାହାଣ ।
ତଦଙ୍କ ଲେଖିଲେ ହୋଏ ଦ୍ୱାଦଶ କାହାଣ ।୩୯।
ତଦଙ୍କ ଲେଖିଲେଣ ଯେ ଛଅ ପୁଣ ହୋଏ ।
ତଦଙ୍କ ଲେଖିଲେ ଧନ କାହାଣରେ ରହେ ।୪୦।
ପୁଣ ସ୍ୱର୍ଲୋକ ଏହା କରିବା ଭିଆଣ ।
ଦେଢ଼ ଯେ କାହାଣ ତହୁଁ ଅଙ୍କ ହୋଏ ଜାଣ ।୪୧।
ତଦ ଅଙ୍କ ଦ୍ୱାଦଶ ପଣ ଯେ ପରମାଣ ।
ତଦ ଅଙ୍କ ଛଅ ପଣ କଲେକ ଭିଆଣ ।୪୨।
ଏରୂପେଣ ବାରମାସି ଖରଚକୁ ଦେଇ ।
ସେବାଟି କରିବ ତାଙ୍କୁ ବନସ୍ଥ ଯେ ହୋଇ ।୪୩।
ଏରୂପେଣ ଗୁରୁସେବା କଲେ ମନ୍ତ୍ର ପାଏ ।
ନଷ୍ଟଲେ ନଷ୍ଟନା ହୋଏ ଗୁରୁସ୍ୱ ବୃଡ଼ାଏ ।୪୪।
ନାରାୟଣ କହିଲେ ଯେ ମୁନିଙ୍କି ସତ୍ୟରେ ।
ରାଘବ କହିଲେ ପୁଣ ତ୍ରେତୟା ଯୁଗରେ ।୪୫।
ନାରଦ କହିଲେ ପୁଣ ଦ୍ୱାପର ଯୁଗର ।
ବ୍ରହ୍ମଗୁରୁ କହିଲେ ଯେ ଏ କଳି ଯୁଗର ।୪୬।
ରାମାନନ୍ଦ, ନିମାନନ୍ଦ ଅନନ୍ତ ଏ ଦୁଇ ।
ମାଧ୍ୱାଚାର୍ଯ୍ୟ, ବିଷ୍ଣୁସ୍ୱାମୀ ବ୍ରହ୍ମଗୁରୁ କହି ।୪୭।

---

୪୫—୨ ପୁଣ ସକଳ ଜନରେ (କ);

ଏ ଗୃହ ଗୁରୁ ଯେ କଲେ ବାର୍ଷିକ ପୁଣ ।
କଳିଯୁଗେ ହରିନାମ ଶୁଣିଲେ ଶ୍ରବଣ ।୪୮।
ଧନ ଯେ ବସନ ଘୃତ ଦୁଗ୍ଧ ଯେ ବ୍ୟଞ୍ଜନ ।
ଆସନ ତୃଣ ଲବଣ ଫୁଲ ସେ ଚନ୍ଦନ ।୪୯।
କାଠ ହାଣ୍ଡି ଲେଖିକର ଦ୍ୱାଦଶ ଯେ ବେଣ୍ଟ ।
ପାଞ୍ଚ ଊଣା ଶଏରୁ ଯେ ପାଏ ଲେଖା ଯେଣ୍ଟ ।୫୦।
ପାଇଲେ ଶଏ କାହାଣ ଦେବ ପୁଣ ଶିଷ୍ୟ ।
ତଦପାସ୍ତେ ଚରଣ ଯେ ଲେଖାରେ ପ୍ରବେଶ ।୫୧।
ମୁକ୍ତବନ୍ଧ ବସ୍ତ୍ରଗଣ ଚଇତନ୍ୟ ହରି ।
ଉଆସନ୍ନ ଗୁଆଘୃତ ଭୋଜନ ଯେ କରି ।୫୨।
କାମିନୀ କୋଳ ଭେଜଣ ମଦ୍ୟମାଂସ ଦୂର ।
ହରେକୃଷ୍ଣ ମନ୍ତ୍ରଜପ ପାପ ହେବ ଦୂର ।୫୩।
ଶଏ ବାର୍ଷିକ ଦେବ ଗୁରୁଙ୍କ ଦକ୍ଷିଣା ।
ନ ରୁଚଇ ମନକୁ ଏ ମନ ଅଫେରୁଣା ।୫୪।
ନିତ୍ୟାନନ୍ଦ କହେ ଖଇ କଳିର ଏ ନର ।
ମାଛ ମାଂସ କାମିନୀ ଏ ନ କରିବେ ଦୂର ।୫୫।
ଗୁରୁଙ୍କୁ ଦକ୍ଷିଣ ଏତ୍ତୁ ନ ପାରିବେ ଦେଇ ।
ଉଶ୍ୱାସ କହିବା ନାମ ଭଜିବେ ସେ ତେଇଁ ।୫୬।
ବାରମାସେ ବାରବୋଡ଼ି ଦେବେ ବାର୍ଷିକ ।
ବାରଦିନ ମାସରେ ଯେ ରଢ ଆବଶ୍ୟକ ।୫୭।
ବାର ଯେ ପୂର୍ଣ୍ଣିମୀ ବାର ସଙ୍କରାନ୍ତି ଲେଖି ।
ବାର ଏକାଦଶୀ ବାର ଅମାବାସ୍ୟା ଯେ ରଖି ।୫୮।
ଏତେଦିନ ମଦ୍ୟ ମାଂସ ନ ଖାଇବେ ପୁଣ ।
ଅଲେଖ ଅଲେଖ ଛାଡ଼ିବେ ହେ ଭାଇ କୃଷ୍ଣ ଶୁଣ ।୫୯।

---

୫୬—୨ ଅବହେଳ (କ), ଅମିହେଳ (ଖ),

ତ୍ରିକନାଥ ବୁଝିଲେ ସେ କପାଳ ଖାଇବେ ।
ଶ୍ରୀମୂର୍ତ୍ତି ପୂଜା କଲେଣ ବେହାରେ ଘୁଞ୍ଚିବେ ।୨୦।
ଗୃହସ୍ଥଙ୍କ ବାଇର ସେ ନବୀଆର କଥା ।
ଶ୍ରୀଚରଣ ଦାସ ଗୁରୁ ହସ୍ତେ ମୋର ମଥା ।୨୧।
ଯାହା ମୋତେ ବୁଝାଇଲେ କହିଲୁ ଗ୍ରନ୍ଥରେ ।
ରାମଚନ୍ଦ୍ର ଦ୍ୱାଦଶ ସେ ଚନ୍ଦ୍ର ଦାସ ତୋରେ ।୨୨।
ବାରଟିଆ ଗୋପାଳ ହେ ମୁକୁନ୍ଦ ପବନ ।
ମଦ୍ୟମାଂସ ଛଡ଼ାଇଲୁ ଗୋପାଳ ସେ ଜନ ।୨୩।
ମଦ୍ୟ ମାଂସଖିଆ ଜନ ଯାହାସେ ନ ବର ।
ପୁରାଣେ ନିଷେଧ କୃଷ୍ଣ ଖେଚର ବାହାର ।୨୪।
ବଦରିକାନାଥ, ରାମନାଥ, ଜଗନ୍ନାଥ ।
ଗୋପୀନାଥ, ଲୋକନାଥ, ବିଶ୍ୱନାଥ ତ ।୨୫।
ବଇଦ୍ୟନାଥ, ରଙ୍ଗ ସେ ନାଥ ପୁଣ କହ ।
ମଥୁରାନାଥ, ଦ୍ୱାରକାନାଥ ସେ ଅଟଇ ।୨୬
ଅନନ୍ତନାଥ ସେ ପୁଣ ଚୈତନ୍ୟ ପ୍ରଭୁ ତ ।
ଏତେଠାରେ ଅଶୁଚ ସେ ଦ୍ରବ୍ୟ ବିବର୍ଜିତ ।୨୭।
ଅନନ୍ତ କେ ତି ବୈଷ୍ଣବ ସଙ୍ଗରେ ନିଷେଧ ।
କୃଷ୍ଣକ୍ଷେତ୍ର ନିଷେଧ ହେ ମନକର ବୋଧ ।୨୮।
ଦୀନ ଅଚ୍ୟୁତର କଥା ହୃଦରେ ଘେନିଣ ।
ଗୋପାଳ ଲୋକେ ତଣବ ଏ ଓଡ଼ଗ୍ରନ୍ଥେଣ ।୨୯।
ଏହୁ ଗୁରୁଭକ୍ତଗୀତା ସେ ପଢ଼ିବ ନିତ ।
ମନ୍ତ୍ର ସେ ସିଦ୍ଧ ହେବ ବଢ଼ିବ ଭଗତ ।୩୦।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଷଡ଼ବିଂଶ ଗ୍ରନ୍ଥ ॥

—:o:—

# ସପ୍ତବଂଶ ଛାନ୍ଦ

ଶୁଣ ଆହେ ଲୋହରାମ ହରେ ରାମ ଦୁଇ ।
ହରେ ରାମ ହରେ ରାମ ମନ୍ତ୍ର ସେ ଅଛଇ ।୧।
ରାମ ରାମ ହରେ ହରେ ସୁମରଣ କର ।
ସେ ସେ ରାମ ସେ ସେ ହରେ ମନ୍ତ୍ରଙ୍କ ବସ୍ତୃର ।୨।
ରାମ ରାମ ହରେ ହରେ ହରାଦଟି କନ୍ଧ ।
କୃଷ୍ଣାଦ ବୀଜ ଗ୍ରହିଲେ ହରାଦ ସେ ହୋଇ ।୩।
ଷଟ୍‌କୋଣ ଧରଣ ଏ ବଚନ ଅକ୍ଷର ।
ଛଡ଼ ବୀଜ ବସାଇବ ମନ୍ତ୍ରର ମଧ୍ୟର ।୪।
ଯନ୍ତ୍ରରେ ରଖିବ ମନ୍ତ୍ର ନାମ ଦେବାବେଳେ ।
କଳା ନୀଳ ବସ୍ତ୍ର ଏକ ବେଢ଼ାଇ ମଣ୍ଡଳେ ।୫।
ଶ୍ୱେତ ପୂଜାବିଧି ଦେଇ ଶିଷ୍ୟଙ୍କୁ ସେ କହେ ।
ତେବେ ସେ ଶିଷ୍ୟ ହୃଦରୁ ଗ୍ରହିବ ସଂଶୟେ ।୬।
ହ ଅକ୍ଷ ଓଁକାରେ ଯୋଇବ ରେ କ ମଧ୍ୟରେ ।
ମ ଅକ୍ଷ ବିନ୍ଦୁରେ ଦେଲେ ସ କୁ ଅର୍ଦ୍ଧରେ ।୭।
ଆଉ ଯେଉଁ ଦୁଇଅକ୍ଷର ଅଟେ ତାର ସାକ୍ଷୀ ।
ଯନ୍ତ୍ର ମନ୍ତ୍ର ବିଧିରେ ସେ ଶିଷ୍ୟ ହୋଏ ସୁଖୀ ।୮।
ଲୋହରାମ ଦାସର ସେ ଏକ ସ୍ତୁତି ଶୁଣ ।
ଲେଖନ ପୁଜାବସନ ନ ଥିବ ଯେ ଜଣ ।୯।
ସେ ଜନ କେମନ୍ତ ପାଏ ହରିନାମ କଣ୍ଠେ ।
ଏ କଥା କେମନ୍ତ ବିଧି ପାଇବା ସେ ଆନ ।' ୭

---

୮—୧ ସେ ସେ ଦୁଇ ଅକ୍ଷର ସେ (କ);

ମକର ଖେଳ କରିବ ତଣ୍ଡୁଳ ଯେ ଦନ୍ଧ ।
ଦ୍ୱାଦଶ ଆଙ୍ଗୁଳ ସୂତା ହସ୍ତରେ ବେଢ଼ାଇ ।୧୧।
ତୁଳସୀ ତେମ୍ପ ଲେଖନ କରିବ ଯେ ପୁଣ ।
ନଙ୍ଗନ ଶିଷ୍ୟଙ୍କୁ ଗନ୍ଧ ଗୁରୁ କରେ ପୁଣ ।୧୨।
ଯେଉଁ ବୀଜ କୃଷି କର ସେ ବୀଜ ଅମଳ ।
ଇକ୍ଷୁ ସଙ୍ଗେ ହୋଇବ କି ଶୁଆ ବୀଜଫଳ ।୧୩।
ବସନ ଫଳ ସଙ୍ଗତେ କୋଳଥ କି ସରି ।
ସୁବର୍ଣ୍ଣ ପିତ୍ତଳ ଦୁଇ ସରି ନକ କରି ।୧୪।
ସାଧୁ ସଙ୍ଗ କରି ପୁଣ ଅସାଧୁ କି ହୋଏ ।
ନିଧନ ଧନ ଯେମନ୍ତ ସଂସାରରେ ରହେ ।୧୫।
ଧନବନ୍ତ ସଙ୍ଗେ ପୁଣ ନିଧନ ଯେ ରହେ ।
ଗୁରୁ ଯେ ସାଧୁତ ମତ ଦସ୍ତା ତାକୁ ହୋଏ ।୧୬।
ନଙ୍ଗନକୁ ଗୁରୁ ହଂସ ମନ୍ତ୍ର ଯେ ନ ଦେବ ।
ସେ ଶିଷ୍ୟ କେମନ୍ତେ ପୁଣ ଗନ୍ଧ ଯେ ପାଇବ ।୧୭।
ପାଇଲହେ ଲୋହରାମ ସନ୍ଦେଶ ବିଗୁର ।
ଅଚ୍ୟୁତ ଉଦ୍ଧାର କର ଏ ଭବ ସାଗର ।୧୮।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ସପ୍ତବିଂଶ ଖଣ୍ଡ ।



# ଅଷ୍ଟାବିଂଶ ଛାନ୍ଦ

ଶୁଣ ଆହେ ଚନ୍ଦୀରାମ ଶ୍ରୀକୃଷ୍ଣର କଥା
ରାମ ନାମ ସୁମରନ୍ତେ ଛାଡ଼ ମନବ୍ୟଥା ।୧।
ରାମ ହରେ ରାମ ହରେ ସୁମରିବ ମନ ।
ରାମ ରାମ ହରେ ହରେ ଚତୁର୍ବର୍ଣ୍ଣ ଘେନ ।୨।
ଯେ ସେ ରାମ ସେ ସେ ହରେ ସୁମରଣା କର ।
ରାମ ରାମ ହରେ ହରେ ବତିଶ ଅକ୍ଷର ।୩।
କୃଷ୍ଣ ବୀଜ ଛାଡ଼ିଲେଟି ରାମାଦ୍ଧ ଅଟଇ ।
ହରାଦ୍ଧ ରାମାଦ୍ଧ କୃଷ୍ଣ ନିବିଧିଟି କହ ।୪।
ଷଟ୍‌କୋଣ ବସାଇବ ହରେ ରାମ ଯେ ସେ ।
ସନ୍ଧିବନ୍ଧ ବୁଝାଇବ ଉତ୍ତମ ଯେ ଶିଷ୍ୟେ ।୫।
ହକାର ଓଁକାରେ ଥୋଇ ସକାର ଅର୍ଦ୍ଧରେ ।
ମକାର ବିନ୍ଦୁରେ ଥୋଇ ବ ରେ ସେ ଓଁକାରେ ।୬।
ନେ-ସ୍ନେ-ବ୍ରୁ ଅର୍ଦ୍ଧାଙ୍ଗେ ଦେଲେ ମନ୍ତ୍ର ତନ୍ତ୍ର ତୁଲ ।
ସନ୍ଧିବନ୍ଧ ବୁଝାଇଲେ ଶିଷ୍ୟ ହେତୁ ଭଲ ।୭।
ବେଦ ବପ୍ର ସର୍ବ ତନ୍ତ୍ରେ ଦେବାଇ ଯେ ପୁଣ ।
କୃଷ୍ଣମନ୍ତ୍ର ଶିକ୍ଷାଠାରେ ଯୋଗ ଦେବ ଜାଣ ।୮।
ଏକ ସ୍ତୁତି କରୁଅଛୁ ଚନ୍ଦୀ ରାମ ଦୁଇ ।
ନାମ ନ ଘେନନ୍ତି ପ୍ରାଣୀ କ ଦୋଷ ଅଛଇ । ୯ ।
ଅଚ୍ୟୁତ ଦାସର କଥା ଶୁଣ ବାବୁ ସୁତ ।
ଦଶମାସ ଗର୍ଭେ ଜାତ ହୋଏ ଯେଉଁ ପୁତ୍ର । ୧୦ ।

---

୭—୧ ହକାରେ ଥୋଇ (କ) ।

ଅଷ୍ଟଦଳ ଭିତରେଣ ନବଦଳ ହୋଇ ।
ନବଦଳ ହୋଇଲେ ଯେ ଦୀକ୍ଷା କର୍ଣ୍ଣେ କହ୍ନ । ୧୧ ।
ସେହିକ୍ଷଣି ସେହୁ ପୁଣ ମୃତ୍ୟୁ ପଦ ପାଏ ।
ଶ୍ରୀବନ୍ତ ଲୋକର ଘରେ ଜାତ ପୁଣ ହୋଏ । ୧୨ ।
ଜନ୍ମ ହୋଏ ବଇଷ୍ଣବ ଘରେ ପୁଣେ ଯାଇ ।
ପୂର୍ବର ବାସନା ଯେଣୁ ଶ୍ରୀକୃଷ୍ଣ ଘୋଷଇ । ୧୩ ।
ଦୀକ୍ଷା ଯେଣୁ ରହେ ପଦ ନୋହଇ ମରଣ ।
ତାହାର ସୁଗତି ହୁଏ ଭଗତି କାରଣ । ୧୪ ।
ଅଣଦୀକ୍ଷା ବାଳକକୁ ଗୃହେ ରଖିଥିଲେ ।
ଶ୍ମଶାନ ଅଟେ ସେହୁ ଗୃହରେ ବସିଲେ । ୧୫ ।
ତାକୁ କୋଳେ ଧରିଥିଲେ ଅଷ୍ଟରଣୀ ଜାଣ ।
ନବଦଳେ ହରିନାମ ଏଣୁ ପରମାଣ । ୧୬ ।
ନଳିନୀଦଳରେ ନୀର ପରାୟେ ଶରୀର ।
ଶ୍ରବଣେ ବାରେକ ହରିନାମ ହେତୁ କର । ୧୭ ।
ନବଦଳଠାରୁ ବାରବରଷ ଧରିବ ।
ଏଥିମଧ୍ୟେ ବାଳକକୁ ଉପଦେଶ ଦେବ । ୧୮ ।
ନବଦଳେ ଦେବ ଦୀକ୍ଷା ତିନି ବରଷରେ ।
ପାଞ୍ଚ ଯେ ବରଷେ ଦେବ ସାତ ବରଷରେ । ୧୯ ।
ନବ ଯେ ବରଷେ ଦେବ ଦ୍ୱାଦଶ ବରଷ ।
ନାମର ବିଧି ଅଟଇ ଏମନ୍ତ ଯେ ରସ । ୨୦ ।
ଦକ୍ଷିଣ ଦିଗକୁ ବୃନ୍ଦି ନାମ ଦେଲେ ପୁଣ
ଗୁରୁଘରେ ଶୋକଜାତ ହୋଇବ ମରଣ । ୨୧ ।
ନୈର୍‌ତ କୋଣକୁ ବୃନ୍ଦି ନାମ ଯେବେ ଦେଇ ।
ନଭସ୍ୱେ ହୁଅଇ ଏଥି ଦୋଷ କିଛୁ ନାହିଁ । ୨୨ ।
ପଶ୍ଚିମ ଉତ୍ତମ ହୋଇ ବାୟବ୍ୟରେ ଭଲ ।
ଉତ୍ତରେ ଗତି ଲଭନ୍ତି ଈଶାନ୍ୟେ ସୁଫଳ । ୨୩ ।
ସର୍ବ ସିଦ୍ଧି ହୁଅଇ ଯେ ପର୍ବ ଦିଗେ ପୁଣେ ।
ଅଗ୍ନିକୋଣେ ନିଷେଧ ଯେ ଏକଥା ପ୍ରମାଣେ । ୨୪ ।

ବୈଶାଖ ମାସରେ ଦେଲେ ଭଗତ ପ୍ରାପତ ।
ଜ୍ୟେଷ୍ଠମାସେ ମୃତ୍ୟୁ ହେବ ଏକଥା ନିସ୍ଚିତ । ୨୬ ।
ଆଷାଢ଼ ମାସରେ ଦେଲେ ଶମ ଭକ୍ତ ହୋଇ ।
ଶ୍ରାବଣ ମାସରେ ଦେଲେ ସର୍ବ ସିଦ୍ଧି ପାଇ । ୨୬ ।
ଭାଦ୍ରବ ମାସରେ ଦେଲେ ଦୟା ଶାନ୍ତ ଚିତ୍ତ ।
ଅଶ୍ୱିନେ ରତ୍ନ ସମ୍ପଦ ହୁଅନ୍ତି ପ୍ରାପତ । ୨୭ ।
କାର୍ତ୍ତିକରେ ମହାଲକ୍ଷ୍ମୀ ପରାପତ ହୋଇ ।
ମାର୍ଗଶୀରେ ଧନ ଜନ ସେ ଜନ ଲଭଇ । ୨୮ ।
ପୌଷେ ଶତ୍ରୁ ହାନି ହୋଏ ପଡ଼େ ଅପବାଦ ।
ମାଘରେ ଦୀକ୍ଷା ଘେନଲେ ବଢ଼ଇ ସମ୍ପଦ । ୨୯ ।
ସର୍ବସିଦ୍ଧି ଲଭନ୍ତି ଯେ ଫଗୁଣ ଶୁକଳ ।
ଚଇତରେ ସର୍ବହାନି ନାଶ ଯାଏ କୁଳ । ୩୦ ।
ଶୁକଳ ପକ୍ଷରେ ଦେବ ପୁରୁଷଙ୍କୁ ପୁଣ ।
ହରେକୃଷ୍ଣ ରାମ ଉନ ବୀଜ ଯେ ଘୃଣିଣ ୩୧ ।
କୃଷ୍ଣପକ୍ଷେ ଦେବ ଦୀକ୍ଷା ସ୍ତ୍ରୀ ଜନବୃନ୍ଦ ।
ରାଧେ କୃଷ୍ଣ ଶ୍ୟାମ ବୋଲି ଛାଡ଼ ବୀଜ କନ୍ଦ । ୩୨ ।
ଦୀନ ଅଚ୍ୟୁତର ଦୀକ୍ଷା ମନେ ହେତୁ କର ।
ଚଉଷଠି ଭଗତେ ତୁମ୍ଭେ ସୁହୃଦ ଆମ୍ଭର । ୩୩ ।
ଏହି ଗୁରୁଭକ୍ତି ଗୀତା ଯେ ବୁଝିବ ମନ ।
ସର୍ବ ଶାସ୍ତ୍ର ବୀଜ ଏହି ହେଜି ମନେ ଘେନ । ୩୪ ।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଅଷ୍ଟାବିଂଶ ଛାନ୍ଦ ॥



# ଊନବିଂଶ ଛାନ୍ଦ

ଶୁଣହେ ମୁକୁନ୍ଦ ଦାସ ଉପଦେଶ ବାଣୀ ।
ଦାସ ଯେ ଅନନ୍ତ ତୁମ୍ଭେ ଅଛ ଦୁଇ ପୁଣି । ୧ ।
ଗୋମୟ ଛିଞ୍ଚିଣ ଭୂମି ଖଣ୍ଡେ ଲିପି ଦେବ ।
ଦଣ୍ଡବତ ବନ୍ଧ କରି ଚକ୍ରକୁ ଲେଖିବ । ୨ ।
ଅଷ୍ଟକୋଣ ଧରିଣ ତ୍ରିକୋଣ ବସାଇବ ।
ଏକ ଏକ କୋଣ ବେନି ଭାଗ ରଖିଥିବ । ୩ ।
ଉପରେ ରଖିବ ଏକ କୋଣ ପୁଣ ନେଇ ।
ମଧ୍ୟରେ ଛନ୍ଦିବ ଅଷ୍ଟକୋଣ ପୁଣ ଚଢ଼ି । ୪ ।
ବେନି କୋଣେ ବସାଇବ ସ୍ୱରଇଁ ଶୀରଇଁ ।
ମଧ୍ୟ କୋଣେ ବସାଇବ ଅଧର କାଳଇଁ । ୫ ।
ଗୋପୀଜନ ବଲ୍ଲଭାୟ ଅଷ୍ଟକୋଣେ ବସେ ।
ନ ମ ଦୁଇ ଅକ୍ଷର ଯେ ତ୍ରିକୋଣେ ପ୍ରକାଶେ । ୬ ।
ହକାର ଶିଷ୍ୟର ଧ୍ୟାନ ଗୁରୁ ସକାରରେ ।
କକାରକୁ ଧ୍ୟାନ କଲେ ଧ୍ୱଂସ ପାପ ହରେ । ୭ ।
ଏ ଚକ୍ର ଆପଣା ଗୁରୁ ଅଙ୍ଗେ ଯେ ଧରିବ ।
ଅଶ୍ୱତ୍ଥ ତୁଳସୀ ବେନି ଠାବରେ ବସିବ । ୮ ।
ନୋହିଲେ ଉତ୍ତମ ଗୃହ ଥିବ ଯେଉଁଠାରେ ।
ନାମ ଦେବ ଶିଷ୍ୟକୁ ଯେ ଏ ତିନି ଠାବରେ । ୯ ।
ହଳଦୀ ଏକ ବସନ ପିନ୍ଧିଥିବ ଶିଷ୍ୟ ।
ହଳଦୀ ବସନ ଏକ କାନ୍ଧରେ ଥିବଇ । ୧୦ ।
ହରିଦ୍ରା ବସନ ବେନି ଗୁରୁଙ୍କର ପାଇଁ ।
ଶ୍ରୀଫଳ ହରିଡ଼ା ହସ୍ତେ ଅଞ୍ଜଳି ପୂରାଇ । ୧୧ ।

ଦଣ୍ଡବତ କରନ୍ତି ଯେ ହସ୍ତ ହୋଇଥିବ ।
ଗୁରୁ ପୁଣ ଆଜ୍ଞା ଦେଇ ବାମେ ବସାଇବ । ୧୨ ।
ବାରଥର ତୁଳସୀର ପାଣି ସିଞ୍ଚ ଶିର ।
ମନ୍ତ୍ର ସ୍ନାନ ମନ୍ତ୍ର ଗୋଟି ସୁମର ମନର । ୧୩ ।
ଭୂତ ଶୁଦ୍ଧି କରବ ଯେ ଗୁରୁଶିଷ୍ୟ ଅଙ୍ଗ ।
ଛେଦବ ଯେ ଗୁରୁ ପାପ ସମାଧିର ସଙ୍ଗ । ୧୪ ।
ମନ୍ତ୍ରବଳେ ଶିଷ୍ୟ ପାପ ଛେଦନ କରାଇ ।
ଶିଷ୍ୟ ପୁଣ ଯାଇ ବସ୍ତ୍ର ଜଳରେ ମିଶାଇ । ୧୫ ।
ଗୁରୁ ଅଙ୍ଗେ ପାପ ପୁଣ ହୁଅଇ ପ୍ରବେଶ ।
ଅଣାକ୍ଷର ଏକାକ୍ଷର ଷୋଡ଼ଶ ଯେ ଘୋଷ । ୧୬ ।
ନାରାୟଣ ପଞ୍ଚାକ୍ଷର ଭଜନ ଯେ କଲେ ।
ଗୋହତ୍ୟା କାଟଇ ଅଣାକ୍ଷର ଜପ କଲେ । ୧୭ ।
ଏକାକ୍ଷର ଜପ କଲେ ବ୍ରହ୍ମହତ୍ୟା ଦୂର ।
ଷୋଡ଼ଶ ଜପିଲେ ମାତୃ ହରଣରୁ ପାର । ୧୮ ।
ଭଗ୍ନୀ ହରଣରେ ପାପ ନାରାୟଣେ ନାଶ ।
ପଞ୍ଚାକ୍ଷରେ ସୁରାପାନ ହୁଅନ୍ତ ଯେ ଧ୍ୱଂସ । ୧୯ ।
ଅଷ୍ଟକୋଟି ପାପେ ଏହୁ ପଞ୍ଚ ପାପ ସାର ।
ଏ ପାପେ ଯହିଁ ଲୁଚନ୍ତ ଆଉ କେଉଁ ଗ୍ରର । ୨୦ ।
ଦ୍ୱାଦଶ ପୁରୁଷ ଗୁରୁ ସୁମରଣା କଲେ ।
ଦ୍ୱାଦଶ କୋଟି ପାପ ଯେ ନ ରହେ ଶରୀରେ । ୨୧ ।
ଅଗ୍ନିକି ଦେଖିଲେ ଯେହ୍ନେ ତମ ଦୂରେ ଯାଇ ।
ସୂର୍ଯ୍ୟ ପ୍ରକାଶିଲେ ଯେହ୍ନେ ରାତ୍ର ଭୟ ନାହିଁ । ୨୨ ।
ଯନ୍ତ୍ର ଜ୍ୟୋତ ସମାଧିରେ ପାପ ହୋଏ ନାଶ ।
ସର୍ବ ମନ୍ତ୍ର ସାର ପଞ୍ଚ ମନ୍ତ୍ର ଯେ ପ୍ରକାଶ । ୨୩ ।
ଗ୍ରନ୍ଥା ସେ ଅବାଡ଼ ନାମ ଘୋଷୁଣ ଯେ ଥିବ ।
ଏତେ ଗୁଣ ଘୋଷି କରି ଶିଷ୍ୟ ଯେ କରିବ । ୨୪ ।

ଏତେ ଗୁଣ ନ ଘୋଷିଣ ଶିଷ୍ୟ ହେବେ କର ।
ପରଲୋକେ ନ ତରଇ ଇହଲୋକେ ମର । ୧୫ ।
ବାର ଯେ ପୁରୁଷ ଗୁରୁ ଦଣ୍ଡବତ ଶିଷ୍ୟ ।
ନାମ ଯେ କହିବ ବାର ଅର କର୍ଣ୍ଣ ଦେଶ । ୧୬ ।
ଜମାନନ୍ଦ ବୈଷ୍ଣବ ଯେ ତେବେ ସେ ହୋଇବ ।
ଅଚ୍ୟୁତ ବଚନ ବାର ଗୋପାଳ ଧରିବ । ୧୭ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଊନବିଂଶ ଛନ୍ଦ ।



# ତ୍ରିଂଶ ଛାନ୍ଦ

ଚବଶ ଗୋପାଳ ସ୍ତୁତି କରୁଛୁଁ ଗୋସାଇଁ ।
ଶ୍ୟାମ ଭ୍ରଥ ଧର୍ମ୍ମ ବିଷ୍ଣୁ ବନ ପଞ୍ଚକଇ । ୧ ।
ରାମ ଶ୍ୟାମ ନିରଞ୍ଜନ ନନ୍ଦ ଯେ ଦକ୍ଷିଣ ।
ମୁରାରି କନ୍ଦ ମିଶିଣ ଦ୍ୱାଦଶ ଯେ ଜଣ । ୨ ।
ଶ୍ୟାମ ଭ୍ରଥ ଦ୍ୱାଦଶ ଯେ ଆବର କହନ୍ତି ।
ହୃତ୍‌ଥାନ ପବନ ଯେ ଅନନ୍ତ ତିନ ମୂର୍ତ୍ତି । ୩ ।
ମୁକୁନ୍ଦ ଗୋବିନ୍ଦ ଯେ ଆନନ୍ଦ ତିନି ଜଣ ।
ବସ୍ତ୍ର ଯେ ଯାଦବ ବେନି ସୁଦାମ ଯେ ପୁଣ । ୪ ।
ବାଳକ ଯେ ବୃନ୍ଦାବନ ମଥୁରା ଯେ କହୁ ।
ଗୁରୁ ଯେ ପ୍ରଣାମ ବିଧି କେମନ୍ତ ଅଟଇ । ୫ ।
ଶୁଣ ଅହେ ଗୋପସୁତ ଅଚ୍ୟୁତ ବଚନ ।
ଗୁରୁ ଉପଦେଶ କଥା ଅତି ଯେ ଗହନ । ୬ ।
ପ୍ରଥମେଣ ମହାଶୂନ୍ୟ ଅଟଇଟି ଶୁଣ ।
ତହୁଁ ଶିଷ୍ୟ ହୋଇଲେ ଯେ ତତ୍ତ୍ୱ ବ୍ରହ୍ମପୂର୍ଣ୍ଣ । ୭ ।
ତତ୍ତ୍ୱ ବ୍ରହ୍ମଶିଷ୍ୟ ହେଲେ ପରବ୍ରହ୍ମ ପୁଣି ।
ପରବ୍ରହ୍ମ ଶିଷ୍ୟ ଯେ ହୋଇଲେ ବ୍ରାହ୍ମ ଶୁଣି । ୮ ।
ବ୍ରହ୍ମ ତହୁଁ ଶିଷ୍ୟ ପୁଣ ବୀଜ ଯେ ହୋଇଲେ ।
ବୀଜ ତହୁଁ ଓଁକାରୁ ଯେ ଶିଷ୍ୟ ଦୀକ୍ଷା ନେଲେ । ୯ ।
ଓଁ କାର ଠାବରୁ ଶିଷ୍ୟ ଅରବ୍ରହ୍ମ ହୋଇ ।
ଅରବ୍ରହ୍ମ ଠାରୁ ଶିଷ୍ୟ ଆଦ୍ୟ ମୂଳ ପାଇ । ୧୦ ।

---

୯—୧ ବ୍ରଜ ଯେ (ଖ); ୯—୨ ବ୍ରଜ ତହୁଁ (ଖ) ଓଁ କାର ଯେ (କ, ଖ,);

ଆଦିମୂଳ ତହୁଁ ଶିଷ୍ୟ ହୋଇଲେ ପ୍ରକୃତ ।
ପ୍ରକୃତ ଠାବରୁ ଶିଷ୍ୟ ବହ୍ନି ବହ୍ନ ହୋନ୍ତି । ୧୧ ।
ବହ୍ନି ବହ୍ନଠାରୁ ଶିଷ୍ୟ ବ୍ୟୋମ ଯେ ହୋଇଲେ ।
ବ୍ୟୋମଠାରୁ ପ୍ରଣବ ଯେ ଶିଷ୍ୟ ଦୀକ୍ଷା ନେଲେ । ୧୨ ।
ପ୍ରଣବ ଠାବରୁ ଶିଷ୍ୟ ମହତତ୍ତ୍ୱ ହୋଇ ।
ମହତତ୍ତ୍ୱ ଶିଷ୍ୟ ଆଦି ନାରାୟଣ କହି । ୧୩ ।
ଆଦି ନାରାୟଣ ଶିଷ୍ୟ ସନକାଦି ହେଲେ ।
ସନକାଦିଠାରୁ ଦୀକ୍ଷା ନାରଦ ଘେନଲେ । ୧୪ ।
ନାରଦ ଠାବରୁ ବ୍ୟାସମୁନି ଶିଷ୍ୟ ହୋଇ ।
ବ୍ୟାସମୁନି ଠାରୁ ଗଉତମ ମୁନି ପାଇ । ୧୫ ।
ଗଉତମମୁନି ଶିଷ୍ୟ ଜାଲାମ୍ବର ମୁନି ।
ଜାଲାମ୍ବରମୁନି ଶିଷ୍ୟ ନର୍ବାଣ ଯେ ଘେନି । ୧୬ ।
ନର୍ବାଣ ମୁନିଙ୍କଠାରୁ କୃଷ୍ଣ ମୁନି ଶିଷ୍ୟ ।
କୃଷ୍ଣମୁନି ଗୋପାଳ ମୁନିଙ୍କି ଉପଦେଶ । ୧୭ ।
ଗୋପାଳ ମୁନିଙ୍କ ଶିଷ୍ୟ ଗରୁଡ଼ ଯେ ମୁନି ।
ଗରୁଡ଼ ମୁନି ଠାବରୁ ଶ୍ରୀଧର ମୁନି ଘେନି । ୧୮ ।
ଶ୍ରୀଧର ମୁନିଙ୍କ ଶିଷ୍ୟ ପୁରୁଷୋତ୍ତମ ମୁନି ।
ପୁରୁଷୋତ୍ତମ ଠାରୁ ମହା ଆଚାର୍ଯ୍ୟ ଯେ ଘେନି । ୧୯ ।
ମହା ଆଚାର୍ଯ୍ୟରୁ ବିଷ୍ଣୁ ଆଚାର୍ଯ୍ୟ ହୋଇଲେ ।
ବିଷ୍ଣୁ ଆଚାର୍ଯ୍ୟରୁ ପୁରୁଷୋତ୍ତମ ଯେ ଘେନଲେ । ୨୦ ।
ପୁରୁଷୋତ୍ତମ ଆଚାର୍ଯ୍ୟ ବିଳାସରେ କହି ।
ବିଳାସ ଆଚାର୍ଯ୍ୟ ସ୍ୱରୂପ ଆଚାର୍ଯ୍ୟ ହୋଇ । ୨୧ ।
ସ୍ୱରୂପ ଆଚାର୍ଯ୍ୟ ଶିଷ୍ୟ ମାଧବ ଆଚାର୍ଯ୍ୟ ।
ମାଧବ ଆଚାର୍ଯ୍ୟ ଶିଷ୍ୟ ବଳଭଦ୍ରାଚାର୍ଯ୍ୟ । ୨୨ ।

---

୧୦—୧—ଓଁକାର ଠାବରୁ,

ବଳଭଦ୍ର ଆଚାର୍ଯ୍ୟଙ୍କ ଯେ କଦମ୍ବ ଆଚାର୍ଯ୍ୟ ।
କଦମ୍ବ ଆଚାର୍ଯ୍ୟ ଶିଷ୍ୟ ଶ୍ୟାମ ଯେ ଆଚାର୍ଯ୍ୟ । ୨୩ ।
ଶ୍ୟାମ ଆଚାର୍ଯ୍ୟଙ୍କ ଶିଷ୍ୟ କୃପାଳୁ ଆଚାର୍ଯ୍ୟ ।
କୃପାଳୁ ଆଚାର୍ଯ୍ୟ ଶିଷ୍ୟ ଗୋପାଳ ଆଚାର୍ଯ୍ୟ । ୨୪ ।
ଗୋପାଳ ଆଚାର୍ଯ୍ୟ ଶିଷ୍ୟ କୃଷ୍ଣ ଯେ ଆଚାର୍ଯ୍ୟ ।
କୃଷ୍ଣ ଆଚାର୍ଯ୍ୟଙ୍କ ଶିଷ୍ୟ ଦେବ ଯେ ଆଚାର୍ଯ୍ୟ । ୨୫ ।
ଦେବ ଆଚାର୍ଯ୍ୟର ଶିଷ୍ୟ ସୂର୍ଯ୍ୟଭକ୍ତ ହୋଇ ।
ସୂର୍ଯ୍ୟଭକ୍ତ ଶିଷ୍ୟ ଯେ ଭୂପେନ୍ଦ୍ର ଭକ୍ତ କହୁ । ୨୬ ।
ଭୂପେନ୍ଦ୍ର ଭକ୍ତର ଶିଷ୍ୟ ପଦ୍ମଭକ୍ତ ପୁଣ ।
ପଦ୍ମଙ୍କର ଭକ୍ତ ଶିଷ୍ୟ ତରଭକ୍ତ ଜାଣ । ୨୭ ।
ତରଭକ୍ତଙ୍କର ଶିଷ୍ୟ ରାମଭକ୍ତ ହୋଇ ।
ରାମଭକ୍ତ ବାମନ ଭକ୍ତ ଯେ ପୁଣ ସେହୁ । ୨୮ ।
ବାମନଭକ୍ତଙ୍କ ଶିଷ୍ୟ କୃଷ୍ଣଭକ୍ତ ହେଲେ ।
କୃଷ୍ଣଭକ୍ତ ଗୋପାଳ ଭକ୍ତ ଯେ ଦୀକ୍ଷା ନେଲେ । ୨୯ ।
ଗୋପାଳ ଭକ୍ତଙ୍କ ଶିଷ୍ୟ ଶ୍ରବଣ ଭକ୍ତନ ।
ଶ୍ରବଣ ଭକ୍ତଙ୍କ ଶିଷ୍ୟ ଅଟେ ନମାନୁଜ । ୩୦ ।
ନମାନନ୍ଦଙ୍କର ଶିଷ୍ୟ ତ୍ରିରଙ୍ଗ ଭକ୍ତ ହୋଇ ।
ତ୍ରିରଙ୍ଗ ଭକ୍ତ ଶିଷ୍ୟ ମାଧବଭକ୍ତ ହୋଇ । ୩୧ ।
ମାଧ ଭକ୍ତଙ୍କର ଶିଷ୍ୟ ରାମ ଭକ୍ତ ପୁଣ ।
ରାମଭକ୍ତଙ୍କର ଶିଷ୍ୟ ଗୋପାଳ ଭକ୍ତ ଜାଣ । ୩୨ ।
ଗୋପାଳ ଭକ୍ତଙ୍କ ଶିଷ୍ୟ ବଳଭଦ୍ର କହୁ ।
ବଳଭଦ୍ର ଭକ୍ତ ଶିଷ୍ୟ ଗୋପୀନାଥ ହୋଇ । ୩୩ ।
ଗୋପୀନାଥ ଭକ୍ତ ଶିଷ୍ୟ ଗଙ୍ଗାଭକ୍ତ ହେଲେ ।
ଗଙ୍ଗାଭକ୍ତ ସୁକୁମାର ଭକ୍ତ ଶିଷ୍ୟ ହେଲେ । ୩୪ ।

---

୨୭—୨ ପଦ୍ମଙ୍କର ଭକ୍ତ ଶିଷ୍ୟ କରଭକ୍ତ ଜାଣ (କ);

ସୁକୁମାର ଭଟ୍ଟ ଶିଷ୍ୟ ଶ୍ରୀଭଟ୍ଟ ଅଟଇ ।
ଶ୍ରୀଭଟ୍ଟ ଶିଷ୍ୟ ବାସବ ଇନ୍ଦ୍ରଦେବ କହ୍ତି । ୩୫ ।
ବାସବ ଇନ୍ଦ୍ରଙ୍କ ଶିଷ୍ୟ ହୃଷୀକେଶ ଦେବ ।
ହୃଷୀକେଶ ଶିଷ୍ୟ ନରହରି ବାସୁଦେବ । ୩୬ ।
ନରହରି ବାସୁଦେବ ଶ୍ରୀଚୈତନ୍ୟ ଦେବ ।
ଚଇତନ୍ୟ-ଦେବ ଶିଷ୍ୟ ଶ୍ରୀମାଧବ ଦେବ । ୩୭ ।
ମାଧବେନ୍ଦ୍ର ଦେବ ଶିଷ୍ୟ ଶ୍ରୀଈଶ୍ୱର ଦେବ ।
ଈଶ୍ୱର ଦେବଙ୍କ ଶିଷ୍ୟ ଶ୍ରୀଚୈତନ୍ୟ ଦେବ । ୩୮ ।
ଶ୍ରୀଚୈତନ୍ୟ ଶିଷ୍ୟ ହେଲେ ସାରଙ୍ଗ ଗୋସାଇଁ ।
ସାରଙ୍ଗ ଗୋସାଇଁ ଶିଷ୍ୟ ଶାମ ଘୋଷ ହୋଇ । ୩୯ ।
ଶାମ ଘୋଷଙ୍କର ଶିଷ୍ୟ ରାମକୃଷ୍ଣ ଦାସ ।
ରାମକୃଷ୍ଣଙ୍କଠାରୁ ନବକିଶୋର ଯେ ଶିଷ୍ୟ । ୪୦ ।
ନବକିଶୋରଙ୍କ ଶିଷ୍ୟ ଶ୍ରୀଚରଣ ଗୋସାଇଁ ।
ଶ୍ରୀଚରଣ ଗୋସାଇଁ ଶିଷ୍ୟ ଅଚ୍ୟୁତ ମୁର୍ତ୍ତି । ୪୧ ।
ଅଚ୍ୟୁତଙ୍କର ଶିଷ୍ୟ ହେଲେ ରାମଚନ୍ଦ୍ର ଦାସ ।
ମୁକୁନ୍ଦ ହନୁମାନ ଯେ ପବନ ରାମ ଶିଷ୍ୟ । ୪୨ ।
ଯାଦବ, ଅନନ୍ତ ଯେ ବାଲକ ବୃନ୍ଦାବନ ।
ଗୋବିନ୍ଦ ଛଡ଼ି ହେ ଶୁଣ ଗୁରୁ ଦୀକ୍ଷାମାନ । ୪୩ ।
ଆନନ୍ଦ ସୁଦାମ ମଧ୍ୟ ଅଟ ଭଥକଛ ।
ହରି ନାମ ଭଗତ ଯେ ତୁମ୍ଭଠାରେ ରହି । ୪୪ ।
କହିଲୁ ଗୁପତ ଗ୍ରନ୍ଥ ଶ୍ରୀକୃଷ୍ଣ କରୁଣା ।
ଗୋପ୍ୟ ରଖି ପାଠକୁ ଯେ କରୁଥିବ ଗୁଣା । ୪୫ ।
ବାର ଯେ ଗୋପାଳ ତୁମ୍ଭେ ଅଟ ହେ ପ୍ରଧାନ ।
ତୁମ୍ଭେ ଆରାଧିଲ ହରିନାମ କୀର୍ତ୍ତନ । ୪୬ ।

---

୩୪—୧ କର ଭଟ୍ଟ (କ); ୩୧—ତୁରଭଟ୍ଟ (କ);

ଷୋଳ ଯେ କଣ୍ଠାଳ ସିଂଘା ତର୍ଦ୍ଦଣୀ ଯେ କସ ।
ଚନ୍ଦ୍ରଚୂଳ କଠାକ୍ଷ ଯେ ହୃଦେ ଥିବ ବେଶ । ୪୭ ।
ଏ ବେଶ ଧରଣ ତୁମ୍ଭେ ହର ନାମ ଗାଇ ।
ଅଚ୍ୟୁତ ପଥ ଧାରଣା ଅଛ ବାର କହି । ୪୮ ।
ତନ ପୀଡ଼ି ଅଙ୍କୁ ତ ସୁଖ ଭୋଗ ଯିବ ।
ହରାଦ ସ(ଭ)ଜନ କାଳେ ହେଲଣ ହୋଇବ । ୪୯ ।
ନଷ୍ଟଭ୍ରଷ୍ଟ ହୋଇବ ସଂସାରେ ପ୍ରାଣୀମାନେ ।
ରାଜା ତଣ୍ଡି ନେଉଥିବ ପରଜାର ଧନେ । ୫୦ ।
ଗୃହକାତ ଅଷ୍ଟାଦଶ ଛତଶ ଏ କୁଳ ।
ମାଳା ଧର ତଳକ ଯେ ଅଙ୍ଗେ ଥିବ ବୋଲ । ୫୧ ।
ମାଛ ମାଂସ ଖାଇଣ ଯେ ହୋଇଥିବେ ଦାସ ।
ପର ରମଣୀରେ ରତ କରବେ ହରଷ । ୫୨ ।
ପଦାନ୍ତ ତୁରଙ୍ଗ ଚଢ଼ିବାକୁ ବଡ଼ ମନ ।
ଦମ୍ଭପଣେ କହିବେ ଗୁରୁଙ୍କ କଥାମାନ । ୫୩ ।
ଅଙ୍ଗନ୍ୟାସ କରନ୍ୟାସ ଷଡ଼ାଙ୍ଗ ନ ଜାଣି ।
ମାତୃକା ଯେ ଭୂତଶୁଦ୍ଧି ନ ପାରବେ ଗୁଣି । ୫୪ ।
ମାସର ଅଣ୍ତିର ମାଇ ନ ଜାଣିବେ ପୁଣ ।
ମନ୍ତ୍ରର ଅଣ୍ତିର ମାଇ ନ ଘେନି ପ୍ରମାଣ । ୫୫ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ହେତୁ ଅଭ୍ୟାସ ନ କର ।
ଶିଷ୍ୟ କରୁଥିବେ ଆଣି ବଳେ କର୍ଣ୍ଣ ଧର । ୫୬ ।
ନଷ୍ଟ ଭ୍ରଷ୍ଟ ଗୁରୁ ଶିଷ୍ୟ ଏଣୁ କର ହେବ ।
ଅଠର ଲକ୍ଷ ମାଳଅ ଖାରକା ଖାଇବ । ୫୭ ।
ଗୁପ୍ତ ଗୁପ୍ତ ମହାଗୁପ୍ତ ନ କର ପ୍ରକାଶ ।
ପ୍ରକାଶିଲେ ଦନ୍ଦ୍ର ଯେ ହୋଇବ ପ୍ରବେଶ । ୫୮ ।

---

୪୭—୨-ଚର୍ଦ୍ଦଣୀ ଯେ ବସା (ଗ), ୪୮—୨-ବାରକଇ (ଖ)

ବଧିର କୁଷ୍ଠ ଯେ ଆନ ଭ୍ରଷ୍ଟ କୁଳ ହେବ ।
ଧନ ଲୋଭେ ଗ୍ରନ୍ଥ ଦେଲେ ପ୍ରମାଦ ପଡ଼ିବ । ୬୯ ।
ସାଷ୍ଟାଙ୍ଗ ପଞ୍ଚାଙ୍ଗ କୃତାଞ୍ଜଳି ଯେ ହୋଇବ ।
ଶ୍ରଦ୍ଧାବନ୍ତ ହୋଇ କର ଶାସ୍ତ୍ର ଶୁଣିବ । ୭୦ ।
ପରଦାର ମଦ୍ୟମାଂସ ମାନନ୍ତ ନ ଭକ୍ଷେ ।
ଏମନ୍ତ ଚରି ଯାହାର ହୋଇଣ ଯେ ସୁଖେ । ୭୧ ।
ସେ ଜନ ଅଗରେ ଏହୁ ଗ୍ରନ୍ଥକୁ ପଢ଼ିବ ।
ଅପରଧୀ ଅଭକତେ କେବେ ନ କହିବ । ୭୨ ।
ଶ୍ରୀ ଗୁରୁ ଚରଣେ ଯାର ଦୃଢ଼ ହୋଏ ଚିତ୍ତ ।
ଦର୍ଶନେ ଲଭଇ ବ୍ରହ୍ମା ବିଷ୍ଣୁ ମହେଶ ତ । ୭୩ ।
କୋଟି କୋଟି ତୀର୍ଥଫଳ ଗୁରୁଙ୍କ ଦର୍ଶନେ ।
କୋଟି କୋଟି ଗ୍ରନ୍ଥ ପୁଣ୍ୟ ଗୁରୁଙ୍କ ବଚନେ । ୭୪ ।
ମାତା ପିତା ଦେଲେ ନାମ ସନାତନ ପୁଣ ।
ଗୁରୁ ଆଜ୍ଞା ଦେଲେ ଶ୍ରୀଚରଣ ଦାସ ଶୁଣ । ୭୫ ।
ଶ୍ରୀଚରଣ ଗୋସାଇଁଙ୍କ ଚରଣକୁ ଆଶ ।
ଗୁରୁଙ୍କ ପ୍ରଣାମ ତାଙ୍କ ମୁଖରୁ ପ୍ରକାଶ । ୭୬ ।
ସେ ଯାହା କହିଲେ ମୁଖେ ତାହା ମୁଁ ଲେଖିଲି ।
ଢଳକଣା ଗ୍ରାମରେ ମୁଁ ଉପଦେଶୀ ହେଲି । ୭୭ ।
ପାନବନ୍ଧୁ ଖୁଣ୍ଟିଆ ଯେ ମୋହର ପିତର ।
ଶଦ୍ରାନାଗ୍ନି ପଦ୍ମମାତା ଅଟନ୍ତି ମୋହର । ୭୮ ।
ଲବଣ ଧାର ଚନ୍ଦ୍ର ଉତ୍କଳର ତୀର ।
ପଦ୍ମବନ ଲେମ୍ବାଲ ଯେ ତହିଁ ମୋର ଆଳ । ୭୯ ।
ପାମର ଅତ୍ୟନ୍ତ ଗୁରୁ ଚରଣକୁ ଆସ ।
ଇତି ଗୁରୁଭକ୍ତି ଗୀତା କଲଇଁ ପ୍ରକାଶ । ୮୦ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ତ୍ରିଂଶ ଛାନ୍ଦ ।

—※—

## ଏକବିଂଶ ଛାନ୍ଦ

ଶ୍ରୀଗୁରୁପରମଗୁରୁ ମୁଖରେ ପ୍ରମାଣ ।
ରାମାନନ୍ଦ ବଇଷ୍ଣବ କେଉଁ ମନ୍ତ୍ର ପୁଣ । ୧ ।
ମୁକୁନ୍ଦ ଅନନ୍ତ ହେ ଯାଦବ ଦାସ ଶୁଣ ।
ରାଘବ ନାଥ ସେବକ ଗୃନ୍ଥେ ଢନ ପୁଣ । ୨ ।
ବସ୍ତୁତ ବସ୍ତୁର କଥା ଚହିଁ ପୁଣ ଅଛୁ ।
ଏକାମନ୍ତ୍ର କଥା ଚିନ୍ତା ପସ୍ତିଲେ ବାଛୁ । ୩ ।
ସପ୍ରଦା ଅଟନ୍ତି ଘୃଶ ବଇଷ୍ଣବ ପୁଣ ।
ଧାମ ଯେ ଅଟଇ ଘୃଶ ବ୍ରହ୍ମାଣ୍ଡରେ ଜାଣ । ୪ ।
ଘୃଷ୍ଣମଠ ଘୃଶ ବଇଷ୍ଣବଙ୍କ ଭିଆଣ ।
ସର୍ବ ମନ୍ତ୍ର ଯୁଗେ ଯୁଗେ ଘୃଶ କରି ଜାଣ । ୫ ।
ଷେତ୍ର ଯେ ଅଛଇ ଘୃଶ ବେଦ ଘୃଶ କହୁ ।
ଦେବତା ଅଟଇ ଘୃଶ ନଦୀ ଘୃଶ ହୋଇ । ୬ ।
ଋଷି ଯେ ଅଟନ୍ତି ଘୃଶ ଯୁଗ ଘୃଶ ଜାଣ ।
ଗ୍ରନ୍ଥ ଯେ ଦିବସ ଘୃଶ ଘୃଶ ପରମାଣ । ୭ ।
ବର୍ଣ୍ଣ ଯେ ଅଟଇ ଘୃଶ ଦିଗ ଘୃଶ କହୁ ।
ଘୃଶ ଘୃଶ ଭେଦିଲେ ଦାସ ବୋଲି କହୁ । ୮ ।
ଘୃଶ ବେଦ ଉପରେ ଯେ ପାଞ୍ଚବେଦ ସାର ।
ଗୁପତ ଭକତମାନେ କରନ୍ତି ବିଚାର । ୯ ।
ଶିଶୁବେଦ ବୋଲି କରି ନାମ ଯେ ଅଟଇ ।
ଆଦି ଯେ ଅନନ୍ତ ବୋଲି ଯୁଗ ତାକୁ କହୁ । ୧୦ ।
ରାମାନନ୍ଦ ବଇଷ୍ଣବ ମନ୍ତ୍ର ବୀଜ ପୁଣ ।
ଷୋଡ଼ରେ ଭଜନ ଯେ କୃଷ୍ଣାଦି ଯେ ଗୁଣ । ୧୧ ।

ବେଦରେ ଯେ ଋକବେଦ ବୋଲିକରି କହୁ ।
ମଠରେ ପ୍ରକାଶ ମଠ ବୋଲିଣ ଅଟଇ । ୧୨ ।
ଋଷିରେ ଯେ କୃପାଜଳ ଅଟନ୍ତି ସେ ପୁଣ ।
କ୍ଷେତ୍ର ଯେ ଅଟଇ ସେହୁ ମଥୁରା ଯେ ଜାଣ । ୧୩ ।
ଦ୍ୱାରକା ଅଟଇ ସୁଖ କଳାସ ଯେ ପୁଣି ।
ଗୋମତୀ ଧାମରେ ସ୍ଥାନ ଶୁଣ ସାଧୁ ପ୍ରାଣୀ । ୧୪ ।
ସୁଖ ଯେ କଳାସ ବୃନ୍ଦାବନ ଯେ ଅଟଇ ।
ଇଷ୍ଟ ଅଟେ ବୃଷଭାନୁ ନନ୍ଦନୀ ରାଧା ଧ୍ୟାୟି । ୧୫ ।
କୃଷ୍ଣ ଉପାସନା ଯେ ଗୋପାଳ ମନ୍ତ୍ର ସାର ।
ଗରୁଡ଼ ବୋଲିଣ ଜାଣ ଦେବତା ଆମ୍ଭର । ୧୬ ।
ବେଦରେ ଯେ ଋକବେଦ ବୋଲି କରି କହୁ ।
ବର୍ଣ୍ଣ ଅଟେ ଗଉର ଯେ ଶୁଣ ମନ ଦେଇ । ୧୭ ।
ବନରେ ଯେ ଦ୍ୱିତୀୟ ପ୍ରହର ଅଟେ ପୁଣ ।
ସଖା ଅଟେ ସୁଦାମ ହେ ହେତୁମନେ ଶୁଣ । ୧୮ ।
ଲଳିତା ସଖୀର ସେବା ଯୁଗ ସେ ଦ୍ୱାପର ।
ବ୍ରହ୍ମରନ୍ଧ୍ର ମୁଖରେ ଆନନ୍ଦ ମୁଖ ସ୍ଥିର । ୧୯ ।
ସ୍ୱରକଳା ବର୍ଣ୍ଣରେ ଯେ ଊର୍ଦ୍ଧ୍ୱ କଳା କହୁ ।
ପଞ୍ଚମନ୍ତ୍ର ମଧ୍ୟରେଣ ଅକ୍ଷରଟି ଧ୍ୟାୟି । ୨୦ ।
ଚତୁର୍ବର୍ଣ୍ଣ ମଧ୍ୟରେ ଯେ ଜାଉଜ ଅଟଇ ।
ସ୍ୱରଖାନ ବର୍ଣ୍ଣରେ ଯେ ନରସ୍ୱର ହୋଇ । ୨୧ ।
କାଳଉଁ କୃଷ୍ଣାସ୍ତ୍ର ମନ୍ତ୍ର ସୁମରଣା କର ।
କୃଷ୍ଣ ହରେ ଯେ ସେ ଛଡ଼ ମନ୍ତ୍ରଙ୍କ ବର୍ଣ୍ଣର । ୨୨ ।
ଅନାହ ଯେ ଆଦ୍ୟମୂଳ ଓଁକାର ଶବଦ ।
ହୁଙ୍କାର ଶବଦ ବିନ୍ଦୁ ପଞ୍ଚ ଯେ ଶବଦ । ୨୩ ।
କୃଷ୍ଣ ମନ୍ତ୍ର କୃଷ୍ଣ ହରେ ଅନାହ ଭଜନ ।
ବୃନ୍ଦାବନ ରାଧାକୃଷ୍ଣ କରୁଥିବ ଧ୍ୟାନ । ୨୪ ।

ଗୋଲୋକରେ ସୁଦାମ ଯେ ନାମ ମୋର ଜାଣ ।
ସତ୍ୟଯୁଗେ କୃପାଜଳ ନାମ ହୋଏ ପୁଣ । ୨୫ ।
ତ୍ରେତୟା ଯୁଗରେ ନଳ ଶ୍ରୀରାମ ଗହଣେ ।
ଦ୍ୱାପରେ ସୁଦାମ ନାମ ଗୋରୁ ରକ୍ଷି ବଣେ । ୨୬ ।
ନବଦ୍ୱୀପେ ସୁନ୍ଦର ଯେ ନନ୍ଦ ନାମ ମୋର ।
ଶ୍ରୀକୃଷ୍ଣ ଚଇତନ୍ୟ ପୁଣ ନଦୀଆ ଠାକୁର । ୨୭ ।
ବଉଦ୍ଧ ରୂପରେ ଜାତ ରହୁ ଅରକ୍ଷିତ ।
ନେମ୍ବାଳ ସ୍ଥଳରେ ଜାତ ନାମ ମୋ ଅଚ୍ୟୁତ । ୨୮ ।
କୁଣ୍ଡି ନଗ୍ର ଗ୍ରାମେ ଜାତ ପଶୁପଝେ ହେବ ।
ବୀରଜା ମଧ୍ୟରେ ନାମ କେଶବ ଭଜିବ । ୨୯ ।
କେଶବ ନାମରେ ଜପ କରିବୁ ଆମ୍ଭେ ତ ।
କଳଙ୍କି ନାମ ଭଜନ ଏକାନ୍ତ ଥାନେ ତ । ୩୦ ।
ବଉଦ୍ଧ ଲୀଳାକୁ ବେଳେ ପୁରୁଷ ହୋଇଣ ।
ପଞ୍ଚ ପାଣ୍ଡବରେ କଳା ସହଦେବ ପୁଣ । ୩୧ ।
ପଞ୍ଚଭୂତେ ପୃଥିବୀରେ କଳିଏ ରହିଛୁ ।
ଜନ୍ମେ ଜନ୍ମେ କୃଷ୍ଣ ସଙ୍ଗେ ଜନମ ହୋଉଛୁ । ୩୨ ।
ଶ୍ରୀକୃଷ୍ଣ କରୁଣା କଲେ ଶୂଦ୍ର କୁଳେ ଜାତ ।
ପ୍ରଭୁର ଆଜ୍ଞାରେ ତୁମ୍ଭେ ଗୋପ କୁଳେ ସୁତ । ୩୩ ।
ରହାସ ସେ ଉପଦେଶ ପ୍ରାଣୀମାନେ ଦଅ ।
ଏ ଅଙ୍ଗ ଛାଡ଼ିଣ ପୁଣ ଅନ୍ୟ ଅଙ୍ଗ ନଅ । ୩୪ ।
ଅନ୍ୟଅଙ୍ଗ ଛାଡ଼ି ପୁଣ ଆଉ ଅଙ୍ଗ ଧର ।
କଳଙ୍କି ନାଥ ସଙ୍ଗତେ କରିବ ବିହାର । ୩୫ ।
ରସିକ ଅନନ୍ତ ବାର ସନ୍ଦପ ଗୋପାଳ ।
ତାହାଙ୍କର ପ୍ରଧାନ ରହାସ ଦାସ ମୂଳ । ୩୬ ।
ଗୁଣ ସପ୍ତ ଯୋଗାରୂଢ଼ ଅନନ୍ତ ଯେ ପୁଣ ।
କୃଷ୍ଣଦାସ ବାର ରାମଚନ୍ଦ୍ର ଦାସ ଶୁଣ । ୩୭ ।

୩୭—୨-କର୍ଣ୍ଣଦାସ (ଖ),

ଷୋଳ ଖଣ୍ଡ ଗୋପସାର ଅଚ୍ୟୁତ ତ ମୁହିଁ ।
ଗୁପତ ଭଗତ ଗୀତା ଭକ୍ତ ହିତେ କହି । ୩୮ ।
ସର୍ବ ମନ୍ତ୍ରାମନ୍ତ୍ର ଏହୁ ଗ୍ରନ୍ଥେ ଅଛୁ ପୁଣ ।
ଭେଦ ଦୀକ୍ଷା ପାଇଲେ ସେ ପାଇବ କାରଣ । ୩୯ ।
ଅଣଭକ୍ତ ଅଙ୍ଗକାଳେ କେବେ ନ ଛୁଇଁବ ।
ଅଭକ୍ତ ଶୁଦ୍ଧ ନୋହିଲେ ନସେଲେ ରଖିବ । ୪୦ ।
ଜାଗତେ ସପନେ ଆଜ୍ଞା ଯେମନ୍ତ ହୋଇବ ।
ଶବଦ ହୁକୁମ ହେଲେ ଏ ଗ୍ରନ୍ଥ ପଢ଼ିବ । ୪୧ ।
ବଳାତ୍କାରେ ପଢ଼ିଲେ ଯେ ବଂଶ ହେବ ଧ୍ୱଂସ ।
ଆଜ୍ଞା ନୋହି ପଢ଼ିଲେ ଯେ କୁଷ୍ଠ ବ୍ୟାଧି ହୁଏ । ୪୨ ।
ନିତ ପ୍ରତ ଏ ଗ୍ରନ୍ଥକୁ ଦର୍ଶନ କରିବ ।
ମାସେ ପାଞ୍ଚ ଗୁରୁବାରେ ଭୋଗ ସର୍ପଃ ଦେବ । ୪୩ ।
ଘୃତ ଦୀପ ସନ୍ଧ୍ୟାକାଳେ ଆଠହନେ ଦେବ ।
ଛୁଆ ଯେ ଗୃହଳ କଥା ଦୁଧରେ ପୁଜିବ । ୪୪ ।
ଇତ ଗୁରୁ ଭକ୍ତଗୀତା ଅଣାକ୍ଷର ଭକ୍ତେ ।
ଗୁପତେ ରଖିଲ ଏହା ପଠନ ନିମନ୍ତେ । ୪୫ ।
ଶ୍ରୀ ଗୁରୁ ପାଦକୁ ମୁହିଁ ବାଳାଉଛୁ ଆଶ ।
ଶ୍ରୀଗୁରୁ କରୁଣା କଲେ ଫିଟୁ ଭବ ଫାଶ । ୪୬ ।
ପାମର ଅଚ୍ୟୁତ ଭବ ଜଳେ ପଡ଼ି ବଣା ।
ଶ୍ରୀଗୁରୁ ଶ୍ରୀ ବଇଷ୍ଣବ କର ଯେ କରୁଣା । ୪୭ ।

ଇତ ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଏକତ୍ରିଂଶ ଛନ୍ଦ ।



୪୧—୨-ଶବଦ ପଢ଼ ବୋଇଲେ (କ);

# ଦ୍ୱାତ୍ରିଂଶ ଛାନ୍ଦ

କୁଣ୍ଡି ଯେ ବଳଦା ଗ୍ରାମ ଖୀରସାନ୍ଧ ଦେଶ ।
ମୂଢ଼ ନନ୍ଦ ଗୁପତ ହିଁ କରଅଛୁ ବାସ । ୧ ।
କେମନ୍ତ ସେ ରୂପବର୍ଦ୍ଧ ଷୋଡ଼ଶ ପ୍ରମାଣ ।
ସଂଶୟ ଲାଗିଲା ଗୁରୁ ଏ କଥା ତ ପୁଣ । ୨ ।
ଛଡ଼ ବୀଜ ବ୍ୟଞ୍ଜଗ କେମନ୍ତ ଭଜନ ।
ଏକଥା ଶ୍ରୀମୁଖେ ଗୁରୁ କହିବା ଫେଡ଼ାଣ । ୩ ।
ହରେ ରାମକୃଷ୍ଣ ଷୋଡ଼ଶର ବୀଜ ଛନ୍ଦ ।
ରୂନ୍ଦ ଯେ ସମ୍ପ୍ରଦା ବର୍ଦ୍ଧ ବଣ୍ଟିଗଲେ ଘେନ । ୪ ।
ବଳଭଦ୍ର ସୁଦର୍ଶନ ଅଟନ୍ତି ଏ ଦୁଇ ।
ହକାର ଯେ ସୁଦର୍ଶନ ମନ୍ତ୍ର ଯେ ଅଟଇ । ୫ ।
ରେ ଯେ ଅକ୍ଷର ବଳଭଦ୍ରଙ୍କୁ ସୁମର ।
କୃଷ୍ଣ ବେନି ଅକ୍ଷର ଯେ ଜଗତ ଠାକୁର । ୬ ।
ରାମ ବେନି ଅକ୍ଷର ଯେ ସୁଭଦ୍ରା ଅଟଇ ।
ରାଧା ରୂପ ନନ୍ଦ ଦାସ ଶୁଣ ମନ ଦେଇ । ୭ ।
ଚନ୍ଦ୍ରାବଳୀ ବଳଭଦ୍ର ସୁଦର୍ଶନ ଦୂତୀ ।
ଜଗତ ନାଥ ଶ୍ରୀକୃଷ୍ଣ ଭଦ୍ରା ରାଧା ହୋନ୍ତି । ୮ ।
ହରେ ବଳରାମ ଭଦ୍ରା ଜପ କୃଷ୍ଣ ଭକ୍ତ ।
ଶ୍ୟାମ ସୁଦର୍ଶନ ରାଧା ଅଟଃ ଷଡ଼ ବୀଜ । ୯ ।
ସ୍ୱାରଂ ଶୀରଂ କ୍ଲୀଲଂ ନନ୍ଦ ଚତୁର୍ଦ୍ଧା ଯେ କହୁ ।
ଅଷ୍ଟ ଯେ ନାୟିକା ବେଢ଼ି ଅଛନ୍ତି ଏ ଧ୍ୟାୟି । ୧୦ ।
ସ କାରୁ ଲଳିତା ବୃନ୍ଦାବତୀ ଗୋପୀ ଦୁଇ ।
ହ କାରୁ ରଙ୍ଗ ଯେ ଦେବୀ ରହୁରେଖା କହୁ । ୧୧ ।
କ କାରନ୍ତୁ ସୁଭଦ୍ରା, ଯେ ପ୍ରିୟମ୍ବଦା ହୋଏ ।
ମନ୍ତ୍ରେ ରୂପ ଛଡ଼ ସଖୀ ଏମନ୍ତେଟି କହେ । ୧୨ ।

ତୁ ଭାବ ଯେ ବଳଭଦ୍ର ନନ୍ଦ ମଁ' କହୁ ।
ତର ସୁଦର୍ଶନ ଚଇତନ ମଠ ହୋଇ । ୧୩ ।
ସୁଭଦ୍ରା ସ୍ୱରୂପ ମଠ ବୋଲି କରି ଜାଣ ।
ପ୍ରକାଶ ମଠ ଯେ କୃଷ୍ଣ ଜଗନ୍ନାଥ ପୁଣ । ୧୪ ।
ଏମନ୍ତ ହୋଇଣ ସ୍ଥିର ମଠ ପୁଣ କହୁ ।
ଶ୍ରୀବୃନ୍ଦାବନର ଭାବ ଶୁଣ ମନ ଦେଇ । ୧୫ ।
ଚନ୍ଦ୍ରାବଳୀ ନନ୍ଦମଠ ବୋଲି କରି ଜାଣ ।
ଚଇତନ ମଠ ଯେ ଦୂତିକା ପୁଣ ଶୁଣ । ୧୬ ।
ସ୍ୱରୂପ ମଠ ଯେ ପୁଣ ରାଧିକା ହୁଅନ୍ତି ।
ପ୍ରକାଶମଠ ଭଗତ କୃଷ୍ଣଚନ୍ଦ୍ର ଚିନ୍ତ । ୧୭ ।
ରାମବୀଜ ବେଦ ରାମାନନ୍ଦ ବୋଲି ଗୁଣ ।
କୃଷ୍ଣବୀଜ ଜଗନ୍ନାଥ ନମାନନ୍ଦ ଶୁଣ । ୧୮ ।
ହରେବୀଜ ମାଧ୍ୱାଚାର୍ଯ୍ୟ ବଳଭଦ୍ର ପୁଣ ।
ବିଷ୍ଣୁଶ୍ୟାମ ରେ ବୀଜ ସୁଦର୍ଶନ ଶୁଣ । ୧୯ ।
ବିଷ୍ଣୁ ଶ୍ୟାମ ମାଧ୍ୱାଚାର୍ଯ୍ୟ ଏଣୁଟି ଯୁଗଳ ।
ରାମାନନ୍ଦ ନମାନନ୍ଦ ଅଟନ୍ତି ଏ ମେଳ । ୨୦ ।
ସତ୍ୟଯୁଗେ ବାନ୍ଧିଗଲେ ମୁନିମାନେ ମଠ ।
ତ୍ରେତୟା ଯୁଗରେ ମୁନି କରୁଥିଲେ ଭେଟ । ୨୧ ।
ଦ୍ୱାପର ଯୁଗରେ ଗୋପୀ ଗୋପାଳ [illegible]ଣିଲେ ।
କଳିଆଦ୍ୟେ ରାମାନନ୍ଦ ନାମ ବୋଲାଇଲେ । ୨୨ ।
ନମାନନ୍ଦ ବିଷ୍ଣୁ ଶ୍ୟାମ ମାଧ୍ୱାଚାର୍ଯ୍ୟ କହୁ ।
ଏ ଚାରିହେଁ ଏକ ଅଂଶ ଭିନ୍ନ ଭିନ୍ନ ନୋହୁ । ୨୩ ।
ସାମବେଦ ରାମାନନ୍ଦ ବୋଲି ପରମାଣ ।
ଋକ ବେଦ ନମାନନ୍ଦ ସାଧୁମାନେ ଶୁଣ । ୨୪ ।

---

୧୯—୧ ବିଷ୍ଣୁ ଶ୍ୟାମ ବୀଜକୋଟି (ଖ)

କୃଷ୍ଣ ଶ୍ୟାମ ଅଥବା ସେ ବେଦ ବୋଲି କହୁ ।
ଯଜୁର୍ବେଦ ମାଧ୍ୱାଚାର୍ଯ୍ୟ ଶୁଣ ମନ ଦେଇ । ୨୫ ।
ଅନନ୍ତ ଶିଶୁ ସେ ରାମାନନ୍ଦ ବଇଷ୍ଣବ ।
ଯଶୋବନ୍ତ ଦାସ ମାଧ୍ୱାଚାର୍ଯ୍ୟ ବଇଷ୍ଣବ । ୨୬ ।
ବଳରାମ ଦାସ କୃଷ୍ଣ ଶ୍ୟାମ ଦାସ ହୋଇ ।
ନିମାନନ୍ଦ ବଇଷ୍ଣବ ଅଚ୍ୟୁତ ଅଟଇ । ୨୭ ।
ସୁବଳ ସଖା ଅଟନ୍ତି ବଳରାମ ଦାସ ।
ସୁବାହୁ ସଖା ସେ ଯଶୋବନ୍ତ ପରକାଶ । ୨୮ ।
ଦାସ ସଖା ଅନନ୍ତ ସେ ଶିଶୁ ପୁଣ ଜାଣ ।
ସୁଦାମ ସଖା ଗୋପରେ ଅଚ୍ୟୁତ ମୁଁ ପୁଣ ।। ୨୯ ।
ଅନନ୍ତ ଶିଶୁ ନାରଦ ମୁନି ସତ୍ୟେ ହୋଇ ।
ଯଶୋବନ୍ତ ଗାଗ୍ରବ ସେ ମୁନି ବୋଲି କହୁ । ୩୦ ।
ମାରକଣ୍ଡ ଋଷି ବଳରାମ ଦାସ ହୋଇ ।
ଅଚ୍ୟୁତ ଦାସ ସେ କୃପାଜଳ ଋଷି ମୁଁ ଇ । ୩୧ ।
ତ୍ରେତୟା ଯୁଗରେ ରାମଚନ୍ଦ୍ର ସଙ୍ଗେ ଜାତ ।
ବଳରାମ ଦାସ ସେ ସୁଷେଣ ହୋଇ ଖ୍ୟାତ । ୩୨ ।
ଜାମ୍ବବ ହୋଇଣ ଯଶୋବନ୍ତ ହେଲେ ନାମ ।
ଅନନ୍ତ ଶିଶୁ ଧଇଲେ ନଳ ବୋଲି ନାମ । ୩୩ ।
ନଳ ବୋଲି ଅଚ୍ୟୁତ ସେ ନାମ ହୋଏ ତହିଁ ।
ଋଷି ଯୁଗେ ଋଷି ଅବତାର ସାର ହୋଇ । ୩୪ ।
ସତ୍ୟେ ନାରାୟଣ ତ୍ରେତାୟାରେ ରାମଚନ୍ଦ୍ର ।
ଦ୍ୱାପରରେ ନାମ ହୋଏ ଶ୍ରୀକୃଷ୍ଣ ସେ ଚନ୍ଦ୍ର । ୩୫ ।
ଶ୍ରୀ ଚୈତନ୍ୟ କଳିଯୁଗେ କୃଷ୍ଣ ହେଲେ ଜାତ ।
ତାଙ୍କ ସଙ୍ଗେ ଚାରିସଖା ହୋଇଲୁ ସେ ଜାତ । ୩୬ ।
ଅନନ୍ତ ସେ ଶିଶୁ ଅଭିରାମ ପୁଣ ହୋଇ ।
ଗଉରୀ ଦାସ ପଣ୍ଡିତ ବଳରାମ କହି । ୩୭ ।

ସୁବାହୁ ଅଟନ୍ତି ପୂର୍ଣ୍ଣ ଉଦ୍ଧବ ଯେ ଦତ୍ତ ।
ସୁନ୍ଦରାନନ୍ଦ ଯେ ମୁହିଁ ଅଟଇ ଅଚ୍ୟୁତ । ୩୮ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଦ୍ୱାତ୍ରିଂଶ ଛାନ୍ଦ ।



## ତ୍ରୟବିଂଶ ଛାନ୍ଦ

ସାମବେଦ ପଶ୍ଚିମ ଯେ ରାମାନନ୍ଦ କନ୍ଧ ।
ଚଇତନ ବ୍ରହ୍ମଚାରୀ ମଠ ଯେ ଅଟଇ । ୧ ।
ଚଇତନ ବ୍ରହ୍ମଚାରୀ ପଣ ନାଥ ଶିଷ୍ୟ ।
ହରେରାମ ହରେରାମ ମନ୍ତ୍ର ପରକାଶ । ୨ ।
ରାମ ରାମ ହରେ ହରେ ମନ୍ତ୍ର ପୁଣି କନ୍ଧ ।
ହରେକୃଷ୍ଣ ହରେକୃଷ୍ଣ ମନ୍ତ୍ର ଯେ ଅଟଇ । ୩ ।
କୃଷ୍ଣ କୃଷ୍ଣ ହରେ ହରେ ରାଧାନାମ ଧର ।
ଚଇତନ ମଠ ରାମାନନ୍ଦ ପନ୍ଥ ଧାର । ୪ ।
ଅଥର୍ବବେଦ ଦକ୍ଷ୍ଣ ଶ୍ୟାମ ନନ୍ଦମଠ କନ୍ଧ ।
ରାଧେ କୃଷ୍ଣ ରାଧେ କୃଷ୍ଣ ମନ୍ତ୍ର ଯେ ଅଟଇ । ୫ ।
କୃଷ୍ଣ କୃଷ୍ଣ ରାଧେ ରାଧେ ସୁମରଣା କର ।
ରାଧେଶ୍ୟାମ ରାଧେଶ୍ୟାମ ମନ୍ତ୍ରରେ ବିସ୍ତର । ୬ ।
ଶ୍ୟାମ ଶ୍ୟାମ ରାଧେ ରାଧେ ମନ୍ତ୍ର ଯେ ବଚଣ ।
ନନ୍ଦ ବ୍ରହ୍ମଚାରୀ ବୋଲି ମଠ ଯେ ପ୍ରକାଶ । ୭ ।
ଯଜୁର୍ବେଦ ସ୍ୱରୂପ ଯେ ମଠ ବୋଲି ଜାଣ ।
ମାଧ୍ୱାଚାର୍ଯ୍ୟ ବୋଲି କର ବୈଷ୍ଣବ ଯେ ପୁଣ । ୮ ।
ଆତ୍ମାରାମ ପରମାତ୍ମା ରାମ ବୋଲି ଶୁଣି ।
ତତ୍ତ୍ୱ ନିରଞ୍ଜନ ଯେ ତାରକ ରାମ ପୁଣି । ୯ ।
କାଶୀକ୍ଷେତ୍ର ବାରଣାସୀ ସ୍ଥାନ ଯେ ଭଜନ ।
ତତ୍ତ୍ୱ ନିରଞ୍ଜନ ତାରକ ମନ୍ତ୍ର ରାମ । ୧୦ ।
ସ୍ୱରୂପ ବ୍ରହ୍ମଚାରୀ ଯେ ମଠ ପରମାଣ ।
ଏ ମଠରେ ବୈଷ୍ଣବ ମାଧବାଚାର୍ଯ୍ୟ ପୁଣ । ୧୧ ।

ଶୁକଦେବ ପ୍ରକାଶ ଯେ ମଠ ବୋଲି କହି ।
ନିତ୍ୟାନନ୍ଦ ବଇଷ୍ଣବ ଏ ମଠକୁ ଧାଇଁ । ୧୨ ।
କୃଷ୍ଣାୟ ଯେ ଗୋବିନ୍ଦାୟ ମନ୍ତ୍ରକୁ ଭଜନ ।
ଗୋପୀଜନ ବଲ୍ଲଭାୟ ନମ କରି ଧ୍ୟାନ । ୧୩ ।
ପ୍ରକାଶ ଯେ ବ୍ରହ୍ମଗୃହୀ ମଠରେ ଯେ ବାସ ।
ନିତ୍ୟାନନ୍ଦ ଗୋସାଇଁ ଯେ ହୋଇଲେ ପ୍ରକାଶ । ୧୪ ।
ଚାରି ମଠେ ଚାରି ବଇଷ୍ଣବ ଯେ ହୋଇଣ ।
କଳି ଜନ ନାମକ୍ରେଣ ମାଳାଧାରି ପୁଣ । ୧୫ ।
ଚଇତନ୍ୟ ବ୍ରହ୍ମଗୃହୀ ପଶ୍ଚିମରେ ଲମ୍ବେ ।
ନନ୍ଦ ବ୍ରହ୍ମଗୃହୀ ଯେ ଉତ୍ତରଦିଗେ ରହେ । ୧୬ ।
ସ୍ୱରୂପ ବ୍ରହ୍ମଗୃହୀ ଯେ ଦକ୍ଷିଣକୁ ଲମ୍ବେ ।
ପ୍ରକାଶ ଯେ ବ୍ରହ୍ମଗୃହୀ ପୂର୍ବଦିଗେ ରହେ । ୧୭ ।
ପଶ୍ଚିମଦିଗ ଦକ୍ଷିଣ ଶଙ୍କର ଯେ ରହି ।
ପୂର୍ବଦିଗ ବ୍ରହ୍ମା ପୁଣ ଜଗିଣ ଅଛଇ । ୧୮ ।
ଦକ୍ଷିଣଦିଗ ଯେ ବିଷ୍ଣୁ ଜଗିଣ ରହିଲେ ।
ଆଦିଶକ୍ତି ଉତ୍ତର ଯେ ଦିଗରେ ବସିଲେ । ୧୯ ।
ଏହି ଚାରି ଜନକୁ ଯେ ପାଇବଟି ଜାଣି ।
ତେବେ ସିନା ଜାଣିବ ହେ ବୈଷ୍ଣବଟି ପୁଣି । ୨୦ ।
ଏହା ନ ଜାଣିଣ ଯେତୁ ବନ୍ଧିଆନ୍ତି ମାଳ ।
ଅନ୍ଧକୁ ଯେସନେ ନ ଦିଶଇ ଯେ ସକଳ । ୨୧ ।
ପଶ୍ଚିମ ଦିଗରେ ଅଛି ନବଧା ଭକତି ।
ବାତ୍ସଲ୍ୟ ଭକତି ଯେ ଉତ୍ତରଦିଗେ ଥାନ୍ତି । ୨୨ ।
ଶାନ୍ତିମ ଭକତି ପୁଣ ଦକ୍ଷିଣରେ ରହେ ।
ସଖା ସେବା ଭକତି ଯେ ପୂର୍ବଦିଗେ ଥାଏ । ୨୩ ।
ନବଗୃଣ ବନ୍ଧିଛନ୍ତି ଶଙ୍କର ପଶ୍ଚିମ ।
ହେବା ସଖା ଭାବ ଯେଣୁ ବ୍ରହ୍ମା ପୂର୍ବେ ରମ୍ୟ । ୨୪ ।

ସତ ବସ୍ତୁ ରହିଛନ୍ତି ଦକ୍ଷିଣ ଦଗର ।
ବାଳାମାନେ ରହିଛନ୍ତି ଉତ୍ତର ବସୁର । ୧୫ ।
ବ୍ରହ୍ମା ବସ୍ତୁ ମହେଶ୍ୱର ଆଦିଶକ୍ତି କହୁ ।
ଏ ତ୍ରିଣ ଥାନ ଭେଦଲେ ସିଦ୍ଧି ଲାଭ ହୋଇ । ୧୬ ।
ପଶ୍ଚିମ ଦ୍ୱାରରେ ନଦୀ ଗଙ୍ଗା ନାମ ବହେ ।
ପର୍ବତରେ ମହୋଦଧି ନାମ ପୁଣ ହୋଏ । ୧୭ ।
ଉତ୍ତର ଦଗରେ ଶ୍ୱେତ ଗଙ୍ଗା ନଦୀ ନାମ ।
ଦକ୍ଷିଣେ କାଳନ୍ଦୀ ହ୍ରଦ ବୋଲିକର ନାମ । ୧୮ ।
ଏ ତ୍ରିଣ ନଦୀରେ ସ୍ନାନ ସଦା କରିପାରେ ।
ବଇଷ୍ଣବ ଅନନ୍ତ ଯେ ଏ ନର ସଙ୍ଗରେ । ୧୯ ।
ସ୍ୱରୂପ ବ୍ରହ୍ମସ୍ୱାମୀଙ୍କ ଅଜପା ନଗର ।
ନନ୍ଦ ବ୍ରହ୍ମସ୍ୱାମୀଙ୍କର ଗୋପନଗ୍ର ସାର । ୨୦ ।
ଗୋଲୋକ ନଗ୍ର ପ୍ରକାଶ ବ୍ରହ୍ମସ୍ୱାମୀ ରହୁ ।
ଚଇତନ ବ୍ରହ୍ମସ୍ୱାମୀ ନଦୀଆ ନଗ୍ରହି । ୨୧ ।
ରାମଚନ୍ଦ୍ର ଦେବ ବୋଲି ସ୍ୱରୂପ ଭଜିଲେ ।
ନୀଳ ଯେ ମାଧବ ମୂର୍ତ୍ତି ପ୍ରକାଶ ଗୁଣିଲେ । ୨୨ ।
ନନ୍ଦ ବ୍ରହ୍ମସ୍ୱାମୀ କୃଷ୍ଣଚନ୍ଦ୍ର ଦେବ ପୁଣି ।
ଚଇତନ ବ୍ରହ୍ମସ୍ୱାମୀ ଗୋପୀଜନ ଗୁଣି । ୨୩ ।
ଗୋପୀଜନବଲ୍ଲଭଙ୍କ ରୂପକୁ ଭଜନ ।
ପାଇଲେ ସୁଜନ ଏହୁ ଦୀକ୍ଷା ମନେ ଘେନ । ୨୪ ।
ସତ୍ୟଗୁଣ ଭଜିଲେ ଯେ ରାମାନନ୍ଦ ପୁଣ ।
ତ୍ରେତୟା ଯୁଗକୁ ଜଲେ ମାଧ୍ୱାଚାର୍ଯ୍ୟ ଶୁଣ । ୨୫ ।
ଦ୍ୱାପର ଯୁଗକୁ ନିମାନନ୍ଦ ଯେ ରକ୍ଷିଣ ।
ବିଷ୍ଣୁ ଶ୍ୟାମ କଳିଯୁଗ ଆରାଧିଲେ ପୁଣ । ୨୬ ।
ପ୍ରଥମ ପ୍ରହର ରାମାନନ୍ଦଙ୍କ ସାଗର ।
ଦ୍ୱିତୀୟ ପ୍ରହର ନିମାନନ୍ଦ ଯେ ସୁମର । ୨୭ ।

ତୃତୀୟ ପ୍ରହର ମାଧ୍ୟାହ୍ନ ଯେ ସୁମର ।
ବସ୍ତୁ ଶ୍ୟାମ ଚତୁର୍ଥ ଯେ ପ୍ରହରକୁ ଧର । ୩୮ ।
ସବୁ ଦବା ସେବା ଯେ ଭଜନ କଲେ ମନ ।
ସୁରଦ୍ୱାରେ ସୁଦେଷଣା କୃଷ୍ଣ ପାଦେ ଧ୍ୟାନ । ୩୯ ।
ପଶ୍ଚିମେ ସ୍ୱରୂପା ନାମ୍ନୀ ଅଛନ୍ତି ଗୋପୀକା ।
ପୂର୍ବ ଦଗେ ପ୍ରେମ-ରୂପା ଅଛନ୍ତି ନାୟିକା । ୪୦ ।
ଉତ୍ତରେ ଯେ ରୂପାନାମେ ଅଛଇ ଗୋପୀଏ ।
ଦକ୍ଷିଣ ଦଗେ ଚରୂପା ଗୋପୀ ଏକ ରହେ । ୪୧ ।
ଦ୍ୱାର ଜଗି ରହନ୍ତି ଯେ ରାଧା କୃଷ୍ଣ ଥାନ ।
ସାଧୁଜନମାନେ ଏହୁ ଗୁରୁ ହେତୁ ଶୁଣ । ୪୨ ।
ପଶ୍ଚିମ ନୈଋତ ଦଗେ ଭଦ୍ରା ଛନ୍ତି ରହି ।
ବସ୍ତ୍ର ଆଦ ସେବାମାନ ତାଙ୍କଠାରେ ଥାଇ । ୪୩ ।
ବିଶାଖା ଗୋପିକା ପୂର୍ବ ଦଗରେ ଯେ ସେବା ।
ରତ୍ନମାଳା ଅଲଙ୍କାର ସେହୁ ଯୋଗାଇବା । ୪୪ ।
ଶ୍ରୀମତୀ ଗୋପୀଙ୍କ ସେବା ଉତ୍ତର ଷଗେଣ ।
ସୁମରର ସେବାମାନ ତାଙ୍କ ହସ୍ତେ ପୁଣ । ୪୫ ।
ଦକ୍ଷିଣ ଦଗରେ ପଦ୍ମା ଗୋପୀଏ ରହଣ ।
ଷଡ଼ରସ ଭୋଜନ ଯେ କରାବନ୍ତି ପୁଣ । ୪୬ ।
ସୁର ସେବା ସୁର ଦଗେ କରନ୍ତି ଯେ ରହି ।
ସୁର ମଠ ସେବା ସୁର ଦଗେ ପୁଣ ବହି । ୪୭ ।
ପୂର୍ବର ସମ୍ମୁଖେ ଛନ୍ତି ଲଳିତା ଯେ ପୁଣ ।
ସୁବର୍ଣ୍ଣ ପରସ୍ତେ ବର୍ଣ୍ଣ ଅଟଇ ଯେ ଶୁଣ । ୪୮ ।
ପୀତ ଯେ ବସନ ପିନ୍ଧି ଶ୍ରୀକୃଷ୍ଣଙ୍କ ସେବା ।
ତାମ୍ବୁଲ ଭୋଜନ ସେବା ନିରନ୍ତରେ ଦେବା । ୪୯ ।
ସୁଜନ ଜନ ଜାଣନ୍ତି ଏଥିର ବିସ୍ତର ।
ବ୍ରହ୍ମା ସ୍ତୁତି କରୁଅଛୁ ରହି ନିରନ୍ତର । ୫୦ ।

ତାମ୍ରମୁଖୀ ସ୍ତୁତି ଯେ ପଶ୍ଚିମ ଦଗେ କରେ ।
ଆନନ୍ଦ ମୁଖରେ ପୂର୍ବ ଦଗେ ସ୍ତୁତି ଧରେ । ୫୧ ।
ଉତ୍ତର ଦଗରେ ନନ୍ଦ ମୁଖେ ସ୍ତୁତି କର ।
ଧର୍ମ ମୁଖେ ଦକ୍ଷିଣ ଯେ ଦଗରେ ସୁମର । ୫୨ ।
ପଶ୍ଚିମ ଯେ ମୁଖ ଅଟେ ଶୁକଳ ଯେ ବର୍ଣ୍ଣ ।
ଗୌର ଅଟଇ ପୁଣ ପୂର୍ବର ବଦନ । ୫୩ ।
ଉତ୍ତର ଦଗର ମୁଖ ଶ୍ୱେତ ବର୍ଣ୍ଣ ଶୋଭ୍ହ ।
ନୀଳବର୍ଣ୍ଣ ଦକ୍ଷିଣର ବଦନ ଅଟଇ । ୫୪ ।
ରାମ ବୋଲି ସ୍ତୁତି କରେ ଶୁକଳ ମୁଖରେ ।
ଉତ୍ତର ମୁଖରେ କୃଷ୍ଣ ନାମ ଗୋଟି ଧରେ । ୫୫ ।
ହରେ ଯେ ଶବଦେ ଦକ୍ଷିଣରେ ନୀଳ ମୁଖ ।
ଶ୍ୱେତବର୍ଣ୍ଣ ଉତ୍ତର ଦଗରେ ଶ୍ୟାମ ଦେଖ । ୫୬ ।
ଏମନ୍ତେ ଷୋଡ଼ଶ ସ୍ୱର ମୁଖେ ବ୍ରହ୍ମା ଧର ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ଯେ ସ୍ୱର । ୫୭ ।
ସ୍ଥାବର ଚଉଦ କୋଟି ପଶ୍ଚିମୁ ଜନମ ।
ଚଉଦ କୋଟି ଯେ ନର ପୂର୍ବ ଦଗ ସ୍ଥାନ । ୫୮ ।
ପତଙ୍ଗ ଚଉଦ କୋଟି ଉତ୍ତରରୁ ହୋଏ ।
ଚଉଦ କୋଟି ଯେ କୀଟ ଦକ୍ଷିଣୁ ଉଦୟେ । ୫୯ ।
ଜୀବ ଜନ୍ତୁ ଯେ ଛପନ କୋଟି ଜାତ କରେ ।
ଆତ ଯାତ କରୁଥାନ୍ତି ଏହୁ ଯେ ସଂସାରେ । ୬୦ ।
କୋଡ଼ିଏ ଲକ୍ଷ ସ୍ଥାବର ଚଉଦରୁ ସାର ।
ଦେଢ଼ଶ କୋଟି ଉତ୍ତମ ନରରୁ ବାହାର । ୬୧ ।
ଚଉଦ କୋଟିରୁ ସାର କୀଟ ନବ ଲକ୍ଷ ।
ଦଶଶ ଲକ୍ଷ ପତଙ୍ଗ ଚଉଦରୁ ବାଛ । ୬୨ ।

---

୬୧—୧ କୋଟିଏ ଲକ୍ଷ (ଭ ;

ଷୋଡ଼ଏ ଲକ୍ଷ ସ୍ଥାବରୁ ସୃଶ ଲକ୍ଷ ସାର ।
ଦେଢ଼ଶ କୋଟି ନରରୁ ସୃଶଲକ୍ଷ ଧର । ୭୩ ।
କୃମି ଜନ୍ତୁ ଅଟନ୍ତି ଯେ ଏଗାର ଲକ୍ଷଇ ।
ପକ୍ଷୀ ଜନ୍ତୁ ଦଶଲକ୍ଷ ଜନମ ଯେ ହୋଇ । ୭୪ ।
ପଶୁ ଯେ ହସ୍ତରୁ ଜାତ କୃମି ଦକ୍ଷିଣୁ ତ ।
ଛପନା କୋଟି ଯେ ଜାତ ଏମନ୍ତ ହୋଇତ । ୭୫ ।
ଦେବଗଣ ନବ କୋଟି ପଶ୍ଚିମୁ ଉଦୟେ ।
ମାନବ ଯେ ସୃଶଲକ୍ଷ ପୂର୍ବ ଦିଗୁଁ ହୋଏ । ୭୭ ।
ଦକ୍ଷିଣୁ ଯେ ନବଲକ୍ଷ କୀଟ ପୁଣ ହୋଇ ।
ଏଗାର ଲକ୍ଷ ଯେ ଶିବ ହସ୍ତରେ ଅଛଇ । ୭୭ ।
ଆଦ ଯେ ଅନନ୍ତ ବୋଲି ଯୁଗ ଭିଆଇଲେ ।
ନୀଳାମ୍ବର ବୋଲି ବ୍ରହ୍ମା ନାମ ଯେ ଭଣିଲେ । ୭୮ ।
ଆଦ ଯେ ଅନନ୍ତ ଯୁଗ ଶେଷ ପୂର୍ଣ ଗଲା ।
ସତ୍ୟ ବୋଲି ଯୁଗ ଗୋଟା ପୁଣ ଭିଆଇଲା । ୭୯ ।
ତ୍ରେତୟା ଯେ ଯୁଗ ବୋଲି କଲେ ପରକାଶ ।
ଦ୍ୱାପର ଯୁଗ ବୋଲିଣ ହୋଇଲାକ ଶେଷ । ୭୦ ।
କଳିଯୁଗ ବୋଲି କଶ ଯୁଗ ଯେ ଭିଆଣ ।
ରାମାନନ୍ଦ ନିମାନନ୍ଦ ବଇଷ୍ଣବ ଗଣ । ୭୦ ।
ମାଧ୍ୱାଚାର୍ଯ୍ୟ ବିଷ୍ଣୁ ଶ୍ୟାମ ଚାରି ଭେକ ଧାରୀ ।
ଏ ଭେଦ ଜାଣିଲେ ଦାସ ଗଣରେ ବଢ଼ିଶ । ୭୨ ।
ରାମାନନ୍ଦ ହନୁମାନ ଦେବତା ଭଜିଲେ ।
ନିମାନନ୍ଦ ଗରୁଡ଼ ଦେବତା ଆରାଧିଲେ । ୭୩ ।
ବିଷ୍ଣୁ, ଶ୍ୟାମ ବରୁଣ ଦେବତା କଲେ ସାର ।
ମାଧ୍ୱାଚାର୍ଯ୍ୟ ଦେବତା ଯେ ହଂସର ବସ୍ତୁର । ୭୦ ।

୭୪—୧ ଗରୁଡ଼ ଦେବତା (କ); ୭୪—୨ ହରଷ ବସ୍ତୁର (କ);

ରାମ ତାରକ ମନ୍ତ୍ର ଯେ ରାମାନନ୍ଦ ଧର ।
ନମାନନ୍ଦ ଗୋପାଳ ଯେ ମନ୍ତ୍ରକୁ ସୁମର । ୭୫ ।
ମାଧ୍ୱର୍ଯ୍ୟଃ ବିଷ୍ଣୁ ହଂସ ମନ୍ତ୍ରକୁ ଭଜନା ।
ବିଷ୍ଣୁ ଶ୍ୟାମ ତୁଳସୀ ଯେ ମନ୍ତ୍ର ଉପାସନା । ୭୬ ।
ରାମାନନ୍ଦ ଅଯୋଧ୍ୟା ଯେ କ୍ଷେତ୍ରକୁ ସ୍ମରଣ ।
ନମାନନ୍ଦ ମଥୁରା ଯେ କ୍ଷେତ୍ରକୁ ବିଚାର । ୭୭ ।
ମାଧ୍ୱାର୍ଯ୍ୟ ଅନନ୍ତ ଯେ କ୍ଷେତ୍ରକୁ ଗୃଣିଣ ।
ବିଷ୍ଣୁଶ୍ୟାମ ବିଷ୍ଣୁକାଞ୍ଚୀକ୍ଷେତ୍ରକୁ ଧରଣ । ୭୮ ।
ରାମାନନ୍ଦ ଧନୁକ ଯେ ତୀର୍ଥକୁ ଗୁଣିଲେ ।
ନମାନନ୍ଦ ଗୋମତୀତୀର୍ଥକୁ ଯେ ଧରିଲେ । ୭୯ ।
ନଇମିଷା ରମ୍ୟ ଧାମ ମାଧ୍ୱାର୍ଯ୍ୟ ଧରେ ।
ବିଷ୍ଣୁଶ୍ୟାମ ଶ୍ୱେତଗଙ୍ଗାତୀର୍ଥକୁ ସୁମରେ । ୮୦ ।
ରାମ ବେଦ ଅକ୍ଷର ଯେ ରାମାନନ୍ଦ ଧରେ ।
କୃଷ୍ଣ ବେଦ ଅକ୍ଷର ଯେ ନମାନନ୍ଦ ସ୍ମରେ । ୮୧ ।
ଶ୍ୟାମ ବେଦ ଅକ୍ଷର ଯେ ବିଷ୍ଣୁଶ୍ୟାମ ଧରି ।
ହରେ ବେଦ ଅକ୍ଷର ଯେ ମାଧ୍ୱାର୍ଯ୍ୟ ସ୍ମରି । ୮୨ ।
ଏମନ୍ତ୍ରେଣ ଷୋଡ଼ଶ ଉଚ୍ଚାର ବୀଜ ସ୍ମର ।
ପାବିଲେ ସୁଜନ ଜନେ ଏତ୍ର ଦୀକ୍ଷା ଧର । ୮୩ ।
ଚାରି ଭାଗ ଧରିବ ଯେ ପୁଣ ଚାରି କରି ।
ପୂର୍ବ ଯେ ପଶ୍ଚିମ ବେଦ ଦଶ ହେବ ସର । ୮୪ ।
ଉତ୍ତର ଦକ୍ଷିଣ ପୁଣ ହୋଇବାକ ଦୁଇ ।
ଅଷ୍ଟାକ୍ଷର ବସିବ ଯେ ଚାରି ଭାଗ ହୋଇ । ୮୫ ।
ହରେ ବେଦ ଅକ୍ଷର ଯେ ଦକ୍ଷିଣେ ବସାଇ ।
ରାମ ବେଦ ଅକ୍ଷର ଯେ ପଶ୍ଚିମରେ ରହି । ୮୬ ।
କୃଷ୍ଣ ବେଦ ଅକ୍ଷର ଯେ ପୂର୍ବଭାଗେ ସ୍ଥାନ ।
ଉତ୍ତର ଭାଗରେ ବେଦ ଅକ୍ଷର ଯେ ଶ୍ୟାମ । ୮୭ ।

ଅଗ୍ନି କୋଣେ ବସାଇବ ହରେ ବୀଜ ପୁଣ ।
ରାମ ବୀଜ ନଇଋତେ ବସାଇଣ ଗୁଣ । ୮୮ ।
କୃଷ୍ଣ ବୀଜ ବସାଇବ ଐଶାନ୍ୟର ସ୍ଥାନେ ।
ଶ୍ୟାମ ସେ ବସିବ ପୁଣ ବାୟବ୍ୟର ଭଗେ । ୮୯ ।
ଏମନ୍ତ୍ରେଣ ମନ୍ତ୍ରବଧ୍ୟ ସ୍ଥାପିବ ସେ ପୁଣ ।
ଶିଷ୍ୟର ଦର୍ଶନେ ହେବ ଭଗଚ୍ଚ କାରଣ । ୯୦ ।
ଶ୍ବେତ ରଙ୍ଗ କଳା ଶ୍ୟାମ ଗୃଣ ଦସ୍ତ ଦେବ ।
ଧବଳ ଲେଖନ ଧର ଶିଷ୍ୟଙ୍କୁ କହିବ । ୯୧ ।
ଓଁମନ୍ତ୍ରର ଅଧସ୍ଥଗେ ହକାର ଅଛଇ ।
ଓଁମନ୍ତ୍ର ମଣ୍ଡଳ ଗୋଟି ଶ୍ୟାମ ବୋଲି କହି । ୯୨ ।
ଅର୍ଦ୍ଧଚନ୍ଦ୍ର ରାମ ବୀଜ ଅଛଇଟି ପୁଣ ।
ବନ୍ଦୁ କୃଷ୍ଣ ଅଛଇଟି ସାଧୁମାନେ ଗୁଣ । ୯୩ ।
ଅର୍ଦ୍ଧ ରାଧା ବନ୍ଦୁ କୃଷ୍ଣ ବୋଲି କର କହି ।
ଓଁମନ୍ତ୍ରର ଆଦ୍ୟ ସ୍ଥଗ ପ୍ରକୃତି ହୋଇ । ୯୪ ।
ଉକାରକୁ ପ୍ରସ୍ତ ବୋଲି କର ଜାଣ ପୁଣ ।
ଏଣୁ ସେ ଅର୍ଦ୍ଧର ମାଇ ମନ୍ତ୍ର ଅଛି ଶୁଣ । ୯୫ ।
ଅସ୍ତ୍ରରେ ସେ ନନ୍ଦ ବୋଲି କର ସାହା କହି ।
ବଷ୍ଣୁ ଶ୍ୟାମ ବଇଷ୍ଣବ ଏ ମଠରେ ରହି । ୯୬ ।
ନାରାୟଣ ସ୍ୱାହା ବୋଲି ମନ୍ତ୍ର ସୁମରଣ ।
ବଷ୍ଣୁ ଶ୍ୟାମ ବଇଷ୍ଣବ ଏମନ୍ତ ସେ ଜାଣ । ୯୭ ।
ସାମବେଦ ଚଇତନ ମଠ ସେ ଅଛଇ ।
ରାମାନନ୍ଦ ବଇଷ୍ଣବ ଏ ମଠେ ଅଛଇ । ୯୮ ।
ଖୋଲାଇ କୃଷ୍ଣାସ୍ତ ବୀଜ ମନ୍ତ୍ର ସେ ଧଇଲେ ।
ରାମାନନ୍ଦ ବଇଷ୍ଣବ ଏ ମଠ ଗୁଣିଲେ । ୯୯ ।

---

୯୬—୧ ଅସ୍ତ୍ରବେଦ (ଖ) ;

ଯଜୁର୍ବେଦ ସ୍ୱରୂପ ଯେ ମଠ ବୋଲି ଜାଣ ।
ମାଧ୍ୱାଚାର୍ଯ୍ୟ ବଇଷ୍ଣବ ଏ ମଠେ ପ୍ରମାଣ । ୧୦୦ ।
ଅଭି କାଳି ନାରାୟଣ ସୁମରଣ କର ।
ମାଧ୍ୱାଚାର୍ଯ୍ୟ ବଇଷ୍ଣବ ଏମନ୍ତ ଶବ୍ଦର । ୧୦୧ ।
ଋକବେଦ ପ୍ରକାଶ ଯେ ମଠ ପଞ୍ଚମାଣ ।
ନିମାନନ୍ଦ ବଇଷ୍ଣବ ଏଥିରେ ଯେ ଜାଣ । ୧୦୨ ।
ଅଭି କାଳହିଁ ସ୍ୱାହା ରାମ ନାମ ବୋଲେ ।
ମନ୍ତ୍ରର ବୀଜମାନ ଏମନ୍ତ ଯେ କଲେ । ୧୦୩ ।
ନାରାୟଣ ତାରକ ଯେ ଗୋପାଳ ମନ୍ତ୍ରରେ ।
ହରେ ଯେ ଷୋଡ଼ଶ ବର୍ଷ ଚାରି ପରକାରେ । ୧୦୪ ।
ଚାରି ମଠ ଚାରି ମନ୍ତ୍ର ବିଚାରି ଭଜିଲେ ।
ରାମାନନ୍ଦ ବିଷ୍ଣୁସ୍ୱାମୀ ମାଧ୍ୱାଚାର୍ଯ୍ୟ କଲେ । ୧୦୫ ।
ନିମାନନ୍ଦ ବୋଲିଣ ଯେ ଚାରି ପୁଣ କହି ।
ଚାରି ଯେ ସମ୍ପ୍ରଦା ବର୍ଷ ଚାରି ମଠ ହୋଇ । ୧୦୬ ।
ସତ୍ୟଯୁଗେ ନାରାୟଣ ମନ୍ତ୍ର ଅଟେ ସାର ।
ତ୍ରେତାୟା ଯୁଗରେ ସାର ତାରକ ମନ୍ତ୍ରର । ୧୦୭ ।
ଦ୍ୱାପର ଯୁଗରେ ସାର ଗୋପାଳ ମନ୍ତ୍ରହିଁ ।
କଳିଯୁଗେ ଷୋଡ଼ଶ ଯେ ମନ୍ତ୍ରସାର କହି । ୧୦୮ ।
ଆଦ ଯେ ଅନନ୍ତ ଯୁଗେ ଏକାକ୍ଷର ସାର ।
ଏକାକ୍ଷରୁ ଷଡ଼ୁ ଅଛୁ ଏ ପାଞ୍ଚ ଅକ୍ଷର । ୧୦୯ ।
ସତ୍ୟ କଳିଯୁଗେ ସାର ସମାଧି ଭଜନ ।
ଶୂନ୍ୟାକ୍ଷର ଷଟଳ ଯେ ସମାଧିର ସ୍ଥାନ । ୧୧୦ ।
ଅକ୍ଷର ଭଜିବେ ଯେ ସତ୍ୟ କଳି ବେଳେ ।
ଚାରି ପଥ ମିଳି ତୋଳ ଭାଙ୍ଗିବ ଯେ ଠୂଳେ । ୧୧୧ ।

---

୧୦୧—୧ ଓଁ କ୍ଲୀଁ (ଖ) ;

ଅଣ ଯେ ଅନନ୍ତ ପଥ ହୋଇବ ଉଆଣ ।
ଅହଲ୍ୟା ବାଦ ନ ଥିବ ସକଳ ହୃଦେଶ । ୧୧୨ ।
ଜାଳାନ୍ଧ୍ର ଭୁଅ ଭେଦବେ ସମାଧିରେ ଦୃଢ଼ ।
ଛାୟା ଜ୍ୟୋତି ଆଶ୍ରସିବେ ସାଧିବେ ଅବାଢ଼ । ୧୧୩ ।
ଋଗବେଦ ଅଷ୍ଟାଦଶ ପୁରାଣ ବଖାଣି ।
ନବଖଣ୍ଡ ବ୍ୟାକରଣ ଗୀତା ଗ୍ରନ୍ଥ ପୁଣି । ୧୧୪ ।
ଛଡ଼ ଶାସ୍ତ୍ର ଭାଗବତ ସବଘରେ ଥିବ ।
ଚଉତିଶା ଚଉପଦୀ ସନ୍ତମାନ ହେବ । ୧୧୫ ।
ନବତାଳ ଛତିଶ ଯେ ରାଗ ପରକାଶ ।
ମାଦଳ ଖୋଳ ଯେ ତାଳ କର୍ତ୍ତାଳର ରସ । ୧୧୬ ।
ଅମୃତି ଶାରଙ୍ଗୀ ବୀଣା ଡମ୍ଫ ଯେ ଖର୍ଜଣି ।
ଶଙ୍ଖ ସିଂଘା ମୁରଲୀ ଯେ ବେଣୁବାଦ୍ୟ ପୁର । ୧୧୭ ।
ତରାଶ ତୂଳ ଝାଲେଶି ଝାଇଆ ଭ୍ରମର ।
ଅଭସ୍ତୁ କଳଙ୍କି ବେଳେ ଭକ୍ତଙ୍କ ବନ୍ଧାର । ୧୧୮ ।
ଓଡ଼ରାଷ୍ଟ୍ର ମଧ୍ୟେ ହର କରବେ ବହାର ।
ପରମ ସୁଖ ଲଭିବେ ଭଗତ ସଂସାର । ୧୧୯ ।
ହନୁଆନ ପବନ ମଧୁ ବାଲକ ଅନନ୍ତ ।
ଯାଦବ ସୁଦାମ ବସ୍ତ୍ର ଗୋବିନ୍ଦ ଶୁଣ ତ । ୧୨୦ ।
ମୁକୁନ୍ଦ ମଥିଶ୍ରୀ ବୃନ୍ଦାବନ ଘେନ ଚନ୍ଦ୍ର ।
ଭୃଙ୍ଗେ ବାର ଗୋପଯୁତ ରହାସରେ ରତ । ୧୨୧ ।
କଚ୍ଛପନ ପୃଥ୍ୱୀ ଫେର ଅନ୍ୟ ଅଙ୍ଗ ଧର ।
ଚଉମାତ୍ରା ଦେଇ କର ତ କାର ସୁମର । ୧୨୨ ।
ନବ ମାତ୍ରା ଦେଇକରି ଲ କାର ଗୁଣିବ ।
ଚ କାରରେ ନ କାର ଯେ ଅକ୍ଷର ବସିବ । ୧୨୩ ।
ଏ ଅଙ୍ଗ ସଙ୍ଗରେ ପୁଣ ଜନମ ହୋଇବ ।
ଆଠ ମାତ୍ରା ଦେଇ ପୁଣ କ କାର ଧରିବ । ୧୨୪ ।

ସ କାର ସଙ୍ଗତେ ପୁଣ ବସିବ ବ କାର।
ସେ ଅଙ୍କ ସଙ୍ଗତେ ପୁଣ କରିବ ବିଦ୍ୱାର । ୧୨୫।
ଛନ୍ନ ଅଙ୍କ ଧରିବାକୁ ଠାକୁର କରୁଣା ।
ଅନନ୍ତ ଆଳରେ ଯାହା ପାଇଅଛୁଁ ଶୁଣା । ୧୨୬ ।
ଆଦଶକ୍ତି ସରସ୍ୱତୀ ହୋଇଛନ୍ତି ସାକ୍ଷୀ ।
ହନୁମନ୍ତ ଗରୁଡ଼ ଲୋଚନେ ଛନ୍ତି ଦେଖି । ୧୨୭।
ଶିଶୁ ଯେ ଅଚ୍ୟୁତ ଯଶୋବନ୍ତ ବଳରାମ ।
ଶୁ ଦ୍ରକୁଳ ହୁଙ୍କାରବୁ ଅମ୍ଭେ ବ୍ରତ ଜନ । ୧୨୮ ।
ଚବିଶ ଗୋପାଳ ତୁମ୍ଭେ ଗୋପକୁଳ ତାର ।
ତୁମ୍ଭ ଆମ୍ଭ କଳିକାଳେ ଭେଦ ନାହିଁ ଆର । ୧୨୯ ।
ପାମର ଅଚ୍ୟୁତ ଚଇ ହତ୍‌ପଲାର ତୀର ।
ଜନମ ଲଭିଲି ମୁହିଁ ଛଳକଣା ପୁର । ୧୩୦ ।
ଜମ୍ଭେ ଗ୍ରାମେ ମହାନଦୀ ତୀରେ ତୁମ୍ଭେ ଜାତ ।
ଜଙ୍ଗରବାସିନୀ ତୁମ୍ଭ ସ୍ୱଗରେ ଉଦ୍ଦେତ । ୧୩୧ ।
ଆଦିଶକ୍ତି ରହିଲେ ଯେ ଆମ୍ଭର ସ୍ୱଗର ।
ହନୁ ଯେ ଗରୁଡ଼ ଗ୍ରାମ ଭ୍ରଅ ଆଶ୍ରେ କର । ୧୩୨ ।
ଅତ ଏ ଗୁପ୍ତ ଗୀତା ଗୁରୁଙ୍କ ଭଣ୍ଡାର ।
କୃପା କଲେ ଶ୍ରୀଗୁରୁ ଯେ ଅଚ୍ୟୁତ ପ ମର । ୧୩୩ ।
ଅତ ଗୋପ୍ୟ ଅତ ଗୋପ୍ୟ ନ କହିବ କାହିଁ ।
ବରଷ ବାର ସେବିଲେ ଶିଷ୍ୟଙ୍କୁ ଯେ କହି । ୧୩୪ ।
ଚରଣାମୃତ ଅବଶେଷ ଯେହୁ ସେ ପାଇବ ।
ସାଷ୍ଟାଙ୍ଗ ପଞ୍ଚାଙ୍ଗ ଦଣ୍ଡବତ ଯେ ହୋଇବ । ୧୩୫ ।
ସେ ଜନ ଆଗରେ ଏହୁ ପାଠକୁ ପଢିଲେ ।
ଅନ୍ନବସ୍ତ୍ର ସୁଖଭୋଗ ମିଳଇ ଯେ ଭଲେ । ୧୩୬ ।
ଦାମ୍ଭିକ ମିଛୁଆ ପରରମଣୀ ହରଣ ।
ମଦ୍ୟ ମାଂସ ମାଦକ ଭକ୍ଷଇ ଯେହୁ ପୁଣ । ୧୩୭ ।

ତୁରଙ୍ଗ ଗଜ ଚଢ଼ଇ ଯେବଣ ମନୁଷ୍ୟ ।
ଚର୍ମ ପାଦେ ମାଡ଼ଇ ଯେ ଯେବଣ ପୁରୁଷ । ୯୮ ।
ସେ ଜନ ଆଗରେ ଏହୁ ପାଠ ନ କହିବ ।
ପାମର ଅଚ୍ୟୁତ କଥା ମନରେ ରଖିବ । ୯୯ ।
ଏହୁ ଗୁରୁଭକ୍ତିଗୀତା ଭକତର ଧନ ।
ଭକତମାନେ କରିବ କରଣ ଯତନ । ୧୦୦ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ସପ୍ତବିଂଶ ଛାନ୍ଦ ।



## ଚତୁସ୍ତ୍ରିଂଶ ଛାନ୍ଦ

କରୁଣା କରିବା ଗୁରୁ କଥା ଏକ ଶୁଣ
ଶ୍ରୀହରି ମନ୍ଦର କର୍ମା ଲଲାଟରେ ପୁଣ ।
ଶୁଣ ଆହେ ଗୋପସୁତ ଏଥିର ବିସ୍ତର
ଭଗତର ଲକ୍ଷ ଏହୁ ସଂସାରରେ ସାର । ୨ ।
ଚନ୍ଦନାଗ ଧରିତ ଯେ ପୁଣ ଚନ୍ଦନ କର ।
ଛଡ଼କୋଣ ବସାଇବ ମନ୍ତ୍ରକୁ ସୁମର । ୩ ।
ଆଦ୍ୟର ଦ୍ୱିଗୁଣ ପରେ ସ୍ୱାରଞ୍ଜି ବସିବ ।
କ୍ଲୁ ଯେ ଅକ୍ଷର ଆର ପାଶରେ ଥୋଇବ । ୪ ।
ଚଉଁ ଯେ ଅକ୍ଷର ତଥି କନ୍ଦରେ ବସିବ ।
କୃଷ୍ଣ ବେଦ ଅକ୍ଷର ଯେ ଦ୍ୱିସ୍ୱେ ଥୋଇବ । ୫ ।
ହ୍ରଂ ଯେ ଅକ୍ଷର ପୁଣ ଆର କୋଣେ ବସେ ।
ଛଡ଼-କ୍ଷର ବସିଲେ ଯେ ଯନ୍ତ୍ର ପରକାଶେ । ୬ ।
ଏ ମନ୍ତ୍ର ଆପିଣ ଯତ୍ନେ ବସ୍ତ୍ର ଏକ ଦେବ ।
ପାଞ୍ଚ ଯେ ଆଙ୍ଗୁଳ ରୂପା ଖଣ୍ଡିକା କରିବ । ୭ ।
ସେ ଖଣ୍ଡିକା ଗୋଟିରେ ଯେ ଯନ୍ତ୍ରକୁ ଲେଖିଣ ।
ବିବିଧ ପଦାର୍ଥ ଭୋଗ ଦେବ ସେଠାରେଣ । ୮ ।
ତନ୍ତ୍ରରେ ବସିବ ପୁଣ ମନ୍ତ୍ରରେ ବିସ୍ତର ।
ହ୍ରାଉଁ ବସିବ ପୁଣ ଓଁ କାରକୁ ଧର । ୯ ।
କ୍ଲୁ ଚନ୍ଦ୍ରି ବସିବ ପୁଣ ଅର୍ଦ୍ଧାଙ୍ଗ ମଧ୍ୟରେ ।
କୃଷ୍ଣ ହୁଁ ବସିବ ପୁଣ ବନ୍ଧ ଯେ ଭିତରେ । ୧୦ ।
ଏମନ୍ତ୍ରେଣ ଯନ୍ତ୍ର ମନ୍ତ୍ର ଶିଷ୍ୟକୁ ବୁଝାଇ ।
ତେବେ ସିନା ଶିଷ୍ୟର ଯେ ସଂଶୟ ହରଇ । ୧୧ ।

---

୭—୨ ଛଡ଼କୋଣ (କ),

ଦ୍ୱାଦଶ ତିଳକ ବସେ ଦ୍ୱାଦଶ ଯେ ସ୍ଥାନ ।
ଶୁଣାଇ କହୁବା ଏବେ ସ୍ଥାନର ବିଧାନ । ୧୨ ।
ଅ ଆ ଅଂ ଅଃ ସ୍ୱର ଅକ୍ଷର ବ୍ରହ୍ମରନ୍ଧ୍ରେ ବସେ ।
ସିଦ୍ଧି ବେଦ ଅକ୍ଷର ଯେ ଚକ୍ଷୁରେ ପ୍ରକାଶେ । ୧୩ ।
ରଷ୍ଟ ବେଦ ଅକ୍ଷର ଯେ ଓଷ୍ଠରେ ବସିବ ।
ଇ ଈ ବେଦ ଅକ୍ଷର ଯେ ଦନ୍ତସ୍ଥାନେ ହେବ । ୧୪ ।
ଓ ଔ ବେଦାକ୍ଷର ଲଲାଟ ସ୍ଥାନର ।
ଋ ୠ ବେଦାକ୍ଷର ବାମ ଯେ ଚକ୍ଷୁର । ୧୫ ।
ଌ ୡ ବେଦାକ୍ଷର ଶ୍ରବଣରେ ଥୋଇ ।
ଏ ଐ ବେଦାକ୍ଷର କଣ୍ଠରେ ବସଇ । ୧୬ ।
ଉ ଊ ପେକ୍ଷି ନରେ ବକ୍ଷଣ ଗୁହ୍ୟ ।
ପାଣଲେ ସୁଜନେ ଜନେ ଗୁରୁମୁଖେ ଖୋଜ । ୧୭ ।
କଖଗଘ ସ୍ୱରାକ୍ଷର ଡାହାଣ ଭୁଜର ।
ଚ ଛ ଜ ଝ ଞ ପାଞ୍ଚ ବାମ ଯେ ଭୁଜର । ୧୮ ।
ଟ ଠ ଡ ଢ ଣ ବୋଲି ପାଞ୍ଚ ଯେ ଅକ୍ଷର ।
ପାଦମୂଳେ କଟିସ୍ଥାନେ ଦକ୍ଷିଣ ଧର । ୧୯ ।
ତ ଥ ଦ ଧ ନ ପାଞ୍ଚ ଅକ୍ଷର ଯେ କହୁ ।
ବାମପାଦ ଉପରେ ଯେ କଟିସ୍ଥାନେ ରହୁ । ୨୦ ।
ପ ଫ ବ ଭ ମ ଯେ ପାଞ୍ଚାକ୍ଷର ନାଭିରେଣ ।
ସୁଜନ ଜନ ଜାଣନ୍ତି ସନ୍ଧିଭେଦ ପୁଣ । ୨୧ ।

---

୧୩—୧ ସ୍ୱର ବ୍ରହ୍ମରନ୍ଧ୍ରେ ଯେ ବସେ (ଖ);
୧୬—୧ ଉ ଊ ଯେ ଦୁଇଗୋଟି ନରେ (କ);
୧୮—୧ କଅ ଖଅ ଗଅ ଘଅ ଙ ଡାହାଣ (ଖ);
୧୯—୧ ଟ ଠ ଡ ଢ ଣ ପାଞ୍ଚାକ୍ଷର ଦକ୍ଷିଣ କଟୀର (ଖ);
୨୧—୨ ଏଥ ଭେଦ (କ);

ମ ଯ ର ଲ ଚତୁରକ୍ଷର ଲିଙ୍ଗରେ ଯେ ବସେ ।
ବ ଶ ଷ ସ ଚତୁରକ୍ଷର ଗୁହ୍ୟରେ ପ୍ରକାଶେ । ୧୨ ।
ହଂ କ୍ଷଂ ବେନକ୍ଷର ତାଳୁକା ଉପର ।
ଦ୍ୱାଦଶର ଆନ ଏଥୁ ଅଟଇ ବିସ୍ତର । ୧୩ ।
ତାଳୁକା ଲଲାଟ ବ୍ରହ୍ମରନ୍ଧ୍ର ତିନ ସ୍ଥାନ ।
ଚକ୍ଷୁ ଓଷ୍ଠ ଶ୍ରବଣ ଯେ ଦନ୍ତ ଗୁହ୍ୟ ପୁଣ । ୧୪ ।
କଣ୍ଠ ହୃଦ ଭୁଜ ଲିଙ୍ଗ ଅଟଇ ଏ ଗୁଣ ।
ଲିଙ୍ଗସ୍ଥାନ ବଢ଼ିଲେ ଦ୍ୱାଦଶ ହେବ ସଶ । ୧୫ ।
ଏମନ୍ତ ସ୍ଥାନକୁ ଯେଉଁ ସାଧୁ ବନ୍ଧପାରେ ।
ଯମଦଣ୍ଡ ନ ଲାଗଇ ଏ ଭବ ସଂସାରେ । ୧୬ ।
ଅ ଆ ବେନକ୍ଷର ବେନ ରେଖା କନ୍ଧ ।
ଅ ଯେ ଅକ୍ଷର ପୁଣ କଳନା ଅଟଇ । ୧୭ ।
ଅଁ ଯେ ଅକ୍ଷର ପୁଣ ବିନ୍ଦୁ ବୋଲି ଜାଣ ।
ବ୍ରହ୍ମରନ୍ଧ୍ରେ ଏ ଭେଦ ଯେ ବସିବ ପୁଣ । ୧୮ ।
ହଁ କ୍ଷଁ ବେନକ୍ଷର ଏକବିନ୍ଦୁ ହୋଏ ।
ତାଳୁକା ଉପରେ ପୁଣ ଏ ବିନ୍ଦୁ ଯେ ରହେ । ୧୯ ।
ଇଈ ଋ ୠ ଓ ଔ ଅକ୍ଷର ଯେ ଛଡ଼ ।
ଲଲାଟ ଚକ୍ଷୁ ଉପରେ ଏ ଛଡ଼ଙ୍କ ଯୋଡ଼ । ୨୦ ।
ଉଷ୍ମ ବେନ ଅକ୍ଷର ଯେ ଓଷ୍ଠରେ ବିସ୍ତର ।
କଣ୍ଠର ଉପରେ ଏଥୁ କଣ୍ଠେନ୍ଦ୍ର ଘର । ୨୧ ।
ବେନ ଶ୍ରବଣକୁ ଌ ୡ ବେନକ୍ଷର ବସେ ।
ଏ ଐ ବୋଲି ବେନ କର୍ଣ୍ଣେ ପରକାଶେ । ୨୨ ।

---

୧୫—୧ ବଢ଼ିଲେ (କ);
୧୬—୧ ବନ୍ଧପାରେ (କ); ୧୭—୨ ଆ ଯେ (ଖ);
୧୮—୧ ଅଁ ଯେ (ଖ);

ଏମନ୍ତ ତିଳକ ସଦା କାଳରେ ଅଛଇ ।
ସେ ଦେବତା ଚିହ୍ନିଲେ ଯେ ବେଶ କରୁଥାଇ । ୩୩ ।
ଗୋରଚନା ଚନ୍ଦନ ଯେ ଧବଳ ମୃତ୍ତିକା ।
ତୁଳସୀ ମୂଳ ମୃତ୍ତିକା ଗଙ୍ଗା ଯେ ପାଦୁକା । ୩୪ ।
ଏ ବିଧିରେ ଯେ ଅବା ମିଶ୍ରିବ ଭାଗ୍ୟଫଳେ ।
ଦ୍ୱାଦଶ ତିଳକ ବିଧି ଲେଖି ଦେହସ୍ଥଳେ । ୩୫ ।
ଏମନ୍ତ ଲକ୍ଷ ଘେନିଲେ ସଂସାରରେ ସାର ।
ପଙ୍କରୁ ଜନ୍ମଇ ପଦ୍ମପୁଷ୍ପ ଯେ ସୁନ୍ଦର । ୩୬ ।
ଦଧିରୁ ସାର ଅଟଇ ଘୃତ ଯେ ଯେମନ୍ତ ।
ଅଗାଡ଼ିରୁ ଧାନ ହୁଏ ସାର ଯେଉଁ ମତ । ୩୭ ।
ସଂସାରରେ ଥାଇ ଭକ୍ତ ତେମନ୍ତ ଅଟଇ ।
ମଲେଣ ସେ ଜନ ପୁଣ କୃଷ୍ଣପାଦ ପାଇ । ୩୮ ।
ଦ୍ୱାଦଶ ତିଳକ ଛଡ଼ ବିନ୍ଦୁ ଅଟେ ପୁଣ ।
ବିନ୍ଦୁ ଭେଦ କହିବା ହେ ଗୋପସୁତ ଶୁଣ । ୩୯ ।
ତିଳକ ହସ୍ତରେ ଘୋଷ ଯତନ କରିବ ।
ନାସ୍ତାରନ୍ଧ୍ର ଥାନ ଚିହ୍ନି ଏକ ବିନ୍ଦୁ ଦେବ । ୪୦ ।
ଅଣାକାର ଘରେ ଯେଉଁ ବିନ୍ଦୁ ଗୋଟି ଅଛୁ ।
ସେ ସ୍ଥାନ ଜାଣିଲେ ସିନା ଦାସରେ ଲେଖିଛୁ । ୪୧ ।
ହ କାର ମଧ୍ୟରେ ପୁଣ ବିନ୍ଦୁ ଏକ ରହେ ।
ସେ ସ୍ଥାନ ଚିହ୍ନିଲେ ସିନା ସର୍ବ ପାପ ଦହେ । ୪୨ ।
ଏଣୁଟି ଲଲାଟପରେ ଏକ ବିନ୍ଦୁ ଦେଇ ।
ଏ ଭେଦ ଜାଣିଲେ ସିନା ଦାସ ବୋଲି କହି । ୪୩ ।
ଓଁ କାରେ ଅର୍ଦ୍ଧାଂଶ ବେଦ ଆଠ ଯେ ଅକ୍ଷର ।
ଏ ପରେ ଓଁ କାର ବିନ୍ଦୁ ଅଟଇଟି ସାର । ୪୪ ।
ଶ୍ରୀହରିନାମରେ ତେବେ ଦାସପଣେ ପଣେ ।
ଏହା ଚିହ୍ନି ନ ଥିଲେ ସେ ଶ୍ରେଷ୍ଠ ପଣେ ଦାସେ । ୪୫ ।

ଶୁଣ ଆହେ ଉଦ୍ଧବ ସ୍ୱଧାସଞ୍ଜ୍ଞ୍ୟ ମୋର ।
ଷୋଳ ଶେଷେ ଏକବିନ୍ଦୁ କଣ୍ଠାରେ ଧର । ୪୬ ।
ହୃଦରେ ଦ୍ୱାଦଶ ଶେଷେ ଏକ ବିନ୍ଦୁ ରହେ ।
ଏ ଭେଦ ଜାଣିରେ ସିନା ଦାସପଣ ଶୋହେ । ୪୭ ।
ନାଭିମୂଳେ ଦଶ ଶେଷେ ଏକ ବିନ୍ଦୁ ଜାଣ ।
ଏ ଭେଦ ଜାଣିଲେ ଦାସପଣରେ ପ୍ରମାଣ । ୪୮ ।
ଅନାହତମଣ୍ଡଳେ ଏକ ବିନ୍ଦୁ ଯେ ଅଟଇ ।
ଛଡ଼ ବିନ୍ଦୁ ରାମଚନ୍ଦ୍ର କହିଲୁଁ ବୁଝାଇ । ୪୯ ।
ଛଡ଼ ବିନ୍ଦୁ ପ୍ରକଟ ଯେ ବିନ୍ଦୁ ଏ ରୂପତ ।
ଯଦୁବଂଶ ଭଗତ ଜାଣନ୍ତି ତହିଁ ତତ୍ତ୍ୱ । ୫୦ ।
ଶିରପରେ ଭୁଲିଲେ ଅନାହ ବିନ୍ଦୁ କହି ।
ବ୍ରହ୍ମ ଅଣ୍ଡସ୍ଥ ଯେ ବିନ୍ଦୁ ତାଳୁକା ବସଇ । ୫୧ ।
ଭ୍ରୂରୁ ମଧ୍ୟେ କାଳଭୈ ବିନ୍ଦୁ ସୁମରଣ କର ।
କଣ୍ଠରେ ଯେ ଆତପତ ବିନ୍ଦୁକୁ ସୁମର । ୫୨ ।
ଠଣ ଯେ ସୁନ୍ଦର ବିନ୍ଦୁ ହୃଦରେ ବସଇ ।
ନାଭିରେ ଝଲକ ଫଣ ବିନ୍ଦୁ ପୁଣ ଦେଇ । ୫୩ ।
ଛଡ଼ ବିନ୍ଦୁ ଏମନ୍ତେଣ ହୋଇଛି ପ୍ରକାଶ ।
ବିନା ଗୁରୁ ନ କହିଲେ ନ ଫିଟେ ସନ୍ଦେଶ । ୫୪ ।
ପଞ୍ଚମାତ୍ରା ବିନ୍ଦୁ ପୁଣ କସ୍ତାରଣ କରେ ।
ସେ ସ୍ଥାନକୁ ହସ୍ତ ଅଙ୍ଗ ଯାଇନ ନ ପାରେ । ୫୫ ।
ଗୁରୁଙ୍କ କରୁଣା ପଣେ ସେ ବିନ୍ଦୁ ଚିହ୍ନଇ ।
ବିନ୍ଦୁ ଭେଦ ନ ଚିହ୍ନିଲେ ବୈଷ୍ଣବ ନୁହଇ । ୫୬ ।
ମୁକୁନ୍ଦ ଅନନ୍ତ ବସ୍ତ୍ର ଯାଦବ ହେ ଶୁଣ ।
ଏହୁ ଗୁରୁଭକ୍ତ ଗୀତା ରୂପତତ୍ତ୍ୱ ପୂର୍ଣ୍ଣ । ୫୭ ।

---

୪୬—୨ ଷୋଳ ହସେ (କ); ୫୨—୧ କାଳଭୈ ବୀଜ (ଖ);
୫୬—୨ ଭେଦ ନ ଜାଣିଲେ ବୈଷ୍ଣବ ନ କହି (ଗ);

ଧନ ଲୋଭେ ଏ ଜନ୍ମେ ଯେମନ୍ତ ପୁଣ କହେ ।
ବଡ଼ପଣ ହୋଇବ ବୋଲିଣ ବକହୋଏ । ୬୮ ।
ଜନ୍ମ ଅନ୍ତେ ଶୃଗାଳ ଯେ ଶୂକର ହୁଅଇ ।
ଗୋପ୍ୟ ଗୋପ୍ୟ ମହାଗୋପ୍ୟ ନ କହିବ କାହିଁ । ୬୯ ।
ଗ୍ରାମ ଭୂଥ ଧର୍ମ୍ମ, ବସ୍ତ୍ର, ବନ୍ଧ ପାଷଣ୍ଡଜଣ ।
ସ୍ତୁତ ଯେବେ ବାରେକ ଯେ କହିବା ବଚନ । ୭୦ ।
କରୂପେ ସଂସାରଜନ ପାଇବେ କାରଣ ।
ଏଥକୁ ବଚନ ଗୁରୁ କହିବା ପ୍ରମାଣ । ୭୧ ।
ଦମ୍ଭପଣ ଛାଡ଼ିଣ ଯେ ଶିର ନୁଆଁଇବ ।
ସଜ୍ଜନ ଅଗରେ ପାଠ ଉତ୍ତମ ଭଣିବ । ୭୨ ।
ଶିଷ୍ୟଆଗେ କହିଲେ ଯେ କଛି ଦୋଷ ନାହିଁ ।
ଶିକ୍ଷାଗୁରୁ କରିବ ଯେ ତାଙ୍କୁ ଦେବ କହି । ୭୩ ।
ଜାଲନ୍ଧ୍ର ଭେଦିବା ବାଟ ଅଟଇ ଗହନ ।
ପୂର୍ବଭାଗ୍ୟ ଥିଲେ ସିନା ସମାଧିରେ ମନ । ୭୪ ।
ଗ୍ରନ୍ଥିଭେଦ ସର୍ବଜନେ ନୁହଇ ପ୍ରାପତ ।
ଅବାଡ଼ ପ୍ରଥମା ସାଧି ନୋହେ ସର୍ବ ଚିତ୍ତ । ୭୫ ।
ସର୍ପଫେଣା ରଖିବାର ବଡ଼ ଯେ କଠୋର ।
ପାଦପଦ୍ମ ଚନ୍ଦ୍ର ସାଧୁ ଥିବ ନିରନ୍ତର । ୭୬ ।
ଚନ୍ଦନ ତିଳକ ବେଶ ହରିଙ୍କି କରିବ ।
ଶ୍ରୀହରି ମନ୍ଦିର ନିରନ୍ତର ସେବା ଥିବ । ୭୭ ।
ମାଟି ଅଙ୍ଗେ ବୋଲିଲେଟି ନ ବୋଲିବେ ଦାସ ।
ବ୍ୟାଘ୍ର ଚର୍ମ୍ମ ପଶୁ ଜନ୍ତୁଠାରେ ପରବେଶ । ୭୮ ।
ଛାଲ ଯେତେ ପଶୁ ଯଦି ବ୍ୟାଘ୍ର ପାଲଟିବ ।
ବିବେକଗୋଷ୍ଠିରେ ଏହୁ ସନ୍ଧି ପଚାରିବ । ୭୯ ।
ବିଷ୍ଣୁ ଦାସ ଶୁଣ ଆହେ ବିବେକ ବିସ୍ତର ।
ନାସା ଆଦ୍ୟ ଅଟଇ ଯେ ଅର୍ଦ୍ଧଅକ୍ଷର ଠାର । ୮୦ ।

ନାସା ଆଦ୍ୟ କେଶ ପର୍ଯ୍ୟନ୍ତେ ଦଣ୍ଡ ପ୍ରାୟେ ।
ବାମଭାଗେ ସଦାଶିବ ରେଖା ଗୋଟି ହୋଏ । ୭୨ ।
ଡାହାଣ ଯେ ରେଖା ଗୋଟି ବ୍ରହ୍ମା ବୋଲି କହ ।
ଅର୍ଦ୍ଧମାତ୍ରା ମଧ୍ୟଭାଗେ ରାଧିକା ଅଛଇ । ୭୨ ।
ଚନ୍ଦ୍ର କୃଷ୍ଣ ବୋଲି ଜାଣ ଶ୍ରୀହରି ମନ୍ଦର ।
ନାସା କଲି ଗରୁଡ଼ ଯେ ଦେବତା ସୁନ୍ଦର । ୭୩ ।
କର୍ଣ୍ଣ ଆନେ ସୂର୍ଯ୍ୟ ଯେ ଦେବତା ବସେ ପୁଣ ।
ଚକ୍ଷୁସ୍ଥାନେ ଚନ୍ଦ୍ର ଯେ ଦେବତା ବସେ ଜାଣ । ୭୪ ।
ତାରାପନ୍ତି କର୍ଣ୍ଣମୂଳେ କଣ୍ଠପରେ ବସେ ।
ଈଶ୍ୱର ପାର୍ବତୀ କଣ୍ଠକଣ୍ଠରେ ପ୍ରକାଶେ । ୭୫ ।
ବାମବାହୁ କମଳା ଦକ୍ଷିଣେ ସରସ୍ୱତୀ ।
ଲକ୍ଷ୍ମୀ ନାରାୟଣ ହୃଦଭାଗରେ ବସନ୍ତି । ୭୬ ।
ନାଭିରେଖା ଦ୍ୱୟ ବାହୁ ଦଶ ଅବତାର ।
ମତ୍ସ୍ୟ କୂର୍ମ ବରାହ ବାମନ ବୁଣ ସୁର । ୭୭ ।
ଦକ୍ଷିଣ ବାହୁରେ ଏହୁ ସୁର ରୂପ ରହେ ।
ନୃସିଂହ ଯେ ପର୍ଶୁରାମ ରାମ କୃଷ୍ଣ ହୋଏ । ୭୮ ।
ସାବିତ୍ରୀଙ୍କୁ ଘେନ ପୁଣ ବ୍ରହ୍ମା ତହିଁ ରହେ ।
ଏମନ୍ତେଣ ଦୁଇ ବାହୁ ନାଭି ରେଖା ହୋଏ । ୭୯ ।
ବାମ ଦକ୍ଷିଣରେ ସୁର ଦଶ ଅବତାର ।
କାମଦେବ କାମାକ୍ଷୀ ଯେ ଲିଙ୍ଗର ବିହାର । ୮୦ ।
ଚତୁର୍ଦ୍ଦଳେ ଶର୍ଙ୍ଖିନୀ ଯେ ଗଣେଶ ଘେନିଣ ।
ଆଦ୍ୟମୂଳ ଦେବତାର ଅଛଇ ଯେ ସ୍ଥାନ । ୮୧ ।
ଏମନ୍ତେଣ ଆଦ୍ୟମାତା ବକ୍ଷୁର ଏ ସ୍ଥଳ ।
ଏ ଭେଦ ଭେଦଣ ପଣ ଗୋଲୋକ ମଣ୍ଡଳ । ୮୨ ।

---

୭୭—୧ ରେଖାଦ୍ୱୟ ବାହୁ (କ); ଦକ୍ଷିଣ ବାହୁରେ (କ),
୭୯—୧ କଳଙ୍କି ରୂପକୁ ଘେନ (କ);

ଏ ଭେଦ ଯେ ନ ଜାଣନ୍ତି ସେ ଚଣ୍ଡାଳ ହୋଇ ।
ଅଶୁଦ୍ଧ ଜନ ବୋଲଣ ସେ ପ୍ରାଣୀଙ୍କ ବନ୍ଧୁ । ୮୩ ।
ବିଧବା ଯୁବତୀ ଯେସନ୍ତେ ଅସୁନ୍ଦର ହୋଇ ।
ବିନ୍ଦୁ ଭେଦ ନ ଜାଣିଲେ ତେମନ୍ତ ଅଟଇ । ୮୪ ।
ନାରାୟଣ ବିନ୍ଦୁକୁ ଯେ ନିରନ୍ତରେ ଆସ ।
ଆଦ୍ୟ ଯେ ଅଣଅକ୍ଷର ବିନ୍ଦୁ ଅଟେ ଘୋଷ । ୮୫ ।
କ୍ଷଣେ ଦଣ୍ଡେ ନିମିଷେ ଯେ ଗୁରୁପାଦେ ଚିତ୍ତ ।
ପାମର ଅଚ୍ୟୁତ ହରିମନ୍ଦିରରେ ଭୃତ୍ୟ । ୮୬ ।
ଶ୍ରୀହରି ମନ୍ଦିରେ ପଶି ପାଇଲେଣ ଦାସ ।
ପଶି ନ ପାରିଲେ ଇନ୍ଦ୍ର ଲୋକେ ଉପହାସ । ୮୭ ।
ଇନ୍ଦ୍ରଲୋକେ ଜନମାନେ କରନ୍ତି ତମାଲି ।
ପରଲୋକେ ଜନମାନେ ଦିଅଇ ଶାଳ୍ମଳି । ୮୮ ।
ଏ ଭୂମିରେ ମୁକାର ଯେ ପଣ ସିନା ଯିବ ।
ଯମଆଗ ସ୍ଥାନ ବଡ଼ ସବୁ ସମସ୍ତବ । ୮୯ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ତିନି ଦେବତାଙ୍କ ।
ଜନ୍ମ ଜାତ ବୃଦ୍ଧି ଦଣ୍ଡ ଦିଅଇ ତାହାଙ୍କ । ୯୦ ।
ବିଷ୍ଣୁର ଏ କୂଟ ଲୀଳା କେ କରିବ ଆନ ।
ଶୁଣ ଆହେ ଗୋପସୁତ ପବନ ହୃତଆନ । ୯୧ ।
ବ୍ରହ୍ମହତ୍ୟା ଦୋଷ ରାମ ଅବତାର ପାଇଁ ।
ଶବର ହାତରେ ମୃତ୍ୟୁ ସ୍ୱେଚ୍ଛା ବଧ ପାଇଁ । ୯୨ ।
ବଉଦ୍ଧ କପଟ ମୂର୍ତ୍ତି କଟବୁଦ୍ଧି ଛଳେ ।
ମନୁଷ୍ୟର ଆତଯାତ ଯମ ପାଞ୍ଜି ତଳେ । ୯୩ ।
ଏଣୁକରି କୃଷ୍ଣ ଦଶବେଳ ମୃତ୍ୟୁ ହୋଏ ।
ଭକ୍ତମାନେ ବିଷ୍ଣୁ ସଙ୍ଗ ମୃତ୍ୟୁପଥ ବହେ । ୯୪ ।
ଭକ୍ତଲକ୍ଷ୍ମ ଦେଖି ଯମଦଣ୍ଡ ନ କରଇ ।
ଭଗତ ପଥ ଛାଡ଼ିଲେ ଯମ ଯେ ଦଣ୍ଡଇ । ୯୫ ।

ଜଗତରେ ବାଞ୍ଛା ଫଳୁ ଫଳୁ କରୁଥିବ ।
ହୃଦରେ ଈଶ୍ୱର ସାଧୁମାନଙ୍କୁ ପୁଛିବ । ୯୬ ।
ଶ୍ରୀ ଚରଣ ଗୋସାଇଁ ସେ କୃପାକଲେ ମୋତେ ।
ବୈରାଗ ରୂପରେ ଖେଳୁଥିଲେ ଏ ଜଗତେ । ୯୭ ।
ଦୟାକଲେ ମୋହଠାରେ ମନ୍ତ୍ରଭେଦ ସେତେ ।
ପାମର ଅଚ୍ୟୁତ ଟଳେ ରଖିଲେ ଗୁପତେ । ୯୮ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଚତୁସ୍ତ୍ରିଂଶ ଛାନ୍ଦ ।



## ପଞ୍ଚତ୍ରିଂଶ ଛାନ୍ଦ

ସୁଦକ୍ଷା କର ଶଙ୍କର ଏ ଭବ ସାଗରେ ।
ତୁଳସୀମାଳ ଯେ କଣ୍ଠା ଲମ୍ବିତ ହୃଦରେ । ୧ ।
ଏ ମାଳ ହୃଦରେ ଥିଲେ କିସ ଗତି ହୋଏ ।
କି ରୂପେଣ ଶିଷ୍ୟ ମନ୍ତ୍ର ଯନ୍ତ୍ର ତନ୍ତ୍ର ପାସ୍ୱେ । ୨ ।
ଶୁଣ ଆହେ ଗୋପସୁତ ଏ ବଡ଼ ଗୁପତ ।
ଭଗତଜନ ଜାଣନ୍ତି ଚିହ୍ନିର ତଦନ୍ତ । ୩ ।
ଆଦ୍ୟେ ଲେଖ ସତ୍ୟଯୁଗ ହୋଇଲା ଉଆଣ ।
ଅନନ୍ତ ବିଷ୍ଣୁ ଯେ ଲୀଳା ଭିଆଇଲେ ପୁଣ । ୪ ।
ବିଷ୍ଣୁ ସଙ୍ଗେ ଋଷିଗଣ ଜନମ ହୋଇଲେ ।
ବିଷ୍ଣୁଙ୍କୁ ଯେ ପୂଜାବିଧିମାନ ଭିଆଇଲେ । ୫ ।
ସ୍ତୁତି କଲେକ କୃଷ୍ଣଙ୍କୁ ମାନସିକେ ପୁଣ ।
ଅନ୍ତର୍ଯାମୀନାଥ ଯେ ଜାଣିଲେ ହୃଦସ୍ୱେଣ । ୬ ।
ରହିଲେକ ଦଣ୍ଡେ ଯହୁଁ କଲ୍ପଣା କରେଣ ।
କୃଷ୍ଣ କଲ୍ପଣାରୁ ଜାତ ତ୍ରିପୁର ଯେ ଜାଣ । ୭ ।
ଜାତ ହୋଇ ତ୍ରିପୁର ଯେ କୃଷ୍ଣଙ୍କୁ କହାଇ ।
କେବଣ ଥାନରେ ବାସ କରିବଇଁ ମୁହିଁ । ୮ ।
ଚଉଷଠି ଗୋପୀ ଯେଝ ନିତ୍ୟସ୍ଥଳେ ବାସ ।
ଅର୍ଦ୍ଧମାତ୍ରା ତ୍ରିପୁର ଯେ ନାମ ପରକାଶ । ୯ ।
ନିତ୍ୟସ୍ଥଳେ ଅଙ୍ଗ ରଖି ମନ୍ଥପୁର ଯିବ ।
ଅନନ୍ତ ବିଷ୍ଣୁଙ୍କ ପାଖେ ବିଶ୍ରାମ କରିବ । ୧୦ ।

---

୪—୧ ଅବଲେଖ (କ),

ଲବଣ ଜଳଧି ତଟେ କଳ୍ପବଟ ପାଶେ ।
ଅନନ୍ତ-ଦେବ ଶଯ୍ୟନ କଷ୍ଟୁ ପରକାଶେ । ୧୧ ।
ତୁଳସୀ ଚନ୍ଦ୍ରଗ ବୋଲି ନାମ ତୁମ୍ଭେ ବହି ।
ଅନନ୍ତ କଷ୍ଟୁଙ୍କ ସଙ୍ଗେ ଥିବ ତୁମ୍ଭେ ଯାଇ । ୧୨ ।
ଏମନ୍ତେଣ ଆଦ ଯେ ଅନନ୍ତ ଯୁଗ ଯିବ ।
ସତ୍ୟଯୁଗ ଗୋଟା ପୁଣ ପରବେଶ ହେବ । ୧୩ ।
ସତ୍ୟବତୀ ହୋଇ ତୁମ୍ଭେ ଜନମ ହୋଇବ ।
ସକଳ ଯେ ପୂଜାବିଧିମାନ ଭିଆଇବ । ୧୪ ।
ନାରାୟଣ ଅବତାର ହୋଇବେକ ପୁଣ ।
ଋଷିଗଣମାନେ ସେବା କରିବେ ଚରଣ । ୧୫ ।
ନାରାୟଣ ରୂପରେ ଯେ ତୁମ୍ଭେ ମଝପୁର ।
ତୁମ୍ଭର ପଲ୍ଲବ ବସ୍ତ୍ର ବାନ୍ଧିବେ ଶିରର । ୧୬ ।
ବୃକ୍ଷରୂପ ହୋଇବ ଯେ ଲକ୍ଷ୍ମୀ ହେଲେ ଜାତ ।
ସତ୍ୟବତୀ ଲକ୍ଷ୍ମୀଙ୍କର ବରିର ବହୁତ । ୧୭ ।
କେବଣ ଠାବରୁ ଏହି ପୁଷ୍ପପତ୍ର ଆଣି ।
ନାରାୟଣ ରୂପକୁ ଯେ ପୂଜା କର ପୁଣି । ୧୮ ।
କେବଣ ଏ ବୃକ୍ଷ ଗୋଟି ଦେଖାଇବ ମୋତେ ।
ଏ ପୁଷ୍ପେ ସନ୍ତୋଷ ହେଉନ୍ତି ନାରାୟଣ ଜଗତେ । ୧୯ ।
ତୁମ୍ଭେ କସ କରିବ ସେ ବୃକ୍ଷକୁ ଦେଖିଣ ।
ଆମ୍ଭେ ଶିରେ ଘେନବି ଯେ ଲକ୍ଷ୍ମୀ ବୋଲେ ପୁଣ । ୨୦ ।
ପଲ୍ଲବ ଯେ ପୁଷ୍ପଡାଳ ଗୋଟିଏକ ଆଣି ।
ଦେଖି ବଡ଼ ସନ୍ତୋଷ ହୋଇଲେ ଲକ୍ଷ୍ମୀ ପୁଣି । ୨୧ ।
ପଲ୍ଲବ ପୁଷ୍ପ ତ ନାରାୟଣ ଅଙ୍ଗେ ଅଛୁ ।
ଏହି ଡାଳ ଗୋଟିକ ମୋ ମନ ବଳୁଅଛୁ । ୨୨ ।
ଲକ୍ଷ୍ମୀ ମନେ ବିଚାରଣ କଲେକ ଭିଆଣ ।
ଗଳାକୁ ଯେ ଏକ କଣ୍ଠି ଭିଆଇଲେ ପୁଣ । ୨୩ ।

ନାରାୟଣ ଅଗ୍ରତରେ ଦେଲେ ପୁଣ ନେଇ ।
ସତ୍ୟବତୀ ଏକ ଯେ ପଦାର୍ଥ ଛନ୍ତି ଦେଇ । ୧୪ ।
ନାରାୟଣ କହୁଛନ୍ତି ଲକ୍ଷ୍ମୀବାରେ ଶୁଣ ।
ଏ ତୁଳସୀ ଗୋଟି ଅଟେ ବହୁତ ଯେ ଗୁଣ । ୧୫ ।
ଶ୍ରୀକୃଷ୍ଣ ଅଙ୍ଗରୁ ଏହୁ ହୋଇଅଛୁ ଜାତ ।
ଏହୁ ଅଙ୍ଗେ ଥିଲେ ପୁଣ୍ୟ ବହୁତ ପ୍ରାପତ । ୧୬ ।
ଏହାର ପଲ୍ଲବ ପୁଷ୍ପ ଶିରେ ଆମ୍ଭେ ବନ୍ଧୁ ।
ଚଉଷଠ କଳା ଏ ଗୋ ତୁଳସୀ ଅଟଇ । ୧୭ ।
ଏହାର ପତ୍ରକୁ ଯେନ ବ୍ରହ୍ମା ବନ୍ଦି ହୋଏ ।
ଏହୁ ପୁଷ୍ପ ଯେଜଣ ଗୋ ଶିବ ବନ୍ଦି କହେ । ୧୮ ।
ଏହାର ଗୋ ଫଳଗୋଟି ଯେଜ ବିଷ୍ଣୁ ଜାଣ ।
ଏହୁ ମାଳ ଗୋଟି ତୁମ୍ଭେ କଲକ ଭୂଷଣ । ୧୯ ।
ଋଷିଗଣମାନେ ଏହା ଗଳାରେ ବନ୍ଧିବେ ।
ତୁମ୍ଭ ଯୋଗୁଁ ପ୍ରାଣୀମାନେ ନିସ୍ତାର ପାଇବେ । ୨୦ ।
ଏମନ୍ତେଣ ନାରାୟଣ ମୁନିଜନେ ଦେଲେ ।
ସକଳ ମୁନିଙ୍କି ମାଳା ଚରିତ୍ର କହିଲେ । ୨୧ ।
ଏ ତୁଳସୀ କଣ୍ଠେ ଥିଲେ କୃଷ୍ଣ ପାଦ ପାଇ ।
ବାହୁମୂଳେ ଥିଲେ ସର୍ବ ଜପ୍ସ ସିଦ୍ଧି ହୋଇ । ୨୨ ।
କର୍ଣ୍ଣପରେ ଶିରେ ଥିଲେ ସର୍ବ ପାପ କ୍ଷୟେ ।
ହୃଦଯାଏ ଲମ୍ବି ଥିଲେ ଯମଦଣ୍ଡ ନୁହେ । ୨୩ ।
ପଞ୍ଚକୋଡ଼ି ଅଷ୍ଟକୋଟି କରବ ଯେ ମାଳ ।
ତୁଳସୀରେ ଜପିଲେ ଶ୍ରୀକୃଷ୍ଣ ନାମ ଫଳ । ୨୪ ।
ଚଉଷଠି ଗୋଟି ମାଳ କଣ୍ଠେ ବନ୍ଧିଥିଲେ ।
ଯମଦଣ୍ଡ ନ ଲାଗଇ ମୃତ୍ୟୁପଥେ ଗଲେ ।
ଦ୍ୱାଦଶ ଗୋଟି ଯେ ମାଳ ବାହୁମୂଳେ ଥିଲେ ।
ସର୍ବଜପ୍ସ ହୁଅଇ ଯେ ଜପ କରୁଥିଲେ । ୨୫ ।

ଚଉବନ ଗୋଟି ମାଳ ଶିରେ ବନ୍ଧୁଥିବ ।
ଅଷ୍ଟଗୋଟି ପାତକ ଯେ ଅଙ୍ଗୁ ପଳାଇବ । ୩୭ ।
ଏ ତୁଳସୀ ମନ୍ତ୍ର ପୂଜା କରିବ ନିରତେ ।
ମୁନିଙ୍କ କହିଲେ ନାରାୟଣ ଏହା ସତ୍ୟେ । ୩୮ ।
ତ୍ରେତୟାଯୁଗ ଯେ ପୁଣ ପରବେଶ ହୋଇ ।
ମଧ୍ ଯେ ମାଳତୀ ସତ୍ୟବତୀ ଅଙ୍ଗ ବନ୍ଧୁ । ୩୯ ।
ଦ୍ୱାପର ଯୁଗ ଯେ ପୁଣ ହୋଇଲ ଭିଆଣ ।
ବୃନ୍ଦାବତୀ ନାମ ହେଲେ ଗୋପପୁରେ ପୁଣ । ୪୦ ।
ନିତ୍ୟସ୍ଥଳେ ନିପୁର ଯେ ନାମ ଅଟେ ପୁଣ ।
ସତ୍ୟଯୁଗେ ସତ୍ୟବତୀ ନାମ ଯେ ଭିଆଣ । ୪୧ ।
ତ୍ରେତୟା ଯୁଗରେ ମଧୁବତୀ ଯେ ବୋଲନ୍ତି ।
ଦ୍ୱାପରେ ଯେ ବୃନ୍ଦାବତୀ ବୃନ୍ଦାବନେ ସ୍ଥିତି । ୪୨ ।
କଳିଯୁଗେ ତୁଳସୀର ନାମ ହେଲ ସାର ।
ଆଦିଯୁଗେ ତୁଳସୀର ମୁନିଙ୍କ ହିତର । ୪୩ ।
ମନସୁଖେ ତୁଳସୀକୁ କରିବ ଭଜନ ।
ମନ୍ତ୍ରବିଧି କହିବା ହେ ହେତୁ ମନେ ଘେନ । ୪୪ ।
ଅଷ୍ଟକୋଣ କରିବ ଯେ ହରେରାମ ସ୍ଥଳ ।
କୃଷ୍ଣ ବେଦ ରଖିବ ଯେ ମାନସିକ କରି । ୪୫ ।
ପାଟ ବସ୍ତ୍ର ଦ୍ୱାଦଶ ଯେ ହାତ ନିଉଛୁଳ ।
ଯନ୍ତ୍ର ପୂଜା ଦେଇ ଶିଷ୍ୟ ଦେବ ଯେ ମଣ୍ଡଳ । ୪୬ ।
ପୋଏଲା ଗୋଟିଏ ଘେନି ଯନ୍ତ୍ରକୁ ଲେଖିବ ।
ଏ ବିଧି ନ କଲେ ବଡ଼ ପରମାଦ ହେବ । ୪୭ ।
ହରେ ଯେ ଓଁ କାର ସ୍ଥାନ ରାମ ଅଙ୍କେ ଚିହ୍ନ ।
କୃଷ୍ଣ ବିନ୍ଦୁ ତତ୍ତ୍ୱ ମଧ୍ୟେ ଶିଷ୍ୟକୁ ବୁଝାଇ । ୪୮ ।

---

୩୮—୧ ଏ ତୁଳସୀ ପୂଜା ଏବେ (ଖ);
୪୫—୧ ଷଡ଼କୋଣ (କ);

ହରେ ସୁତେ ଯାଚ୍ଛିବ ଯେ ରାମ ତୁଳସୀକ ।
କୃଷ୍ଣ ନାମ ଭଜବ ଯେ ରାମ ମାଳ ଭଲ । ୪୯ ।
ହରେରାମ କୃଷ୍ଣଶ୍ୟାମ ଷୋଡ଼ଶ ଅକ୍ଷର ।
ଅନାମିକା ମଧ୍ୟସ୍ଥରେ ମାଳଗୋଟି ଧର । ୫୦ ।
ଶଏ ଅଷ୍ଟ ଗୋଟି ମାଳ ଗୃଣବେଳ ହେଲେ ।
ଗ୍ରନ୍ଥେ ନାମ ହୋଇବ ଯେ ଲକ୍ଷଣ ପାଳେ । ୫୧ ।
ଷୋଳ ଗ୍ରନ୍ଥେ ଜପିଲେ ଯେ ଲକ୍ଷେ ହେବ ପୂଣ ।
କହୁ ପୁଣ ଅଧିକ ହୋଇବ ଜପେ ଶୁଣ । ୫୨ ।
ହରେଶ୍ୟାମ ଯେତେ ନାମ ଶିଷ୍ୟର ହୋଇବ ।
ରାମକୃଷ୍ଣ ଯେତେ ନାମ ଗୁରୁଙ୍କର ସ୍ତବ । ୫୩ ।
ଏଣୁ କର ଗୁରୁଶିଷ୍ୟ ଅଙ୍ଗ ଅଙ୍କ ହୋଏ ।
ଗୁରୁ କୃଷ୍ଣ ଏକ ଅଙ୍ଗ ଭିନ୍ନ ଭିନ୍ନ ନୋହେ । ୫୪ ।
ତର୍ଜନୀ ଅଙ୍ଗୁଷ୍ଠି ଯୋଗ ଲଗାଇ ଭଜନ ।
ଭଜନ ନଷ୍ଟଳ ଯାଏ ହେଉ ମନେ ଘେନ । ୫୫ ।
ଅଙ୍ଗୁଷ୍ଠି ଅଗ୍ରରେ ଜପ ଯେମନ୍ତେ କରଇ ।
ବ୍ୟଗ୍ରେ ଜପ କଲେ ଯମ ନେଇଣ ଦଣ୍ଡଇ । ୫୬ ।
ବୁଆପଟ ଗ୍ରନ୍ଥ ଲକ୍ଷ ନ ଜାଣି ଭଜିଲେ ।
ମୂଢମତ ଲଭନ୍ତ ଭକ୍ତ ନ ଜାଣନ୍ତ ଭଲେ । ୫୭ ।
ଅଲେଖା କଲ ଜପିଲେ ପୁଣ୍ୟ ଦେହ ପାଏ ।
ଜାଣି ଶୁଣି ଭଜିଲେ ଯେ କୃଷ୍ଣ ପାଦେ ରହେ । ୫୮ ।
ଜନ୍ମ ହୋଇ କୃଷ୍ଣ ଗୁଣ ଗୁଣଇ ସେ ଜନ ।
ଜନ୍ମେ ଜନ୍ମେ ଭଗତ ସେ କୃଷ୍ଣ ପାଦେ ଲୀନ । ୫୯ ।

---

୫୧—୨ ଲକ୍ଷଣ ପାଇଲେ (କ),
୫୩—୨ ଗୁରୁଙ୍କର ସ୍ତଗ (ଖ);
୫୭—୧ ବୁଆସବ (କ ,

ମନ୍ତ୍ର ଯନ୍ତ୍ର ତନ୍ତ୍ର ଭେଦ ନ ଜାଣିଣ ପୁଣ ।
ଘଟେ ଯେ କପିଳା ବଧ ଦୋଷ ଲାଗେ ଶୁଣ । ୬୦ ।
ବୃକ୍ଷମାନଙ୍କର ରାଜା ତୁଳସୀ ଅଟଇ ।
ତୁଳସୀରେ ଶ୍ରୀକୃଷ୍ଣ ଅଛନ୍ତି ତାକୁ ବନ୍ଦ । ୬୧ ।
ମନ୍ତ୍ର ପୂଜା ଜାଣି ସେବା ଯେ କରଇ ନିତ୍ୟେ ।
ଧନ ଜନ ସମ୍ପତ୍ତି ବଢ଼ଇ ଅଦ୍ଭୁତେ । ୬୨ ।
ତୁଳସୀ ମନ୍ତ୍ର ନ ଜାଣି ବନ୍ଧନ୍ତି ଯେ ପ୍ରାଣୀ ।
ଦଶଜନ୍ମ ଯାଏ ନର୍କେ ପଡ଼ନ୍ତି ସେ ପୁଣି । ୬୩ ।
ମନ୍ତ୍ର ଜାଣି ତୁଳସୀ ଯେ ଯେଉଁ ଜନ ବନ୍ଧେ ।
ଜୀବନ୍ତେଣ ମୁକ୍ତ ହୋଏ ମଲେ କୃଷ୍ଣ ପାଏ । ୬୪ ।
ତୁଳସୀ ଯେ କଣ୍ଠପରେ କଣ୍ଠେ ବନ୍ଧଥାଇ ।
ବାହୁମୂଳେ ହୃଦସ୍ଥଳେ ଯେ ଜନ ଲମ୍ବାଇ । ୬୫ ।
ପଞ୍ଚାନନ ରୂପ ଧରି କଣ୍ଠିଡୋର ବନ୍ଧ ।
ଏକ କାଳପୁଷ ମାରି ବନ୍ଦ୍‌କୁ ନଗ୍ରାହି । ୬୬ ।
ସତ ଶାନ୍ତ ଦୟା କ୍ଷମା କିଛୁ ପାଳିଥାଇ ।
ସେ ଜନ ଅଙ୍ଗରେ ଥିଲେ କିଛୁ ଦୋଷ ନାହିଁ । ୬୭ ।
ତୁଷ୍ଟ ପରମେଶ୍ୱର ସେ ତାଙ୍କ ଦରଶନେ ।
ଏତେ ଗୁଣ ବନ୍ଧିଲେ ଯେ ଥିବ ସାବଧାନେ । ୬୮ ।
ତାର ଆବୋରଣ ଯେବେ ହୋଇଥିବ ଦାସ ।
ରଜକାଳେ ତୁଳସୀ ନ ଥିବ ଅଙ୍ଗ ଦେଶ । ୬୯ ।
ଆସନ କାଳେ ତୁଳସୀ ଅଙ୍ଗେ ନ ବନ୍ଧିବ ।
ମଳମୂତ୍ର କାଳେ ଅଙ୍ଗୁ କାଢ଼ିଣ ରଖିବ । ୭୦ ।
ହୃଦୁ କାଢ଼ି ରଖିବ ଯେ ଭୋଜନ କାଳେଣ ।
ଏତେ ବଧ କଲେ ଗୃହୀ ଦୋଷ ନାହିଁ ପୁଣ । ୭୧ ।
ରଜକାଳେ ତୁଳସୀ ଯେ ବନ୍ଧିଥିଲେ ନର ।
ବ୍ରହ୍ମହତ୍ୟା ଦୋଷ ପୁଣ ଲାଗେ ସେ ଅଙ୍ଗର । ୭୨ ।

ମତ୍ସ୍ୟ ଖାଇ ତୁଳସୀ ବନ୍ଦନ୍ତି ଯେଉଁ ନର ।
ଗୋହତ୍ୟା ପାତକ ଦୋଷ ଲାଗଇ ତାହାର । ୭୩ ।
ମାଂସ ମାଛ ଖାଇଣ ତୁଳସୀ ବନ୍ଦିଲେ ।
ଯମ ନେଇ ଦଣ୍ଡଇ ଯେ କୁମ୍ଭିପାକଠାରେ । ୭୪ ।
ଜୀବହତ୍ୟା ଦୋଷ କରି ତୁଳସୀ ବନ୍ଦନ୍ତି ।
ତପତ ବାଲିରେ ଯମଦୂତ ଦଣ୍ଡ ଦଂନ୍ତି । ୭୫ ।
ପରସ୍ତ୍ରୀ ହରଣ ଯେ ବନ୍ଦନ୍ତି ତୁଳସୀ ।
ଶତେ ଜନ୍ମ କୃମି ହୋଏ ନର୍କକୁଣ୍ଡେ ବସି । ୭୬ ।
ମାଦକ ଦ୍ରବ୍ୟ ଖାଇଣ ବନ୍ଦିଲେ ତୁଳସୀ ।
ହାଣକାଠ ଜନ୍ମ ଯେ ହୁଅଇ ଚଉରାଶୀ । ୭୭ ।
କରମାଳି ଗୋଟିରେ ଯେ ଜପ ପୁଣ କଲେ ।
ଷୋଳନାମ ଏକମାଳି ଗୋଟିକେ ଧଇଲେ । ୭୮ ।
ଛତିଶ କୋଟିଏ ନାମ ହୋଇଣ ପ୍ରମାଣ ।
ମେରୁକୁ ଲଙ୍ଘି ଭଜଲେ ପାପ ହୋଏ ପୁଣ । ୭୯ ।
ହୃଦମାଳେ କରମାଳେ କୃଷ୍ଣନାମ ଧର ।
ଯନ୍ତ୍ର ମନ୍ତ୍ର ଗୁରୁମୁଖେ ଶିଷ୍ୟର ଉଦ୍ଧାର । ୮୦ ।
ସେ ଗୁରୁ ଶିଷ୍ୟର ଗତି ହୁଅଇଟି ପୁଣି ।
ଗୁରୁଙ୍କର ବୁଦ୍ଧି ଅଟେ ଯନ୍ତ୍ର ମନ୍ତ୍ର ଗୁଣି । ୮୧ ।
ଜ୍ଞାନହୀନ ହୋଇଲେ ଯେ ଗୁରୁ ବଡ଼ ଦୋଷ ।
ଯନ୍ତ୍ର ମନ୍ତ୍ର ନ ଜାଣିଲେ ନରକରେ ବାସ । ୮୨ ।
ଜ୍ଞାନ ପାଇ ଯନ୍ତ୍ର ମନ୍ତ୍ର ଗୁରୁଙ୍କ ଶିଷ୍ୟ ପୁଣ ।
ସେବା ଯେ ନ କଲେ ନର୍କବାସୀ ହୋଏ ଜାଣ । ୮୩ ।
ଗୁରୁବ୍ରହ୍ମା ଗୁରୁବିଷ୍ଣୁ ଗୁରୁ ମହେଶ୍ୱର ।
ତେନଦେବତାର ଫଳ ଗୁରୁ ଦର୍ଶନର । ୮୪ ।
ଗଙ୍ଗା ଗୋଦାବରୀ ଗଣ୍ଡତମୀ ଯେ କେଦାର ।
ଗୁରୁ ପାଦ ନୀର ଭକ୍ଷି ଏତେ ପୁଣ୍ୟ କର । ୮୫ ।

ନାରାୟଣ ରାମଚନ୍ଦ୍ର, କୃଷ୍ଣଚନ୍ଦ୍ର, ମୂର୍ତ୍ତି ।
ଜଗନ୍ନାଥ ସ୍ୱରୂପ ଯେ ଗୁରୁଯୁଗେ ଚନ୍ତ । ୮୬ ।
ଏତେ ଯୋଗ ସିଦ୍ଧି ଫଳ ଗୁରୁମୁଖେ ଦେଲେ ।
ବସ୍ତ୍ର ଅଳଙ୍କାର ଦ୍ରବ୍ୟ ଏହୁ ସମତୁଲେ । ୮୭ ।
ଗୁରୁକୃଷ୍ଣ ଶିଷ୍ୟଙ୍କୁ ଯେ ନୁହନ୍ତି ଅଭିନ୍ନ ।
ଗୁରୁ ଚିହ୍ନାଇଲେ କୃଷ୍ଣମନ୍ତ୍ର କୃଷ୍ଣବର୍ଣ୍ଣ । ୮୮ ।
କୃଷ୍ଣ କୃଷ୍ଣ ଭଜୁଥିଲେ ତୁଳସୀ ମାଳରେ ।
ତୁଳସୀ ଅଙ୍ଗଟି ଗୁରୁ ସୁମର ମନରେ । ୮୯ ।
ମନକୁ ସୁଜାଣ କରି ଗୁରୁପାଦେ ଦେଇ ।
ତେବେ ସିନା ଗୁରୁ ଯେ ନିର୍ବାଣ ପଦ ଦେଇ । ୯୦ ।
ଝଲଫଳ ଗୋଷ୍ଠାର ଯେ ପ୍ରାପ୍ତ ସର୍ବ କରି ।
ଝଲକ ଲଲାଟେ କରି ମସ୍ତକୁ ସୁମରି । ୯୧ ।
ଓଁ ତୁଳସୀ ଲଗୁ କାନ ମନ୍ତ୍ରଙ୍କ ବିଗ୍ରହ ।
ଓଁ ତୁଳସୀ କରୁ ଭକ୍ତଙ୍କ ବିସ୍ତର । ୯୨ ।
ଓଁ ତୁଳସୀ କଣ୍ଠରେ ସାଜେ ଭକ୍ତ ପ୍ରାଣୀ ।
ଓଁ ତୁଳସୀ ଛାପ ଭସ୍ମ ସ୍ୱଙ୍ଗେ ପୁଣି । ୯୩ ।
ତୁଳସୀ ତୁଳସୀ ଅନନ୍ତ ଗୁରୁଙ୍କର ଶିଷ୍ୟ ।
ଓଁ ତୁଳସୀ ଲଗୁ କର୍ଣ୍ଣଦେଶ ମନ୍ତ୍ର ଘୋଷ । ୯୪ ।
ଜପୁ ତୁଳସୀ ଧ୍ୟାନ ତୁଳସୀ ଦେବୀ ନମସ୍ତୁତେ ।
ମନ୍ତ୍ର ବନ୍ଧ ସୁମରବ ଅଛୁ ଏହୁ ଗ୍ରନ୍ଥେ । ୯୫ ।
କର୍ଣ୍ଣଯୋଗେ କଣ୍ଠତଟେ ତୁଳସୀ ବାନ୍ଧିବ ।
ଶ୍ରୀଧର ମନ୍ଦର ଯାଇ ଲଲାଟେ ବାନ୍ଧିବ । ୯୬ ।
ସପତକୋଟି ପୁରୁଷ ଯାଇ ସ୍ୱର୍ଗ୍ୟ ଦର୍ଶେ ।
ସେ ଜନ ଅଙ୍ଗରେ ମାଳା ଝଲକ ପ୍ରକାଶେ । ୯୭ ।

---

୯୪—୧ ତୁଳସୀ କରୁ ଧ୍ୟାନ (ଖ);

ସୁବୁଦ୍ଧି ମୁକୁନ୍ଦଦାସ ବସ୍ତ୍ରଦାସ କନ୍ଧ ।
ବୃନ୍ଦାବତୀ ସେବା କଲେ ବୃନ୍ଦାବନ ପାଇ । ୯୮ ।
ତୁଳସୀ ପଲ୍ଲବ ଦେଇ ଖୋଳକୁ ପୂଜିବ ।
ବାମ ପୁଡ଼ାଗ୍ରରେ ତିନି ପଲ୍ଲବଟି ଦେବ । ୯୯ ।
ଡାହାଣ ପୁଡ଼ାରେ ଦେବ ବେନି ଯେ ପତର ।
ଦକ୍ଷିଣ କର୍ଣ୍ଣାଳେ ଦେବ ପାଞ୍ଚ ଯେ ପତର । ୧୦୦ ।
ବାମ କରତାଳେ ଦେବ ବେନି ପଞ୍ଚ ନେଇ ।
ଖୋଳ ଯେ କର୍ଣ୍ଣାଳ ପୂଜା ଦ୍ୱାଦଶ ପଞ୍ଚହିଁ । ୧୦୧ ।
ମାଳା ଯେ ତିଳକ ପୁଣ ହୃଦରେ ଧରିଣ ।
ରାମଚନ୍ଦ୍ର ସୂତ୍ର ରଖ ଅଷ୍ଟୋତ୍ତର ସ୍ଥାଣ । ୧୦୨ ।
ଗୁରୁଭକ୍ତ ହେଲ ତୁମ୍ଭେ ଏ ଭବ ସଂସାରେ ।
ଗୁରୁଙ୍କ ଭଣ୍ଡାର ତୁମ୍ଭେ ଶୁଣିଲ କର୍ଣ୍ଣରେ । ୧୦୩ ।
ନିତ ପ୍ରାତ ଦଣ୍ଡେ ଦଣ୍ଡେ ଏ ଗ୍ରନ୍ଥ ପଢ଼ିବ ।
ଗୁପତ କରିଣ କିଛୁ ଦିନ ଏହୁ ଥିବ । ୧୦୪ ।
ମୁକୁନ୍ଦ ପବନ କିଛୁ ଦିନ ତୁମ୍ଭେ ରଖ ।
ଦ୍ୱ ଜ ଦୀନବନ୍ଧୁ କିଛୁ ରଖିବ ଯେ ସୁଖ । ୧୦୫ ।
କିଛୁ ଦିନ ଶୂଦ୍ର ଶ୍ୟାମ ରଖିବ ଯେ ପୁଣ ।
ବୈରାଗ ବେଶରେ କିଛୁ ଦିନ ସେ ଭ୍ରମଣ । ୧୦୬ ।
ଶୂଦ୍ର ବଇରାଗ ପୁଣ ଗୋପସୁତେ ଦେବ ।
ନଅ ଯେ ଅକ୍ଷର ଅଟେ ସେ ଗୋପନା ହେବ । ୧୦୭ ।
ବଅ ଯେ ଅକ୍ଷର ପୁଣ ବର୍ତ୍ତଣ ଧର ।
କିଛୁ ଦିନ ରଖିବ ସେ ପୁଣ ହୃଦସ୍ଥର । ୧୦୮ ।
ଡ଼ ଙ ଶେଷ ଯେ ଅକ୍ଷର ସେ ରଖିବ କିଛୁ ।
କଳଙ୍କି ଭକ୍ତ ନିମନ୍ତେ ଏ ଗ୍ରନ୍ଥ ରହିଛୁ । ୧୦୯ ।

---

୯୯—୨ ବାମ ସ୍ତଗରେଟି ତିନି (ଙ);
୧୦୦—୧ ଦେବ ତିନି (ଖ);

ଶ୍ରୀକୃଷ୍ଣ କରୁଣା କଲେ ଭକତ´ ମୁଁ ଜାଣି ।
ପାମର ଅଚ୍ୟୁତ ଗୀତେ ଲେଖିଲେ ଏ ବୋଲି । ୧୧୦ ।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ପଞ୍ଚବିଂଶ ଛାନ୍ଦ ॥



## ଷଟ୍‌ତ୍ରିଂଶ ଛାନ୍ଦ

ଶୁଣ ଆହେ ସୁବୃଦ୍ଧି ଦ୍ୱାଦଶ ଗୋପ ପୋଏ ।
ତ୍ରିପୁର ରାଧା ଯେ ଚନ୍ଦ୍ରାବଳୀ ସଖୀ ହୋଏ ।୧।
ଲଳିତା ଭଜନ କରି ସର୍ବ ପାପ ହର ।
ଅଷ୍ଟାକ୍ଷର ତ୍ରିପୁର ଯେ ନାମକୁ ସୁମର ।୨।
ଅଷ୍ଟାକ୍ଷର ରାଧାମନ୍ତ୍ର ସୁମରଣା କରି ।
ଅଷ୍ଟାକ୍ଷର ଲଳିତା ଯେ ମନ୍ତ୍ରକୁ ସୁମରି ।୩।
ଅଷ୍ଟକୋଣ ଲେଖିବ ଯେ ମନ୍ତ୍ରକୁ ବିଚାରି ।
କୃଷ୍ଣମନ୍ତ୍ର ଚାରି ପୁଣ ଚାରିଅକ୍ଷର ଧରି ।୪।
ଏମନ୍ତ୍ରେଣ ଚତୁର୍ଭାଗ ବତିଶ ହୋଇବ ।
ଏକ କୋଣେ ଚାରି ଚାରି ଅକ୍ଷର ବସିବ ।୫।
ତ୍ରିପୁର ସୁନ୍ଦରୀ ନାମ ବସିବ ତ୍ରିକୋଣେ ।
ଚାରି ଚାରି ଅକ୍ଷର ବାନ୍ଧିବ ଯନ୍ତ୍ରସ୍ଥାନେ ।୬।
କୃଷ୍ଣ ବଲ୍ଲଭାୟେ ସ୍ୱାହା ରାଧା ମନ୍ତ୍ର ହୋଏ ।
ତ୍ରିକୋଣେ ବସିବ ଯନ୍ତ୍ରେ ଚାରି ଚାରି କହେ ।୭।
ଲଳିତାୟୈ ନମ ସ୍ୱାହା ବସିବ ତ୍ରିଭାଗ ।
ସାଧୁଜନମାନଙ୍କର ଅଟଇ ଏ ଯୋଗ ।୮।
କ୍ଲୀଂ କୃଷ୍ଣାୟ ନମ ବସିବ ତ୍ରିକୋଣ ।
ଚାରିରୂପେ ବତିଶ ଯେ ଅକ୍ଷର ପ୍ରମାଣ ।୯।
ଲଳିତା ଯେ ଚନ୍ଦ୍ରାବଳୀ ଏକ ମନ୍ତ୍ର କର
ରାଧାକୃଷ୍ଣ ଦୁଇ ମନ୍ତ୍ର ହୃଦେ ଏକ ଧର ।୧୦।

---

୬—୨ ବାନ୍ଧିବ ଯନ୍ତ୍ର ଠାବେ (କ);

ସବ ଗୋପୀ ସେବାଫଳ ତ୍ରିପୁର ମନ୍ତ୍ରରେ ।
ଚଉଷଠ କଳା ଅଛୁ ତ୍ରିପୁର ହୃଦରେ । ୧୧ ।
ଏମନ୍ତେଣ ଯନ୍ତ୍ରଗୋଟି କରିବ ଲେଖନ ।
ତୁଳସୀ ଶିଖାରେ ଯନ୍ତ୍ର ଲେଖିଣ ଯତନ । ୧୨ ।
କୃଷ୍ଣମନ୍ତ୍ର ପୀତ ଯେ ବସନ ଏକ ଦେବ ।
ରାଧା ମନ୍ତ୍ରେ ନୀଳ ଶାଢ଼ୀ ଏକ ବେଢ଼ାଇବ । ୧୩ ।
ରଙ୍ଗଶାଢ଼ୀ ଏକ ଯେ ଲଳିତା ମନ୍ତ୍ରେ ଦେଇ ।
ଶୁକଳ ଶାଢ଼ୀ ଯେ ଏକ ତ୍ରିପୁର ମନ୍ତ୍ରହିଁ । ୧୪ ।
କୃଷ୍ଣ ମନ୍ତ୍ର ଚନ୍ଦ୍ର ବସେ ଶୁଣ ସାଧୁଜନ ।
ରାଧାମନ୍ତ୍ର ଅର୍ଦ୍ଧ ମାତ୍ରା କରିଣ ଭଜନ । ୧୫ ।
ବେନି ଅଙ୍ଗ ଅର୍ଦ୍ଧ ମାତ୍ରା ତଳରେ ଅଛଇ ।
ଲଳିତା ସଖୀ ଯେ ମନ୍ତ୍ର ସେଠରେ ବସଇ । ୧୬ ।
ତଥି ତଳେ ଓଁକାରରେ ତ୍ରିପୁର ମନ୍ତ୍ରହିଁ ।
ଏମନ୍ତେଣ ତତ୍ତ୍ୱବିଧି ଶିଷ୍ୟଙ୍କୁ ଯେ କହି । ୧୭ ।
ଯନ୍ତ୍ର ମନ୍ତ୍ର ତନ୍ତ୍ର ଯେ ଭେଦଲେ ଶିଷ୍ୟ କହି ।
ତିନି ଭେଦ ନ ଜାଣିଲେ ଅଗାଢ଼ିଟି ସେହି । ୧୮ ।
ଗୁରୁ ଏହି ତିନି ଭେଦ ନ ଜାଣିଲେ ପୁଣ ।
ଇହ ପରଲୋକେ ହାସ୍ୟ ହୋଏ ଡଢ଼ମୁଣ । ୧୯ ।
ଏ ବିଧି କହିଣ ଯେ ଶିଷ୍ୟଙ୍କୁ ବୁଝାଇବ ।
ନନ୍ଦଦାସ ବାଳକ ହେ ଦାସ ହେତୁ ଥିବ । ୨୦ ।
ପବନ ଗୋବିନ୍ଦଦାସ ହେତୁ କଲ ମନ ।
ଭୂଥଦାସ ବୃନ୍ଦାବନ କୁଞ୍ଜେ ତୁମ୍ଭ ସ୍ଥାନ । ୨୧ ।
ଗୋପକୁଳ ଛଣ୍ଡାଇବ ଓଡ଼ିଶା ଦେଶର ।
ରହ୍ଲାସଦାସଙ୍କୁ ଘେନିଥିବ ଯେ ସଙ୍ଗର । ୨୨ ।
ଚନ୍ଦନ ରହ୍ଲାସଦାସ କର୍ଣ୍ଣଦାସ ତ୍ରିଆ ।
ଶ୍ରୀକୃଷ୍ଣ କରୁଣା କଲେ ଠାକୁର ନଦୀଆ । ୨୩ ।

ତାଙ୍କ ନାମ ସୁମରଣ କୃଷ୍ଣ ରାଧା ଘୋଷ ।
ପାମର ଅଚ୍ୟୁତ କୃଷ୍ଣ ଚରଣକୁ ଆଶ । ୧୪ ।
ଗୁରୁଭକ୍ତିଗୀତା ପଢ଼ ପାଇବ କାରଣ ।
ଗୁରୁ ମୁଖେ ପଢ଼ିଲେ ସଂଶୟ ହରଣ । ୧୫ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଷଟ୍‌ତ୍ରିଂଶ ଗ୍ରନ୍ଥ ।।



# ସପ୍ତବିଂଶ ଛାନ୍ଦ

ବନ୍ଦିବା ଶ୍ରୀ ଗୁରୁଦେବ ମନ୍ତ୍ରବଧି ଯେତେ ।
ଗୋପାଳ ଯେ ମନ୍ତ୍ରବଧି ଅଛଇ ଯେମନ୍ତେ । ୧ ।
ଶୁଣ ହେ ବାଳକଦାସ ମନ୍ତ୍ରର ଉତ୍ତର ।
ଭଗତଜନ ଜାଣନ୍ତି ତହିଁର ଯେ ସାର । ୨ ।
ଛନ୍ଦବଧି ନ ଜାଣିଲେ ପାଦଶୂନ୍ୟ ଯେସନ୍ତେ ।
ମନ୍ତ୍ରବଧି ନ ବୁଝିଲେ ଶୁଣ ସାଧୁଜନେ । ୩ ।
କଟୀ ନ ଥିଲାର ପ୍ରାୟେ ଷଡ଼ାଙ୍ଗ ନ ଜାଣି ।
ମନ୍ତ୍ରସିଦ୍ଧି ନୁହଇ ଯେ ଷଡ଼ାଙ୍ଗ ନ ଗୁଣି । ୪ ।
ଅଙ୍ଗନ୍ୟାସ ନ ଜାଣିଲେ ହୃଦ ନୋହେ ପୁଣ ।
ସାଧୁଜନ ଗୋଷ୍ଠିରେ ଯେ ବୁଝନ୍ତି ପ୍ରମାଣ । ୫ ।
କରନ୍ୟାସ ନ ଜାଣିଲେ ତାହୁ ପୁଣ ନାହିଁ ।
ମନ୍ତ୍ରଭେଦ ନ ଜାଣିଲେ ବଇଷ୍ଣବ ନାହିଁ । ୬ ।
ଧ୍ୟାନ ଯେ ସମାଧି ନ ଜାଣିଲେ ସିଦ୍ଧ ନୋହେ ।
ବାସପଣେ ଅଲେଖା ସେ ଜପଦାସ ପାଏ । ୭ ।
ସୂକ୍ଷ୍ମ ଲକ୍ଷ ଭେଦ ଯେତୁ ନ ଜାଣି ଭଜଇ ।
ଭଗତ ଯେ ଅପ୍ରାପତ କୃଷ୍ଣଙ୍କୁ ନ ପାଇ । ୮ ।
ମନ୍ତ୍ରର ଆସନ ଶୁଦ୍ଧି ନ ଜାଣିଲେ ପୁଣ ।
ଧ୍ୟାନ ମଧ୍ୟେ ଅଗାଡ଼ି ଯେସନ ପରମାଣ । ୯ ।
ମନ୍ତ୍ର ମଧ୍ୟେ ଜଡ଼ ଯନ୍ତ୍ର ନ ଜାଣିଣ ଦାସ ।
ମନ୍ତ୍ର ଜପେ କାର୍ଯ୍ୟ ନାହିଁ ହୋଇବାକ ବଶ । ୧୦ ।
ମନ୍ତ୍ରଭେଦେ ଅମନୀଧା ଯେ ଜନ ନ ଜାଣି ।
ମନ୍ତ୍ରଜପ କରିବାର ବୃଅର୍ଥ ସେ ପୁଣି । ୧୧ ।

---

୩—୨ ମନ୍ତ୍ରବଧି ନୋହଇ ଯେ (ଖ);

ମନ୍ତ୍ରଭେଦେ ମହାପରସାଦ ଯେ ନ ଜାଣେ ।
ପଶୁ ଅଟେ ସେ ଜନ ଯେ ବ୍ରହ୍ମା ପରମାଣେ । ୧୨ ।
ମନ୍ତ୍ରବିଧି କହିବା ହେ ଶୁଣ ହେତୁମନ ।
ଅଷ୍ଟାଦଶ ଅକ୍ଷର ଯେ ମନ୍ତ୍ରର ବିଧାନ । ୧୩ ।
ଜନବଲ୍ଲଭାୟ ଷଡ଼ ଅକ୍ଷର ଯେ କହୁ ।
ବଳଭଦ୍ର ସୁଦର୍ଶନ ଅ ସୀତାନ୍ତ ହୋଇ । ୧୪ ।
ଗୋପୀଗୋବିନ୍ଦାୟ ଯେ ସୁଭଦ୍ରା ବୋଲି ଜାଣ ।
କ୍ଲୀଁ କୃଷ୍ଣାୟ ନମ ଜଗନ୍ନାଥ ପୁଣ । ୧୫ ।
ବଳଭଦ୍ର ଚନ୍ଦ୍ରାବଳୀ ରାଧା ସୁଭଦ୍ରାହୁ ।
ଜଗନ୍ନାଥ କୃଷ୍ଣଚନ୍ଦ୍ର ସ୍ୱରୂପ କହୁ । ୧୬ ।
ଏ ପଞ୍ଚ ମୂରତି ଯେହୁ ମନ୍ତ୍ରରେ ପୂଜିବ ।
ମନ୍ତ୍ରରେ ଆସନ ଦେଇ ମନ୍ତ୍ରରେ ପୂଜିବ । ୧୭ ।
ନମ ଦୁଇ ଅକ୍ଷର ଯେ ପୃଥିବୀ ଅଟଇ ।
ଏ ଆସନେ ପଞ୍ଚରୂପ ବସାଇବ ନେଇ । ୧୮ ।
ବଲ୍ଲଭାୟ ଚ୍ଚୁରକ୍ଷର ଜଳ ଯେ ଅଟଇ ।
ଏ ମନ୍ତ୍ରେ ଜଳ କୁମ୍ଭ ଥୋଇବାକ ନେଇ । ୧୯ ।
ଗୋପୀଜନ ଛଡ଼ରସ ଚ୍ଚୁରକ୍ଷର ପୁଣ ।
ଏମନ୍ତ୍ରେ ଯେ ଉପହାର ଥୋଇ ସେଠାରେଣ । ୨୦ ।
ନମ ବେନି ଅକ୍ଷର ଯେ ପତର ଅଟଇ ।
ଏମନ୍ତ୍ର ଯେ ପଞ୍ଚଗୋଟି ରଖିବ ସେଠାଇଁ । ୨୧ ।
ଗୋବିନ୍ଦାୟ ଚ୍ଚୁରକ୍ଷର ଅମଣିହା ହୋଏ ।
ଅମଣିହା ଅଙ୍ଗ ତେବେ ସାଧୁ ଯେ ନ ପାଏ । ୨ ।
ବଲ୍ଲଭାୟ ଚ୍ଚୁରକ୍ଷର ଅଟଇ ଆସନ ।
କୃଷ୍ଣଙ୍କୁ ଆସନ ବିଧି ଦେବ ସାଧୁଜନ । ୨୩ ।
ଗୋପୀଜନ ଚ୍ଚୁରକ୍ଷର ମଣୋହୃତି ହୋଇ ।
ସାଧୁଜନ ସେବିଲେ ଏ ମନ୍ତ୍ର ଭେଦ ପାଇ । ୨୪ ।

ବଲ୍ଲଭାସ୍ୟ ସ୍ୱରାକ୍ଷର ଅଟେ ଅଗ୍ନେବନ ।
ଏ ମନ୍ତ୍ରେଣ ମନ୍ତ୍ରସିଦ୍ଧି ଅଟଇ ବିଧାନ । ୨୫ ।
ମହାପରସାଦ ନମ ଅକ୍ଷର ଯେ ଦୁଇ ।
ଏମନ୍ତ ଯେ ମନ୍ତ୍ରଭେଦ ଜ୍ଞାନ୍ୟ ଥିଲେ ପାଇ । ୨୬ ।
କରେ ଜପ କରବ ଯେ କରନ୍ୟାସ ପୁଣ ।
ହସ୍ତଗୋଟି ଶୁଦ୍ଧହେବ ଏମନ୍ତ୍ରେଣ ଶୁଣ । ୨୭ ।
ଅଙ୍ଗୁଷ୍ଠିରେ କ୍ଲୀଂକାର ଅକ୍ଷର ଶୁଦ୍ଧ କର ।
ତେବେ ସିନା ଭୋଗରେ ଯେ ହସ୍ତ ନେଇ ଧର । ୨୮ ।
କୃଷ୍ଣାସ୍ୟ ତର୍ଜନ ପଲ୍ଲବ ତର୍ଜନୀରେ ଧର ।
ଅମଣିହ୍ୱା ଧଇଲେ ଯେ ପାପଦୋଷ୍ଟୁ ତର । ୨୯ ।
ଗୋବିନ୍ଦାସ୍ୟ ସ୍ୱରାକ୍ଷର ଗୃର ପଲ୍ଲବରେ ।
ମଧ୍ୟାଙ୍ଗୁଳି ଶୁଦ୍ଧ କର ଅମଣିହ୍ୱା ଧରେ । ୩୦
ଅନାମିକା ଅଙ୍ଗୁଷ୍ଠିରେ ଗୋପୀଜନ ଧର ।
ତେବେ ସିନା ହସ୍ତଗୋଟି ଶୁଦ୍ଧ କର ପାର । ୩୧ ।
ବଲ୍ଲଭାସ୍ୟ ସ୍ୱରାକ୍ଷର କନିଷ୍ଠାରେ ଧର ।
ଏମନ୍ତ ଭେଦ ଜାଣିଲେ ଭୋଗ ଶୁଦ୍ଧି କର । ୩୨ ।
ନମ ବେଜ ଅକ୍ଷର ଯେ ବେଜ କରସ୍ଥଳେ ।
ନଅଙ୍କୁ ଦକ୍ଷିଣ କର ମଅ ବାମବେଳେ । ୩୩ ।
ଅଙ୍ଗଶୁଦ୍ଧି କରିବ ଯେ ମନ୍ତ୍ର ଜପ କର ।
ତେବେ ସିନା ଭୋଗରେ ଗମିବ ଏହୁ ସର । ୩୪ ।
କ୍ଲୀଂକାର ଅକ୍ଷର ହୃଦ ସ୍ଥାନରେ ବସାଇ ।
ହୃଦଭାଗ ଗୋଟି ତେବେ ପୁଣ ଶୁଦ୍ଧ ହୋଇ । ୩୫ ।
କୃଷ୍ଣାସ୍ୟ ତର୍ଜନ ଅକ୍ଷର ଶିରରେ ବସିବ ।
ତେବେ ଅଙ୍ଗ ଶୁଦ୍ଧି ହେବ ଅମଣିହ୍ୱା ଦେବ । ୩୬ ।

---

୨୫-୨ ମନ୍ତ୍ରବିଧ (କ); ୨୬-୨ ମନ୍ତ୍ରବିଧି (ଖ);

ଗୋବିନ୍ଦାୟ ଚାରିଅକ୍ଷର ଶିଖାରେ ବସାଇ ।
ତେବେ ସେଲକ୍ଷ ଗୋଟି ଶୁଦ୍ଧ ପୁଣ ହୋଇ । ୩୭ ।
ଗୋପୀଜନ ଚାରିଅକ୍ଷର କବଚରେ ଧର ।
କଣ୍ଠଗୋଟି ଶୁଦ୍ଧହେବ ଏମନ୍ତ ସୁମର । ୩୮ ।
ବଲ୍ଲଭାୟ ଚାରିଅକ୍ଷର ନେତ୍ରରେ ଧରିବ ।
ଅମଣିଦ୍ୱାଠାରେ ନେତ୍ର କଣ୍ଠଲେ ରହିବ । ୩୯ ।
ସବ କରସ୍ଥଳେ ଅଙ୍ଗେ ନମ ବେନଅକ୍ଷର ।
ଅଙ୍ଗନ୍ୟାସ କରନ୍ୟାସ ଏମନ୍ତ ସୁମର । ୪୦ ।
ଷଡ଼ାଙ୍ଗ କରିବ ପୁଣ ଅଙ୍ଗରେ ଯେ ପୁଣ ।
ଷଡ଼ାଙ୍ଗରେ ଭେଦ ଅଟେ ବୈଷ୍ଣବ ଲକ୍ଷଣ । ୪୧ ।
କ୍ଲୀଂଲଇଁ କୃଷ୍ଣାୟ ହୃଦ ପଦ୍ମରେ ବସିବ ।
ହୃଦସ୍ୱର ଗୋଷ୍ଠାକୁ ଯେ ପୁଣ ଶୋଧି ନେବ । ୪୨ ।
ଗୋବିନ୍ଦାୟ ଚାରିଅକ୍ଷର ନେତ୍ରରେ ବସାଇ ।
ନେତ୍ର ସ୍ୱର ଗୋଷ୍ଠା ପୁଣ ଶୋଧିବ ଯେ ନେଇ । ୪୩ ।
ଗୋପୀଜନ ବୋଲିଣ ଯେ ମୁଖରେ ଧରିବ ।
ଏମନ୍ତେଣ ମୁଖସ୍ୱର ଶୋଧନ କରିବ । ୪୪ ।
ବଲ୍ଲଭାୟ ଚାରିଅକ୍ଷର ଶିରରେ ବସାଇ ।
ତେବେ ସିନା ଶିରଗୋଟି ଶୋଧନ ଯେ ହୋଇ । ୪୫ ।
ଗୋପୀଜନ ଚାରିଅକ୍ଷର ବାହୁ ଦେନ ବସେ ।
ଏମନ୍ତେଣ ମନ୍ତ୍ରଶୋଧି କରି ପାପ ନାଶେ । ୪୬ ।
ବଲ୍ଲଭାୟ ଚାରିଅକ୍ଷର ହୃଦୟମଣ୍ଡଳ ।
ନାମକୁ ସୁମରି ଶୋଧ ହୃଦୟ କମଳ । ୪୭ ।
ପୁଣ ଦେହ ଦେଉଳକୁ କରିବ ସୁଷମ ।
ଏକସ୍ଥାନେ ଏକଅକ୍ଷର ବସିବ ଉତ୍ତମ । ୪୮ ।
କ୍ଲୀଂଲଇଁ ଅକ୍ଷର ଶିର ଉପରେ ବସିବ ।
ଛବାର ଶୋଧନ ପୁଣ ଏମନ୍ତେଣ ହେବ । ୪୯ ।

କ୍ଲ ଯେ ଅକ୍ଷର ପୁଣ ବସିବ କପାଳ ।
ଯୋଗ ସେବା ଅଙ୍ଗ ତେବେହୋଇବ ସଫଳ ।୫୦।
ଷ୍ଣ ଯେ ଅକ୍ଷର ପୁଣ ବସିବ ଭ୍ରୂମଧ୍ୟେ ।
ଦକ୍ଷିଣ କର୍ଣ୍ଣରେ ୟ ବସିବ ସେ ଶୁଦ୍ଧେ ।୫୧।
ଗୋ ଯେ ଅକ୍ଷର ବାମ କର୍ଣ୍ଣରେ ବସଇ ।
ବି ଯେ ଅକ୍ଷର ନେତ୍ର ଦକ୍ଷିଣେ ବସଇ ।୫୨।
ନ୍ଦା ଯେ ଅକ୍ଷର ବାମ ନେତ୍ରେ ବସେ ପୁଣ ।
ୟ ଯେ ଦକ୍ଷିଣ ନାସା ରନ୍ଧ୍ରେ ବସେ ଶୁଣ ।୫୩।
ଗୋ ଯେ ଅକ୍ଷର ବାମ ନାସା ରନ୍ଧ୍ରେ ରହେ ।
ପୀ ଯେ ଅକ୍ଷର ମୁଖେ ବସିବ ସେନେହେ ।୫୪।
ଜଅ ଯେ ଅକ୍ଷର ପୁଣ କଣ୍ଠରେ ବସଇ ।
ନ ଯେ ଅକ୍ଷର ପୁଣ ହୃଦସ୍ଥରେ ରହୁ ।୫୫।
ବ ଯେ ଅକ୍ଷର ପୁଣ ନାଭିରେଣ ବସେ ।
ଲ୍ଲ ଷର ଦକ୍ଷିଣ ଯେ କଟୀରେ ପ୍ରକାଶେ ।୫୬।
ଭା ଷର ବାମସ୍ଥଗ କଟୀରେ ବସଇ ।
ୟ ଯେ ଅକ୍ଷର ପୁଣ ଲିଙ୍ଗରେ ବସଇ ।୫୭।
ନଅ ଯେ ଅକ୍ଷର ପୁଣ ଜାନୁରେଣ ବସେ ।
ପଅ ଯେ ଅକ୍ଷର ପୁଣ ପାଦରେ ପ୍ରକାଶେ ।୫୮।
ଏମନ୍ତେଣ ଅଷ୍ଟାଦଶ ଅକ୍ଷର ବିସ୍ତର ।
ମାତୃକା କରିବ ହୃଦେ ଗୁରୁଙ୍କୁ ସୁମରି ।୫୯।
କୀଳଇଁ କୃଷ୍ଣାୟ ସ୍ୱାହା କୃଷ୍ଣ ରୂପ ଚିନ୍ତ ।
ଯୋଗସିଦ୍ଧି ଏମନ୍ତେଣ ହସିଲ୍ଲ ହୁଅନ୍ତ ।୬୦।
ଗୋପୀ ଗୋବିନ୍ଦାୟ ସ୍ୱାହା ସୁମରଣା କରି ।
ଯୋଗର ହସିଲ୍ଲ ତେବେ ଦାସ କରି ପାରି ।୬୧।
ଜନବଲ୍ଲଭସ୍ୟ ଚନ୍ଦ୍ରାବଳୀକି ସୁମର ।
ତେବେ ସିନା ଯୋଗ ସିଦ୍ଧି ଦାସର ବିସ୍ତର ।୬୨।

୬୨—୨ ହୁଅଇ ବିସ୍ତର (ଖ);

ଜନ ଛଡ଼େ ଗୋପୀଜାକୁ ପୂଜା କରି ଦାସ ।
ଜନ ଛଡ଼େ ଲଲିତା ଯେ ହୁଅନ୍ତି ସନ୍ତୋଷ । ୬୩ ।
ଏମନ୍ତେଣ ପଞ୍ଚରୂପ ଗୋପାଳ ମନ୍ତ୍ରକୁ ।
ସେବାବନ୍ଧ ନିରନ୍ତରେ ଖଟିବ ତାହାଙ୍କୁ । ୬୪ ।
ପାଞ୍ଚସ୍ୱର ଧରିବ ଯେ ଛଡ଼ ସ୍ୱର କରି ।
ମନ୍ତ୍ରଗୋଟି ବସାଇବ ମନ୍ତ୍ରକୁ ସୁମରି । ୬୫ ।
ପ୍ରଥମେ ବସିବ ଜନ ବଲ୍ଲଭସ୍ୱ ପୁଣି ।
ବଳଭଦ୍ର ସ୍ୱରୂପ ଅଟଇ ପରମାଣ । ୬୬ ।
ଗୋପୀ ଗୋବିନ୍ଦାସ୍ୱ ଛଡ଼ ବସାଇବ ପାଶେ ।
ସୁଭଦ୍ରା ସ୍ୱରୂପ ସେ ତ ସ୍ୱୟଂ ପରକାଶେ । ୬୭ ।
କାଳିନ୍ଦି କୃଷ୍ଣାସ୍ୱ ନମ ଜଗନ୍ନାଥ କନ୍ଧି ।
ଅଷ୍ଟାଦଶାକ୍ଷର ମନ୍ତ୍ର ଗୋପାଳ ଅଟଇ । ୬୮ ।
ଜନବଲ୍ଲଭସ୍ୱ ଛଡ଼ କୃଷ୍ଣ ପାଶେ ବସେ ।
ସୁଦର୍ଶନ ସ୍ୱରୂପ ସେ ଭକ୍ତଜନ ଘୋଷେ । ୬୯ ।
ଜନବଲ୍ଲଭସ୍ୱ ତଥି ପାଶରେ ବସଇ ।
ଏ ବୀଜାଦି ସ୍ୱରୂପ ସେ ସିଂହାସନ କହି । ୭୦ ।
ତୁଳସୀ ଶିଖା ଲେଖନେ ଯନ୍ତ୍ରକୁ ଲେଖିବ ।
ବିଦ୍ଧ ଯେ ବସ୍ତ୍ରମାନ ଯତ୍ନେ ପୁଣି ଦେବ । ୭୧ ।
ଶିଷ୍ୟ ବୋଧ ହୋଇବ ଯେ ମନ୍ତ୍ର ଦରଶନେ ।
ଗୁରୁଦେବରୂପେ ଶିଷ୍ୟ ଧରିବ ଯେ ମନେ । ୭୨ ।
ତନ୍ତ୍ରସ୍ୱର ତ୍ରିଖାଇବ ମନ୍ତ୍ରଗୋଟି ପୁଣି ।
ତେବେ ଅଣଦେବରୁ ଶିଷ୍ୟ ଦେବରୁ ଦେବ ପୁଣି । ୭୩ ।
କାଳିନ୍ଦି ଅକ୍ଷର ଛଡ଼ ବିନ୍ଦୁରେ ବସାଇ ।
ଗୋପୀ ଛଡ଼ ଅକ୍ଷର ଯେ ଅର୍ଦ୍ଧମାତ୍ରା ରହି । ୭୪ ।

---

୬୩—୧ ପାଠଘଟ (ଣ);

ଜନ ଛଡ଼ ଅକ୍ଷର ଯେ ଅଙ୍ଗୁଳି ଉପର ।
ତା ଉପରେ ବସିବ ଯେ ଜନ ଛଡ଼କ୍ଷର । ୭୫ ।
ପୁଣ ତଥି ତ କାରରେ ଜନକୁ ବସାଇ ।
ବଳ ସୁଦର୍ଶନ ଅ ବୀଜାଦ୍ୟ ଜନ ତହିଁ । ୭୬ ।
ତ କାର ଯେ ଅ ବୀଜାଦ୍ୟ ତାର ବଳଦେବ ।
ଅଙ୍ଗୁଳି ଯେ ସୁଦର୍ଶନ ଭଦ୍ରା ଅର୍ଦ୍ଧ ଭାବ । ୭୭ ।
ବନ୍ଧୁ କୃଷ୍ଣ ଅଟଇ ଯେ ପଞ୍ଚରୂପ କହୁ ।
ବିନା ଗୁରୁ ନ କହିଲେ ଏ ଭେଦ ନ ପାଇ । ୭୮ ।
ଚାରି ବେଦ ଅଷ୍ଟାଦଶ ପୁରାଣହିଁ ପଢ଼େ ।
ଗୀତା ଭାଗବତ ଛଡ଼ ଶାସ୍ତ୍ର'ସ୍ତୁରେ ବଢ଼େ । ୭୯ ।
ସାକ୍ଷୀ ଯେ ଶବଦ ଚଉଦଶା ପଦ ଗାଉ ।
ବିବିଧ ଯେ ଯନ୍ତ୍ରମାନ ଜାନ ଭେଦ ବାଉ । ୮୦ ।
ଏ ସବୁ ଅଟଇ ବଡ଼ ପଣ୍ଡର କାରଣ ।
ମନ୍ତ୍ରଭେଦ ନ ଜାଣିଲେ ଗଣ୍ଡ ନୋହେ ପୁଣ । ୮୧ ।
ସଖା ଅଙ୍ଗ ବୁଝିବ ଯେ ଗୋପାଳମନ୍ତ୍ରରେ ।
ଏକ ସଖା ସୁମଦ୍ରିବ ଏତ ଯେ ଅକ୍ଷରେ । ୮୨ ।
କ୍ଲୀଁ ଅକ୍ଷରେ କୃଷ୍ଣରୂପକୁ ଗୁଣିମ ।
କୃଷ୍ଣକ୍ଷରେ ସୁଦାମ ଯେ ମନରେ ଘେନିମ । ୮୩ ।
ସୁ ଯେ ଅକ୍ଷର ପୁଣ ଦାମ ସଖା ଧଣ ।
ଗୋ କ୍ଷର ସୁଦାମ ସଖା ହୃଦରେ ବସୁଣ । ୮୪ ।
ବ ଯେ ଅକ୍ଷର ପୁଣ ଶ୍ରୀବତ୍ସ ଗୁଣିଣ ।
ଦ୍ଧା ଯେ ଅକ୍ଷର ପୁଣ ସାତ୍ତ୍ୱିକ ପ୍ରମାଣ । ୮୫ ।
ସ୍ବ ଯେ ଅକ୍ଷର ପୁଣ ଅକ୍ରୂର ଅଟଇ ।
ଗୋ ଯେ ଅକ୍ଷର ପୁଣ ଉଦ୍ଧବ ଯେ କହୁ । ୮୬ ।

---

୮୩—୨ ଷ୍ଣ କ୍ଷରେ (ଖ);

ପୀ ଯେ ଅକ୍ଷର ପୁଣ ଉଦ୍ଧବ ପ୍ରମାଣ ।
ନ ଯେ ଅକ୍ଷର ପୁଣ ସତ୍ତ୍ୱସ୍ଥ ବୋଲଣ । ୮୭ ।
ନ ଯେ ଅକ୍ଷର ପୁଣ ଯାଦବଟି ହୋଇ ।
ଦ ଯେ ଅକ୍ଷର ପୁଣ ସୁନନ୍ଦ ବୋଲଇ । ୮୮ ।
ନ ଯେ ଅକ୍ଷର ପୁଣ ବୃଦ୍ଧନନ୍ଦ ଜାଣ ।
କୃଷ୍ଣର ଦ୍ୱାଦଶ ସଖା ଏମନ୍ତ ପ୍ରମାଣ । ୮୯ ।
କୃଷ୍ଣ ଅଙ୍ଗ ସୁମରିଲେ ତେର ପୁଣ ହୋଏ ।
ଯଦୁବଂଶ ଗୋପାଳ ଯେ ଏହୁ ଭେଦ ପାଏ । ୯୦ ।
କୃ ଯେ ଅକ୍ଷର ପୁଣ ବଳଭଦ୍ର ହୋଇ ।
ଷ୍ଣ ଯେ ଅକ୍ଷର ସଖା ସୁବଳଟି କହୁ । ୯୧ ।
ସ୍ୱ ଯେ ଅକ୍ଷର ପୁଣ ସୁରଥ ପ୍ରମାଣ ।
ନ ଯେ ଅକ୍ଷର ପୁଣ ଲୋକପାଳ ଜାଣ । ୯୨ ।
ମ ଯେ ଅକ୍ଷର ପୁଣ ଧର୍ମାନନ୍ଦ କହୁ ।
ବଳଭଦ୍ର ବ୍ରଜସଖା ଏମନ୍ତଟି ହୋଇ । ୯୩ ।
ବଳଭଦ୍ର ମିଶିଣ ଯେ ପଞ୍ଚ ହୋଏ ପୁଣ ।
କୃଷ୍ଣ ତେର ମିଶାଇଲେ ଅଷ୍ଟାଦଶ ଗୁଣ । ୯୪ ।
ସଖୀ ସଖା ଯୁଗଳ ଯେ କରବ ଧିଆନ ।
ସଖୀ ଅଙ୍ଗ ମନ୍ତ୍ରଭେଦେ ବୁଝି ସାଧୁଜନ । ୯୫ ।
କ୍ଳୀଁ ଅକ୍ଷରେ ରାଧାଶ୍ୟାମ କର ଲକ୍ଷ୍ୟ ।
ଷ୍ଣା କ୍ଷରେ ସୁଦାମ ଯେ ସଖୀ କର ଲକ୍ଷ୍ୟ । ୯୬ ।
ସ୍ୱ ଅକ୍ଷରେ ଶ୍ରୀମତୀ ଯେ ସଖୀ କର ଜ୍ଞାନ ।
ବ୍ରଜପ୍ରିୟା ଗୋ ଅକ୍ଷରେ କରିବ ଯେ ଧ୍ୟାନ । ୯୭ ।
ସୁଗନ୍ଧିକା ସଖୀ ବିଇ ଅକ୍ଷରେ ଗୁଣିଣ ।
ବନ ତୁରଙ୍ଗିଣୀ ସଖୀ ନ୍ଦା ଅକ୍ଷରେ ପୁଣ । ୯୮ ।
ସ୍ୱ ଯେ ଅକ୍ଷରେ ପୁଣ ମଧୁବନ୍ତୀ ହୋଏ ।
ଗୋ ଅକ୍ଷରେ ପ୍ରିୟା ନାମେ ଗୋପୀ ପୁଣ ରହେ । ୯୯ ।

ପୀ ଅକ୍ଷରେ ସୁପ୍ରିୟା ଯେ ଗୋପୀ ପୁଣ ରହୁ ।
ନ ଅକ୍ଷରେ ଶଶୀରେଖା ଗୋପୀ ଯେ ଅଛଇ । ୧୦୦ ।
ନ କ୍ଷରେ ହରପ୍ରିୟା ସଖୀ ହୋଏ ପୁଣ ।
ବ କ୍ଷରେ ଲୀଳାବତୀ ସଖୀ ପରମାଣ । ୧୦୧ ।
ଭ କ୍ଷରେ ମାଳତୀ ଯେ ସଖୀ ପୁଣ କହୁ ।
ଏମନ୍ତେ ଦ୍ୱାଦଶ ଗୋପୀ ମନ୍ତ୍ରରେ ଅଛଇ । ୧୦୨ ।
ରାଧା ସଙ୍ଗେ ତେରଗୋପୀ ରାଧା ମନ୍ତ୍ରି ପୁଣ ।
ସାଧୁଜନମାନେ ମନ୍ତ୍ର ଗୁରୁମୁଖେ ଶୁଣ । ୧୦୩ ।
କୃଷ୍ଣ ଅକ୍ଷରରେ ପୁଣ ରେବତୀ ଗୁଣିମ ।
ଷ୍ଣା ଯେ ଅକ୍ଷର ସଖୀ ମାଳତୀ ଉତ୍ତମ । ୧୦୪ ।
ସ୍ୱ ଯେ ଅକ୍ଷର ପୁଣ ସେବତୀ ଅଟଇ ।
ନ କ୍ଷର ମରୁଆ ଯେ ସଖୀ ବୋଲି କହୁ । ୧୦୫ ।
ଦମ୍ୟଣା ସଖୀ ଯେ ମ'ଅ ଅକ୍ଷର ଅଟଇ ।
ଏମନ୍ତେଣ ପଞ୍ଚ ସଖୀ ରେବତୀ ସଙ୍ଗେଇ । ୧୦୬ ।
ସପ୍ତତେର ଅଷ୍ଟାଦଶ ସଖୀ ପୁଣ ହୋଇ ।
ଗୋପୀ ଯେ ଗୋପାଳ ପୁଣ ଯୁଗଳ ଅଟଇ । ୧୦୭ ।
ଧ୍ୟାନ ଯେ କରିବ ପୁଣ ଯନ୍ତ୍ର ହେତୁ କରି ।
ଢାଙ୍ଗପଣ ଛିଡି କରି ଗୁରୁଙ୍କୁ ପଚାରି । ୧୦୮ ।
ପୂର୍ବଦିଗେ ଉଦ୍ଧବ ଯେ ଗୋପାଳ ଅଛଇ ।
ଗୋପପୋଷ୍ୟେ ସତର ଯେ ସହସ୍ର ସଙ୍ଗେଇ । ୧୦୯ ।
ଐଶାନ୍ୟ କୋଣରେ ପୁଣ ସାତ୍ତ୍ୱିକ ରହଣ ।
ସହସ୍ର ଗୋପାଳ ତାଙ୍କ ସଙ୍ଗତରେ ପୁଣ । ୧୧୦ ।
ଏମନ୍ତ ଯେ ଅଷ୍ଟାଦଶ ପୂର୍ବଦିଗ କହୁ ।
ଐଶାନ୍ୟ ପୂର୍ବ ବୋଲିଣ ଦିଗ ପୁଣ ହୋଇ । ୧୧୧ ।
ଯାଦବ ଗୋପାଳ ଯେ ଉତ୍ତର ଦିଗେ ସ୍ଥାନ ।
ଷଠସହସ୍ର ଗୋପାଳ ଯେ ସଙ୍ଗରେ ଘେନଣ । ୧୧୨ ।

ବାୟୁବ୍ୟ କୋଣରେ ନନ୍ଦ ଗୋପାଳ ଯେ ରହେ ।
ଷୋଳସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଏ । ୧୧୩ ।
ଊଣାଇଶ ସହସ୍ର ଯେ ଉତ୍ତର ଦିଗେଣ ।
ଉତ୍ତର ଦିଗରେ ଅଟେ ବାୟୁବ୍ୟ ଯେ କୋଣ । ୧୧୪ ।
ପଶ୍ଚିମ ଦିଗରେ କୃଷ୍ଣ ଅଛନ୍ତି ଯେ ରହି ।
ତିନସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଇ । ୧୧୫ ।
ନଇଋତ ଦିଗରେ ଯେ ବନ୍ଧୁର ସଙ୍ଗେଣ ।
ଗୋପାଳ ଯେ ସାତସହସ୍ର ଅଛନ୍ତି ପାଶେଣ । ୧୧୬ ।
ପଶ୍ଚିମ ଯେ ନଇଋତ ଏକ ଦିଗ ହୋଏ ।
ନବସହସ୍ର ଗୋପାଳ ଯେ ଦୁଇଦିଗେ ଥାଏ । ୧୧୭ ।
ସଞ୍ଜୟ ବରଜ ଯେ ଦକ୍ଷିଣଦିଗେ ପୁଣ ।
ଶତ ଯେ ସହସ୍ର ଗୋପ ତାଙ୍କ ସଙ୍ଗତେଣ । ୧୧୮ ।
ଅଗ୍ନିକୋଣେ ସନ୍ନନ୍ଦ ବରଜ ଯେ ରହେ ।
ଷୋଳସହସ୍ର ଗୋପାଳ ଯେ ତାଙ୍କ ସଙ୍ଗେ ଥାଏ । ୧୧୯ ।
ସୁଦାମ ଯେ ସଖା ପୁଣ ପୂର୍ବରେ ରହିଣ ।
ସଖା ମଧ୍ୟେ ସାର ଏହୁ ଅଟନ୍ତି ଯେ ପୁଣ । ୧୨୦ ।
ପଶ୍ଚିମ ଦିଗରେ ପୁଣ ଦାମ ସଖା ରହି ।
ଏହି ସଖା ସାର ପୁଣ ଗୋପାଳରେ କହି । ୧୨୧ ।
ସୁବାହୁ ସଖା ଯେ ପୁଣ ଦକ୍ଷିଣ ଦିଗରେ ।
ପ୍ରଧାନ ଅଟନ୍ତି ଏହୁ ଗୋପାଳ ମଧ୍ୟରେ । ' ୨୨ ।
ଉତ୍ତର ଦିଗରେ ସଖା ଶ୍ରୀବତ୍ସ ଯେ ରହେ ।
ଶ୍ରୀବତ୍ସ ପଶ୍ଚିମ ଦିଗେ ଦାମ ସଙ୍ଗେ ଥାଏ । ୧୨୩ ।
ଦାମ ଯେ ସୁଦାମ ସଖା ଅଟନ୍ତି ସୁବଳ ।
ସୁବାହୁ ଶ୍ରୀବତ୍ସ ଗୋପଶ୍ରେଷ୍ଠ ଅଟେ ଭଲ । ୧୨୪ ।
ପଶ୍ଚିମ ଦିଗରେ କୃଷ୍ଣ ସଙ୍ଗେ ପଥସେବା ।
ପାଞ୍ଚସହସ୍ର ଗୋପାଳ ଯେ ପ୍ରିୟଭକ୍ତେ ଶୋଭା । ୧୨୫ ।

---

୧୧୫—୨ ବେଦନ ସହ (କ);

ଅଷ୍ଟଦଳେ ଚଉଷଠି ଗୋପାଳ ଅଛନ୍ତି ।
ଚଉଷଠି ସାର ପୁଣ ଷୋଳ ଗୋପ ହୋନ୍ତି । ୧୨୬ ।
ଷୋଳରୁ ଯେ ସାର ପୁଣ ଦୁଇ ରୂପ ଜାଣ ।
ରାମକୃଷ୍ଣ ବୋଲିଣ ଯେ ଦୁଇରୂପ ପୁଣ । ୧୨୭ ।
ଅଶୀସହସ୍ର ଗୋପାଳ ଯେ ଅଷ୍ଟଦଳେ ରହି ।
ଅଶୀରୁ ସାର ପାଞ୍ଚସହସ୍ର ଯେ ହୋଇ । ୧୨୮ ।
ଅନ୍ତର୍ଯାମୀନାଥ ହୃଦେ ଅନନ୍ତ ଗୋପାଳ ।
ଏକା କୃଷ୍ଣ ଅନ୍ତର୍ଯାମୀ କରୁଅଛି ଖେଳ । ୧୨୯ ।
ନଇଋତ କୋଣରେ ଯେ ଅକ୍ରୁର ରହିଣ ।
ପୂର୍ବି ଅଷ୍ଟଦଳ ଭେଦ ସାଧୁଜନେ ଶୁଣ । ୧୩୦ ।
ବଳରାମ ଦକ୍ଷିଣ ଦଳରେ ଛନ୍ତି ପୁଣ ।
ସୁବଳ ସୁରଥ ଗୋପ ଅଛନ୍ତି ସଙ୍ଗେଣ । ୧୩୧ ।
ଲୋକପାଳ ଧର୍ମାନନ୍ଦ ପୁଣ ଦୁଇ ଜନ୍ତି ।
ଦକ୍ଷିଣ ଦଳରେ ରାମ ସଙ୍ଗେ ସେବା କରନ୍ତି । ୧୩୨ ।
ପୂର୍ବଦଳେ ଗୋପାଳଙ୍କ ସେବା ପୁଣ ଶୁଣ ।
କୃଷ୍ଣମୁଖେ ତାମ୍ବୁଳ ଯେ ଭୁଞ୍ଜାବନ୍ତି ପୁଣ । ୧୩୩ ।
ନୈଋତ ଦଳରେ ଗୋପପୋଏ ଛନ୍ତି ପୁଣ ।
ବସ୍ତ୍ରସେବା କରନ୍ତି ଯେ ଶ୍ରୀକୃଷ୍ଣ ସଙ୍ଗେଣ । ୧୩୪ ।
ଗୋପାଳ ଉତ୍ତରଦଳେ ଅଛନ୍ତି ଯେ ରହି ।
ଚାମର ସେବା କରନ୍ତି କୃଷ୍ଣଙ୍କୁ ଯେ ଚାହିଁ । ୧୩୫ ।
ବାୟୁବ୍ୟ କୋଣରେ ପୁଣ ଗୋପାଳ ରହିଣ ।
ଗନ୍ଧଚନ୍ଦନ ଯେ ସେବା କୃଷ୍ଣଙ୍କୁ କରିଣ । ୧୩୬ ।
ଐଶାନ୍ୟକୋଣରେ ପୁଣ ଗୋପାଳ ଯେତେକ ।
ରତ୍ନମାଳା ଅଙ୍ଗରେ ଯେ ଚଢାନ୍ତି ସେବକ । ୧୩୭ ।
ଷଡ଼ରସ ଭୋଜନ ଯେ ବର୍ତ୍ତମାନ କର ।
ଶ୍ରୀକୃଷ୍ଣଙ୍କ ସେବା ପୁଣ ନିରନ୍ତରେ କର । ୧୩୮ ।

ଅଗ୍ନିକୋଣେ ଗୋପାଳ ଯେ ଅଛନ୍ତି ରହିଣ ।
ବନ୍ଧୁ ଯେ ଗନ୍ଧପୁଷ୍ପ ଯୋଗାନ୍ତି ନେଇଣ । ୧୩୯ ।
ପଶ୍ଚିମଦିଗରେ ଗୋପପୋଷ୍ୟେ ପୁଣ ରହେ ।
ଦର୍ପଣ ଯେ ସେବାକର ଶ୍ରୀକୃଷ୍ଣଙ୍କୁ ସ୍ନେହେ । ୧୪୦ ।
ଶ୍ରୀକୃଷ୍ଣଙ୍କୁ ସେବାକରି ବୃନ୍ଦାବନେ ଖେଳ ।
ଏମନ୍ତେ ଗୋପାଳ ରାମକୃଷ୍ଣ ସଙ୍ଗେ ମେଳ । ୧୪୧ ।
କାନନବନ ଯେ ପୂର୍ବଦିଗରେ ଅଛଇ ।
ଖଞ୍ଜରବନ ଯେ ପୁଣ ଐଶାନେ ବସଇ । ୧୪୨ ।
ବଂଶବନ ବସଇ ଯେ ଉତ୍ତର ଦିଗରେ ।
ପିଙ୍ଗବନ ବସଇ ଯେ ବାୟୁବ୍ୟ ଦିଗରେ । ୧୪୩ ।
ଶ୍ରୀବୃନ୍ଦାବନ ଯେ ପୁଣ ପଶ୍ଚିମ ଦିଗର ।
କେଳିବନ ଅଛଇ ଯେ ନୈରୃତ ଭାଗର ।।
ମଳୟବନ ଯେ ପୁଣ ଦକ୍ଷିଣେ ଅଛଇ ।
ଶ୍ରୀବୃନ୍ଦାବନ ମଧ୍ୟରେ ରତ୍ନବେଦୀ ରହି । ୧୪୪ ।
ପୂର୍ବଦିଗେ ସୁଦାମ ଯେ ଏ କୁଞ୍ଜବନର ।
ଷୋଳସହସ୍ର ଗୋପାଳ ଯେ ଅଛନ୍ତି ପାଶର । ୧୪୫ ।
ଦାମ ଯେ ଗୋପାଳ ପୁଣ ଦକ୍ଷିଣ ବନର ।
ବାରସହସ୍ର ଗୋପାଳ ଯେ ସଙ୍ଗତେ ତାଙ୍କର । ୧୪୬ ।
ପଶ୍ଚିମ ଦିଗରେ ଦାମ ଅଛନ୍ତି ଯେ ରହି ।
ସାଧୁଜନମାନେ ଶୁଣ ଭକ୍ତପଥ ଏହି । ୧୪୮ ।
ଯାଦବ ଉତ୍ତରଦିଗେ ନୀଳବନେ ରହେ ।
ଦ୍ୱାଦଶସହସ୍ର ଗୋପପୋଏ ସଙ୍ଗେ ଥାଏ । ୧୪୯ ।
ଦକ୍ଷିଣ କଦମ୍ବବନେ ସଙ୍କର୍ଷଣ ବିଜେ ।
ଦ୍ୱାଦଶସହସ୍ର ଗୋପ ସଙ୍ଗତରେ ସାଜେ । ୧୫୦ ।
ବୃନ୍ଦାବନେ ଶ୍ରୀବତ୍ସ ଯେ ପଶ୍ଚିମ ଦ୍ୱାରରେ ।
ବାରସହସ୍ର ଗୋପାଳ ଯେ ଅଛନ୍ତି ସଙ୍ଗରେ । ୧୫୧ ।

ଉଦ୍ଧବ କଦମ୍ବବନେ ପୂର୍ବଦିଗେ ରହି ।
ବାରସହସ୍ର ଗୋପାଳ ଯେ ସଙ୍ଗତେ ଅଛଇ । ୧୫୨ ।
ଅକ୍ରୂର ରହସ୍ୟବନେ ନଇଋତ କୋଣେ ।
ଏକାନ୍ତରେ ଗୀତ ଯେ ଗୋବିନ୍ଦ ମୁଖେ ଭଣେ । ୧୫୩ ।
ଈଶାନ୍ୟ ସାତ୍ୟକି ହେମବନେ ରହି ପୁଣ ।
ଏକଚିତ୍ତେ ହରେକୃଷ୍ଣ ମୁଖେ ଗୁଣେ ପୁଣ । ୧୫୪ ।
ଅଗ୍ନିକୋଣେ ସହନନ୍ଦ ବସନ୍ତ ଯେ ବନେ ।
ଏକାନ୍ତେ ରବା ବାଇଣ କୃଷ୍ଣନାମ ମନେ । ୧୫୫ ।
ବାୟବ୍ୟ ଦିଗରେ ବୃଦ୍ଧନନ୍ଦ ଉପବନେ ।
ଷୋଳସହସ୍ର ଗୋପାଳ ଯେ ସଙ୍ଗତରେ ଘେନେ । ୧୫୬ ।
ଏମନ୍ତେଣ ବୃନ୍ଦାବନେ ଗୋପାଳ ମେଳେଣ ।
ଶ୍ରୀକୃଷ୍ଣ ସଙ୍ଗତେ ଖେଳ କରନ୍ତି ଯେ ପୁଣ । ୧୫୭ ।
ସୁଦାମ ଗୋପାଳ ଯୂଥ ଶିଙ୍ଘା ମୁଖେ ବାଦ୍ୟେ ।
ସୁଦାମ ସାଜିଲି ବୋଲି ଜାଣେ ଗୋପପୋଏ । ୧୫୮ ।
ଶଙ୍ଖଧ୍ୱନି ଯାଦବ ଯେ ଗୋପାଳ ବଜାଇ ।
ଯାଦବ ସାଜିଲି ବୋଲି ଗୋପେ ଧ୍ୱନି ହୋଇ । ୧୫୯ ।
ବେଣୁ ଯେ ମୁରଲୀ ପୁଣ ଶ୍ରୀବତ୍ସ ବଜାଇ ।
ଶ୍ରୀବତ୍ସ ଯୂଥ ସାଜିଲେ ଗୋପପୁରେ କହି । ୧୬୦ ।
ସ୍ୱର ଯେ ଶବଦ ପୁଣ ଶୁଭିଲେ ଚହଳ ।
ଜାଣନ୍ତି ଯେ ସହନନ୍ଦ ବୋଲି ଗୋପକୁଳ । ୧୬୧ ।
ଶୁଭବେଳ ଘଣ୍ଟ ପୁଣ ସାରୁକ ବୃହିଣ ।
ସାରୁକି ଯୂଥ ସାଜନ୍ତି ତୂରୀ ବାଦ୍ୟେ ପୁଣ । ୧୬୨ ।
ଉଦ୍ଧବ ଅକ୍ରୂର ଗୀତ ସ୍ୱର ଗାଇ ପୁଣ ।
ସହନନ୍ଦ ରବା ଯେ ବଜାନ୍ତି ସଙ୍ଗତେଣେ । ୧୬୩ ।
ଦାମ ଯେ ସୁଦାମ କୃଷ୍ଣ ବେନି ପାଖୁଣେ ।
ବୃନ୍ଦାବନେ ଗୋପାଳରୂପଙ୍କୁ ସୁମରଣ । ୧୬୪ ।

ଉଦ୍ଧବ ଗୋପାଳ ଯୁଥ ପାଦୁକା ହସ୍ତର ।
ପୁରନ୍ଦର ଗୋପପୋଏ ଉଦ୍ଧବ ସଙ୍ଗେ । ୧୬୫ ।
ଉଦ୍ଧର ଗୋପାଳ ପୋଏ ବୀଣାନାଦ କରେ ।
ରବା ବାଦ୍ୟେ ଈଶାନର ଗୋପ ଯେ କ୍ରମରେ । ୧୬୬ ।
ବାସୁବଂ ଗୋପାଳ ପୋଏ ମୁକୁନ୍ଦ ସେବାରେ ।
ଠାବମାନ ଭ୍ରମଣ ଯେ କରନ୍ତି ବନରେ । ୧୬୭ ।
ସୁଦାମ ହସ୍ତରେ ବେତ ଧରଣ ଯେ ପୁଣ ।
ସେଜନ କରନ୍ତି ବସି କୃଷ୍ଣଙ୍କ ପାଶେଣ ।୧୬୮ ।
ଦାମ ଯେ ଗୋପାଳ ପୁଣ ଜଳବଧି ଦେଇ ।
ଶ୍ରୀବତ୍ସ ଯେ ସିଂହାମଧେ ମୁଖବାସ ଥୋଇ । ୧୬୯ ।
ଅଦ୍ଭୁତ ପୁସ୍ତକ ଗୀତ କରଣ ଉଦ୍ଧବ ।
ଶ୍ରୀକୃଷ୍ଣଙ୍କ ଚୂଳ ପୁଣ ଘେନଣ ଯାଦେବ । ୧୭୦ ।
ବୃନ୍ଦନନ୍ଦ ସହନନ୍ଦ ଆନନ୍ଦ ଯେ ନନ୍ଦ ।
ଗୋକୁଳାନନ୍ଦ ସଙ୍ଗତେ ଦ୍ୱାଦଶ ଯେ ନନ୍ଦ । ୧୭୧
ଗୋକୁଳାନନ୍ଦ ହସ୍ତରେ ଲଗୁଡ଼ ଧରିଣ ।
ବୃନ୍ଦନନ୍ଦ କୃଷ୍ଣଛତ୍ର ଧରଛନ୍ତି ପୁଣ । ୧୭୨ ।
ଆନନ୍ଦନନ୍ଦ ଯେ ଗୁଞ୍ଜ ଗୁଞ୍ଜମାଳ ଧରେ ।
ସହନନ୍ଦ କଠାଉ ଯେ ଧରିଣ ହସ୍ତରେ । ୧୭୩ ।
ଏମନ୍ତ ଶ୍ରୀକୃଷ୍ଣ ଅଙ୍ଗସେବା ବିଧିମାନ ।
ସେବା ଯେ କରନ୍ତି ମିଳି ଗୋପସୁତ ଜନ । ୧୭୪ ।

( ଅନ୍ୟବୃତ୍ତ )

ଦାମ ଗୋପାଳ ସଙ୍ଗତେ ପୁଣ ।
ଆଠ ଗୋପାଳଙ୍କ ନାମ ହେ ଶୁଣ । ୧୭୫ ।
ମାଧବ ଗୋପାଳ ଏକ ଅଟଇ ।
ପରମାନନ୍ଦ ଦୁଇ ବୋଲି କହି । ୧୭୬ ।

ଢବ୍ୟମଣି ବୋଲି ଗୋପକୁମର ।
ଶ୍ୟାମ ଜଳଦ ଏ ଗୁଣ ସୁନ୍ଦର ! ୧୭୭ ।
କାମଦେବ ବାମଦେବ ଏ ଦୁଇ ।
ଲବଣଧି ହର ଗୁଣ ସେ ଭଣ୍ଡ । ୧୭୮ ।
ଏମନ୍ତ ହୋଇଣ ଅଠ ଗୋପାଳ ।
ଦାମ ସଖାଙ୍କର ଅନ୍ତରେ ମେଳ । ୧୭୯ ।
ସୁଦାମ ସଙ୍ଗତେ ଆଠ ଗୋପାଳ ।
ଗୋପାଳ ସଙ୍ଗତେ ମେଳ । ୧୮୦ ।
ରୂପ ସ୍ୱରୂପ ଦୁଇ କୁମର ।
ନାଭରତ୍ନ ବନମାଳୀ ଦୁଇର । ୧୮୧ ।
ଗୋବିନ୍ଦ ଅଚ୍ୟୁତ ଗୋପ ବାଳକ ।
ପ୍ରୀତିମଠ ସେ ଅଛଇ ଅଷ୍ଟକ । ୧୮୨ ।
ଶ୍ରୀବତ୍ସ ସଙ୍ଗରେ ଆଠ ସଙ୍ଗତ ।
କରୁଣା କର କଦମ୍ବକୁ ଘେନ । ୧୮୩ ।
ବେଣୁଧର ନାମ ଲବଣୀ ସଙ୍ଗ ।
ଲକ୍ଷଣ ସିନ୍ଧୁ ଗୁଣିବ । ୧୮୪ ।
ଅଭୟ ଗୋପ ଦବ୍ୟରୂପ ଦୁଇ ।
ଶ୍ରୀବତ୍ସ ସଙ୍ଗରେ ଏ ଅଷ୍ଟ ଥାଇ । ୧୮୫ ।
କୃଷ୍ଣ ସଖା ସଙ୍ଗେ ଆଠ ଗୋପାଳ ।
ପଣ୍ଡିତ ରାଜୀବ ଦୁଇ ଏ ମେଳ । ୧୮୬ ।
ପଦ୍ମନାଭ ମୁକୁନ୍ଦକୁ ସେ ଘେନ ।
ଶ୍ରୀଧର ଦାମୋଦର ଏହୁ ବେନ । ୧୮୭ ।
ରଘୁନାଥ ରାମଚନ୍ଦ୍ର ଏ ପୁଣ ।
ସ୍ତୋକ କୃଷ୍ଣ ସଖା ଏ ଆଠଗୁଣ । ୧୮୮ ।

---

୧୮୨—୨ ପ୍ରୀତିମଠ ଏକ ଅଷ୍ଟବାଳକ (ଖ).

ଉଦ୍ଧବ ଗୋପାଳ ସଙ୍ଗତେ ପୁଣ ।
ମାଧବ ମଧୁସୂଦନ ଯେଜଣ । ୧୮୯ ।
ବାମନ ବଳଭଦ୍ର ଦୁଇ କହୁ ।
ଚନ୍ଦ୍ରାମଣି ଗିରିଧର ଏ ଦୁଇ । ୧୯୦ ।
ଗୋପୀନାଥ ବୋଲି ଅନନ୍ତ ପୁଣ ।
ଉଦ୍ଧବ ସଙ୍ଗତେ ଏ ଅଠଜଣ । ୧୯୧ ।
ଅକ୍ରୁର ସଙ୍ଗତେ ଅଠ ଗୋପାଳ ।
ଗଙ୍ଗାଧର ଶାମ ସୁନ୍ଦର ମେଳ । ୧୯୨ ।
ଯାଦବ ଜଗଜୀବନ ସୁନ୍ଦର ।
ଜଗତ ବଲ୍ଲଭ ଗୋପକୁମର । ୧୯୩ ।
ପତ୍ମଣବଲ୍ଲଭ ନାମ ଅଟଇ ।
ରସିକନାଗର ନାମଟି କହୁ । ୧୯୪ ।
ଅଚ୍ୟୁତ ମଠ ଯେ ଏକ ଗୋପାଳ ।
ଅକ୍ରୁର ସଙ୍ଗତେ ଏ ଅଠମେଳ । ୧୯୫ ।
ସାରୁକ ସଙ୍ଗତେ ସାରଙ୍ଗଧର ।
କଲ୍ପତରୁ ରୁଦ୍ରମଣି ସୁନ୍ଦର । ୧୯୬ ।
ଜଗନ୍ନାଥ ଗୋପ ସଙ୍ଗତେ ରହେ ।
ଦାମୋଦର ଏକ ଗୋପ ବୋଲାଏ । ୧୯୭ ।
ବଇରାଗୀ ଶୁକଦେବ ଅର୍ଜୁନ ।
ସାରୁକ ସଙ୍ଗତେ ଏ ଅଠଜନ । ୧୯୮ ।
ଅଠ ଅଷ୍ଟ ଚଉଷଠି ଗୋପାଳ ।
ଦୁଇ ଗୋପାଳ ନନ୍ଦ ସଙ୍ଗେ ମେଳ । ୧୯୯ ।
ଏମନ୍ତେ ପୁଣ ଷୋଳଟି କହୁ ।
ଏ ଭେଦ ଜାଣିଲେ ଗୋପାଳ ହୋଇ । ୨୦୦ ।
ଏ ଭେଦ ଜାଣିଲେ ଅଟଇ ଦାସ ।
ରାମଚନ୍ଦ୍ର ଦାସ ଶୁଣ ହେ ରସ । ୨୦୧ ।

୧୯୩—୨ ଜଗତ ବଳଭଦ୍ର (ଖ);

ଭୃତ୍ୟ ପରିଭୃତ୍ୟ ମୁକୁନ୍ଦ ଶୁଣ ।
ମୁକୁନ୍ଦ ଜାଣନ୍ତି ଶ୍ଳୋକ ଲକ୍ଷଣ । ୧୦୨ ।
ସୁଦାମ ଅଚ୍ୟୁତ ନାମ ମୋହର ।
ତେଣୁ କହିଲି ଏ ଲୀଳା ବାହାର । ୧୦୩ ।
ସୌନନ୍ଦ ଗୋପାଳ ସଙ୍ଗତେ ପୁଣ ।
କାହ୍ନୁ କୃପାସିନ୍ଧୁ ଗୋପାଳ ପୁଣ । ୧୦୪ ।
ପରଶୁରାମ ଶ୍ରୀକୃଷ୍ଣ ଯେ କହୁ ।
ବଳଭଦ୍ର ଦଇତାର ଅଟଇ । ୧୦୫ ।
ଚତୁର୍ଭୁଜରୂପ କାନ୍ତ ଯେତିନାମ ।
ଏମନ୍ତେ ଅଷ୍ଟଗୋପାଳ ଗୁଣିମ । ୧୦୬ ।
ବ୍ରଜନନ୍ଦ ବୋଲି ଯେଉଁ ଗୋପାଳ ।
ଗଉରାଙ୍ଗ ଶ୍ୟାମ ଗୋପାଳ ମେଳ । ୧୦୭ ।
ନାରାୟଣ ଶ୍ୟାମ ଗୋପାଳ କହୁ ।
ବଳଧ ପୂର୍ଣ୍ଣ ନାମ ଗୋପ ହୋଇ । ୧୦୮ ।
ନବୀନ ଶ୍ୟାମ ରଙ୍ଗିଆ ଗୋପାଳ ।
ଅମୃତ ସିନ୍ଧୁ ଯେ ହୋଇଣ ମେଳ । ୧୦୯ ।
ରସବିହାରୀ ଯେ ଗୋପାଳ କହୁ ।
ବ୍ରଜନନ୍ଦ ସଙ୍ଗେ ଏ ଆଠ ରହୁ । ୧୧୦ ।
ଆନନ୍ଦ ସଖା ଯେ ସଙ୍ଗତେ ପୁଣ ।
ଚକ୍ରଧର ଦାଶରଥି ବୋଲିଣ । ୧୧୧ ।
ଦୀନବନ୍ଧୁ ପଶୁରାମ ଯେ କହୁ ।
ରହସ୍ୟ ଗୋପାଳ କାଳନ୍ଦୀ ଦୁଇ । ୧୧୨ ।
ଜବସେନା ନାମ କୃଷ୍ଣବନ୍ଧି ।
ଆନନ୍ଦ ସଙ୍ଗତେ ଏ ଆଠ ରହୁ । ୧୧୩ ।
ନନ୍ଦ ସଖା ସଙ୍ଗେ ଗୋପ ବାଳକ ।
ତମାଳ ବୃନ୍ଦାବନ କଦମ୍ବକ । ୧୧୪ ।

ନବଘନ ନାମେ ଅଟେ ମୋହନ ।
ଉଦ୍ଧବ ଅନନ୍ତ ରଙ୍ଗ ପରମ । ୨୧୫ ।
ନନ୍ଦ ସଖା ସଙ୍ଗେ ଆଠ ଗୋପାଳ ।
ଲୀଳା କରନ୍ତି ଯେ ବ୍ରଜମଣ୍ଡଳ । ୨୧୬ ।
ଯାଦବ ଗୋପାଳ ସଙ୍ଗତେ ପୁଣ ।
ମାଧବ ତ୍ରିଲୋଚନ ହରଚନ୍ଦନ । ୨୧୭ ।
ଅରଣ୍ୟେ ମିଶା ଯେ କେଳି ସଦନ ।
ଗୋପକଳାପ ଅପୂର୍ବ ମଣ୍ଡନ । ୨୧୮ ।
ଗୋପମଣି ବୋଲି ନାମ ଅଛଇ ।
ଯାଦବ ସଙ୍ଗତେ ଏ ଅଠ ରହି । ୨୧୯ ।
ପୂର୍ବଦିଗେ ଉଦ୍ଧବ ଗୋପାଳ ବୃନ୍ଦାବନ ।
ଈଶାନ୍ୟେ ସାତ୍ତ୍ୱିକ ପୁଣ ରହସ୍ୟ ବନେଣ । ୨୨୦ ।
ଲବଣ୍ୟବନ ଭିତରେ ଯାଦବ ଯେ ରହେ ।
ବାୟବ୍ୟ କୋଣରେ ନନ୍ଦ ଗୋପାଳ ଯେ ଥାଏ । ୨୨୧ ।
ସଦା ଯେ ଆନନ୍ଦ ବନ ଅଛଇ ଯେ ତହିଁ ।
ଏମନ୍ତ ଗୋପାଳଲୀଳା ବନରେ ହୁଅଇ । ୨୨୨ ।
ପଶ୍ଚିମ ଦିଗରେ କୃଷ୍ଣ ଅଛନ୍ତି ଯେ ପୁଣ ।
କୁଞ୍ଜବନ ବୋଲିଣ ଯେ ନାମ ଅଟେ ଶୁଣ । ୨୨୩ ।
ଅଗ୍ନିକୋଣେ ହେମବନ ସନ୍ତନନ୍ଦ ସ୍ଥାନ ।
ରାହାସଲୀଳାର ସେତୁ ଅଛଇ ଯେ ସ୍ଥାନ । ୨୨୪ ।
ନୀଳବନେ ସୁଦାମ ଯେ ପୂର୍ବଭାଗେ ରହେ ।
ବୃନ୍ଦାବନ ପଶ୍ଚିମରେ ଦାମ ଶାଖା ଥାଏ । ୨୨୫ ।
ଶ୍ରୀବସ୍ତ୍ର ବକୁଳ ବନେ ଉତ୍ତର ଦିଗରେ ।
କଣ୍ଠବନେ ଅକ୍ରୁର ନୈର୍‌ଋତ ଭାଗରେ । ୨୨୬ ।

---

୨୧୮—୧ ଅରଣ୍ୟେ ନଗା (କ);

ସନ୍ନନନ୍ଦ ସଙ୍ଗତରେ ବୃଦ୍ଧନନ୍ଦ ରଙ୍ଗେ ।
ବୃଦ୍ଧନନ୍ଦ ବାସନ୍ତୀ ଯେ ବନରେ ଅଛନ୍ତେ । ୨୨୭ ।
ଆନନ୍ଦନନ୍ଦ ଯେ ପୁଣ ବାୟୁବ୍ୟକୋଣରେ ।
ସନ୍ନବନ ବିହାର ଯେ କରନ୍ତି ସୁଖରେ । ୨୨୮ ।
ଏମନ୍ତ ବୃନ୍ଦାବନର କାହାଣୀ ।
ଗୁରୁଭକ୍ତିଗୀତା ଅଚ୍ୟୁତ ଭଣି । ୨୨୯ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ସପ୍ତତ୍ରିଂଶ ଛାନ୍ଦ ॥



# ଅଷ୍ଟବିଂଶ ଛାନ୍ଦ

କହୁବା କଥାଏ ଗୁରୁ ଏ ବଡ଼ ବସ୍ମୟ ।
କେଉଁ ମନ୍ତ୍ରେ କେଉଁ ଗୋପାଳଙ୍କୁ ସେ ସୁମର । ୧ ।
କେଉଁ କୁଟୀ କେଉଁ ଦଗେ ଅଛଇ ସେ ପୁଣ ।
କେଉଁ ମନ୍ତ୍ର ଭଜ ସଖା ଦରଶନ ପୁଣ । ୨ ।
ଶୁଣ ବତ୍ସ ସୃହ୍ମାସଦାସ ଭଗତ ବସ୍ମର ।
ଉତ୍‌ଥାନ ଯାଦବ ମିଳ ଅଷ୍ଟ ଗୋପବାର । ୩ ।
ହେତୁ ମନେ ଧର ଏହୁ ଗୁରୁଙ୍କ ଧ୍ରୁପଡ ।
କୋଟିଜନ୍ମ ଭାଗ୍ୟ ଥିଲେ ଏମନ୍ତ ପ୍ରାପତ । ୪ ।
ଅଷ୍ଟଦଗେ ଗୋପାଳ ସେ ଦ୍ୱାଦଶ ଅଛନ୍ତି ।
ତାଙ୍କୁ ସୁମରଣ ତାଙ୍କୁ ମନ୍ତ୍ରେ କରେ ସ୍ତୁତି । ୫ ।
ଉଦ୍ଧବ ଗୋପାଳ ପୂର୍ବେ ଅଛନ୍ତି ସେ ବତ୍ସ ।
ସେ ଗୋପାଳ ମନ୍ତ୍ରବିଧି ଶୁଣ ମନ ଦେଇ । ୬ ।
କ୍ଳୀଙ୍କଉଁ ମାଧବ ବୋଲି କର ସୁମରଣ ।
ଉଦ୍ଧବ କୃଷ୍ଣ ନମାମ୍ୟହଂ ସେ ବୋଲିଣ । ୭ ।
ତେବେ ପୂର୍ବ ଦଳରେ ସେ ପାଇବ ଭଗତ ।
ଦ୍ୱାଦଶ ଗୋପାଳ ଅଷ୍ଟଦଗ ଚହଳତ । ୮ ।
ସାତ୍ୱିକ ଗୋପାଳ ପୁଣ ଈଶାନ୍ୟ ଦଗେଣ ।
ସେ ଗୋପାଳ ମନ୍ତ୍ରବିଧି ହେତୁ ମନେ ଗୁଣ । ୯ ।
ଓଁ କଲ୍ପତରୁ ଲେ ସାତ୍ୱିକ ନାମ ବୋଲି ।
ପୂର୍ବଦଗ ଶ୍ରେଷ୍ଠ ସାଖା ଅଟେ ଏହୁ ବୋଲି । ୧୦ ।

ଯାଦବ ଗୋପାଳ ପୁଣ ଉତ୍ତରରେ ଅ.ନ ।
ଓଁ କୃଷ୍ଣ ରାଧା ରାଧା କୃଷ୍ଣ କୃଷ୍ଣ ଧ୍ୟାନ । ୧୧ ।
କୃଷ୍ଣ ରାଧେ ଶ୍ୟାମ ବୋଲି ମନ୍ତ୍ରକୁ ଭଜବ ।
ତେବେ ସିନା ଉତ୍ତର ଯେ ଦଳରେ ମିଶିବ । ୧୨ ।
ବାୟୁବ୍ୟ କୋଣରେ ନନ୍ଦ ସଖା ପୁଣ ଥାଏ ।
ଓଁ କ୍ଲୀଁ ପରମାନନ୍ଦ ପୁଣ ଧ୍ୟାଏ । ୧୩ ।
ହରେ ହରେ ବୋଲିଣ ଯେ ମନ୍ତ୍ରକୁ ସୁମର ।
ଉତ୍ତର ଦଗ ସଖାଙ୍କ ମନ୍ତ୍ର ଏ ବଚ୍ଚର । ୧୦ ।
କୃଷ୍ଣସଖା ପଶ୍ଚିମ ଯେ ଦଗରେ ଅଛନ୍ତି ।
ଅଇଁ କୃଷ୍ଣ ପରମାନନ୍ଦ ନମାମ୍ୟହଂ ଚନ୍ତି । ୧୫ ।
ଏମନ୍ତ୍ର ବୋଲିଣ ସଖା ସୁମରଣ କଲେ ।
ପଶ୍ଚିମ ଦଗରେ ସିନା ଗମି ପାରେ ଭଲେ । ୭ ।
ଆନନ୍ଦ ସଖା ଯେ ପୁଣି ବାୟୁବ୍ୟରେ ରହି ।
କୃଷ୍ଣ କୃଷ୍ଣ ଗୋବନ୍ଦ ଯେ ମନ୍ତ୍ରଗୋଟି ଧ୍ୟାଇ । ୧୭ ।
ତେବେ ଯେ ପଶ୍ଚିମ ଦଳ ଭଗନ୍ତରେ ମିଶେ ।
ଗୋପାଳମଣ୍ଡଳୀ ଲୀଳା ହେରୁରେ ପ୍ରକାଶେ । ୧୮ ।
ଅଗ୍ନି କୋଣେ ସଚ୍ଚନନ୍ଦ ବରଜ ଯେ ରହେ ।
କ୍ଲୀଁ କୃଷ୍ଣ ମାଧବ ଯେ ହରେ ରାମ କହେ । ୧୯ ।
ଅଗ୍ନି କୋଣେ ସଖା ଅଙ୍ଗେ କରବ ଭଜନ ।
ତେବେ ସିନା ପାଇବ ଯେ ଭଗନ୍ତର ସ୍ଥାନ । ୨୦ ।
ଅଷ୍ଟକୋଣ ଉପରେ ଯେ ଷଷ୍ଟକୋଣ ପରେ ।
ସୁଦାମ ଗୋପାଳ ପୁଣ ଅଛନ୍ତି ପୂର୍ବରେ । ୨୧ ।
କ୍ଲୀଁ କୃଷ୍ଣ ଯେ ରାମ ହରେ ସ୍ୱାହା ବୋଲି ।
ତେବେ ପୂର୍ବ ଦଳରେ ଯେ ଗମିଲନ୍ତି ବୋଲି । ୨୨ ।

---

୧୭—୧ ଅନାଦ ସଖା ଯେ (କ);
୨୧—୧ ଉପରେ ଯେ ଅଷ୍ଟ (ଖ);

ପଶ୍ଚିମ ଦଗରେ ଦାମ ଅଛନ୍ତି ଯେ ରହ୍ବ ।
ଜାଳଉଁ କୃଷ୍ଣାୟ ନମ ମନ୍ତ୍ର ଗୁଣ ଜହ୍ବ । ୨୩ ।
ତେବେ ସେ ପଶ୍ଚିମ ଦଳେ କରବ ଦର୍ଶନ ।
ତେବେ ସିନା ସଖା ହେତୁ ଭଗବରେ ମନ । ୨୪ ।
ଉତ୍ତର ଦଗରେ ସଖା ଶ୍ରୀବତ୍ସ ରହ୍ବଣ ।
ଝାରଉଁ କୃଷ୍ଣାୟ ନମ ମନ୍ତ୍ର ଯେ ଗୁଣିଣ । ୨୫ ।
ତେବେ ସେ ଉତ୍ତର ଦଗେ ପାଇବ ଭଗବ ।
ଶ୍ରୀବତ୍ସ ସଖା ଯେ ପୁଣ ଏହୁ ମନ୍ତ୍ରେ ଚନ୍ତ୍ର । ୨୬ ।
ନନ୍ଦ ସଙ୍ଗେ ବୃଦ୍ଧନନ୍ଦ ଅଛନ୍ତି ଯେ ରହ୍ବ ।
ଜାଳଉଁ ରାମ ରାମ ଯେ ମାଧବ ନମ ଜହ୍ବ । ୨୭ ।
ଏ ଗୋପାଳ ସୁମଣବ ବାୟବ୍ୟ ଦଗରେ ।
ତେବେ ସିନା ପଶିବ ସେ ଭଗବତ୍ପବରେ । ୨୮ ।
ଅକ୍ରୂର ଗୋପାଳ ପୁଣ ନଇରୃତେ ରହ୍ବ ।
ଜାଳଉଁ କୃଷ୍ଣ ରାମ ହରେ ନମାମ୍ୟହଂ ଜହ୍ବ । ୨୯ ।
ଏମନ୍ତେ ଦ୍ୱାଦଶ ଗୋପ ଅଟନ୍ତି ସାର ।
ସାଧୁଜନମାନଙ୍କର ଅଟେ ଏ ଈଶ୍ୱର । ୩୦ ।
ସୁବଳ ସୁରଥ ଲୋକପାଳ ଧର୍ମାନନ୍ଦ ।
ଦକ୍ଷିଣ ଯେ ବଳରାମ ସଙ୍ଗରେ ଆନନ୍ଦ । ୩୧ ।
ସଙ୍କର୍ଷଣ ରାମ ହରେ କରବ ଭଜନ ।
ଚଉଷଠି ଗୋପାଳରେ ଦ୍ୱାଦଶ ପ୍ରଧାନ । ୩୨ ।
ବୃନ୍ଦା କୁଟୀ ମଠରେ ଯେ ଲଭିବ ତପିଣ ।
ଉପଦେଶ ମନ୍ତ୍ର ଜପ କରଣ ଯତନ । ୩୩ ।
କୃଷ୍ଣ କୃଷ୍ଣ ପୁରୁଷୋତ୍ତମ କର ଯେ ଭଜନ ।
ଉଦ୍ଧବ ଭଜନ କରେ ବସି ବୃନ୍ଦାବନ । ୩୪ ।

---

୩୨—୧ ସଙ୍କର୍ଷଣ ନମ ହରେ (୯):

ବିହ୍ଵାସ କୁଟୀରେ ପୁଣ ସାତ୍ଵିକ ଯେ ରହି ।
ପରମାନନ୍ଦ ଯେ ରାମ କୃଷ୍ଣ ଜପେ ଭକ୍ତି । ୩୫ ।
ସାତ୍ଵିକ ରହସ୍ୟ ବନେ ରହୁଣ ଯେ ପୁଣ ।
ଏମନ୍ତ ହୋଇଣ ପୂର୍ବ ସଖା ଦୁଇଜଣ । ୩୬ ।
ଯାଦବ ଗୋପାଳ ପୁଣ ହରିବର ଦିଗେଣ ।
ଓଁ ରାଧେ କୃଷ୍ଣବଲ୍ଲଭି ଭଜନ କରିଣ । ୩୭ ।
ଲାବଣ୍ୟବନ କୁଟୀରେ କିଶୋର କିଶୋରୀ ।
ଯାଦବ ଗୋପାଳ ସେହୁ ବନ ରକ୍ଷା କରି । ୩୮ ।
ବାୟୁବ୍ୟକୋଣରେ ନନ୍ଦ ସଖା ରହିଛନ୍ତି ।
କାଳଭିଁ ରାମ କୃଷ୍ଣ ନମାମ୍ୟହଂ ଯେ ଚଳନ୍ତି । ୩୯ ।
ସଦା ଆନନ୍ଦ କୁଟୀରେ ନହୁଣ ସେ ଲୀଳା ।
ହରିବର ଦିଗରେ ସଖା କରିଛନ୍ତି ଖେଳା । ୪୦ ।
କୃଷ୍ଣ ସଖା ପଶ୍ଚିମ ଯେ ଦିଗରେ ରହୁଣ ।
କୃଷ୍ଣାୟ ଗୋବିନ୍ଦାୟ ନମ ଯେ ବୋଲିଣ । ୪୧ ।
କୁଞ୍ଜ କୁଟୀ ବନରେ ଯେ ରହୁଣ ସଜନ ।
କୃଷ୍ଣ ସଖା ରହିଛନ୍ତି ହେତୁ ମନେ ଘେନ । ୪୨ ।
ଅଙ୍କୁର ଗୋପାଳ ପୁଣ ନଇଋତ ସ୍ଥାନ ।
କଣ୍ଡୁବନ କୁଟୀରେ କରନ୍ତି ଭଜନ । ୪୩ ।
ଶୂନ୍ୟ କୃଷ୍ଣ ପଦ୍ମନାଭ ନମ ଯେ ଗୁଣିଣ ।
ଏମନ୍ତ ହୋଇଣ ସଖା ଭକତ ହେ ଶୁଣ । ୪୪ ।
ଅଗ୍ନିକୋଣେ ସହଜନନ୍ଦ ଅଛନ୍ତି ଯେ ରହି ।
ହେମବନ କୁଟୀରେ ଯେ ମନ୍ତ୍ର ଜପ ଭକ୍ତି । ୪୫ ।
ହ୍ରୀଂ ଶ୍ରୀଂ ରାମ କୃଷ୍ଣ କୃଷ୍ଣ ହରେ ।
ହେମବନେ ସହଜନନ୍ଦ ଲୀଳାରେ ବନ୍ଦନେ । ୪୬ ।
ଆନନ୍ଦ ସଖା ଏ ପୁଣ ବାୟୁବ୍ୟକୋଣେଣ ।
କୃଷ୍ଣଶୂନ୍ୟ ନମ ବୋଲି ମନ୍ତ୍ରକୁ ଜପିଣ । ୪୭ ।

ସଙ୍କବନ କୁଟୀରେ ଯେ କରିବ ବିଶ୍ରାମ ।
ଏମନ୍ତ ହୋଇଣ ଅଷ୍ଟବନ ଅଟେ ନାମ । ୪୮ ।
ବସନ୍ତ ବନରେ ବ୍ରଜନନ୍ଦ ଯେ ନନ୍ଦଣ ।
ବାୟବ୍ୟ କୋଣରେ ନନ୍ଦ ସଙ୍ଗତେଣ ପୁଣ । ୪୯ ।
କ୍ଲୀଂ ଶୂନ୍ୟ କୃଷ୍ଣ ନମାମ୍ୟହଂ ଯେ ଗୁଣିଲେ ।
ସଖା ସେବା ଭଜନ୍ତି ଯେ କୃଷ୍ଣଙ୍କୁ ଗୁଣିଲେ । ୫୦ ।
ପଶ୍ଚିମ ପୂର୍ବ ଦିଗରେ ସୁଦାମ ରହିଣ ।
ମାଳବନ କୁଟୀରେ ଯେ ବିଶ୍ରାମ କରିଣ । ୫୧ ।
କ୍ଲୀଂ କୃଷ୍ଣାୟ ଗୋପୀଜନ ଯେ ଗୁଣିଣ ।
ମାଧବାୟ ନମାମ୍ୟହଂ ମନ୍ତ୍ର ସୁମରନ୍ତି । ୫୨ ।
ପଶ୍ଚିମ ଦିଗରେ ଦାମ କରିଣ ବିଶ୍ରାମ ।
କଦମ୍ବବନ କୁଟୀରେ ମନ୍ତ୍ରକୁ ଗୁଣିଣ । ୫୩ ।
କୃଷ୍ଣାୟ ଗୋପୀଜନ ବୋଲିଣ ନମୋନମ ।
ଦାମ ସଖା ରହିଛନ୍ତି ଶ୍ରୀକୃଷ୍ଣ ପାଶେଣ । ୫୪ ।
ଉତ୍ତରେ ଶ୍ରୀବତ୍ସ ପୁଣ ରହିଣ ଅଛନ୍ତି ।
ବକୁଳବନ କୁଟୀରେ ମନ୍ତ୍ର ଯେ ଜପନ୍ତି । ୫୫ ।
ଗୋବିନ୍ଦ ଗୋପାଳ ନମାମ୍ୟହଂ ସୁମରଣ ।
ଦ୍ୱାଦଶ କୁଟୀକି ବାର ବୃନ୍ଦାବନ ପୁଣ । ୫୬ ।
ତମାଳବନ ଯେ ଅଛୁ କୁଞ୍ଜବନ ପାଶେ ।
ବାସନ୍ତୀବନ ନିକଟ ତାଳବନ ଦିଶେ । ୫୭ ।
ଏମନ୍ତ ହୋଇଣ ବୃନ୍ଦାବନର ବିହାର ।
ଶ୍ରୀକୃଷ୍ଣ ସଙ୍ଗତେ ସେବା କରନ୍ତି ପରସ୍ପର । ୫୮ ।
ଦ୍ୱାଦଶ ମନ୍ତ୍ର ଯେ ବାର ସଖା ପୁଣ ଭଜେ ।
ଶ୍ରୀକୃଷ୍ଣ ସୁମରି ପୁଣ ବୃନ୍ଦାବନ ବିଜେ । ୫୯ ।
ଏହୁ ବାର ମନ୍ତ୍ର ପୁଣ ଶିଷ୍ୟଙ୍କୁ କହିବ ।
ତେବେ ସିନା ଶିଷ୍ୟ ମନ ବୋଧ ଯେ ହୋଇବ । ୬୦ ।

ଚଉଷଠି ଗୋପାଳ ଯେ ବାର ମନ୍ତ୍ର ଗୁଣି ।
ବାର ମନ୍ତ୍ର ଜପିଣ ଯେ କୃଷ୍ଣ ସେବା ପୁଣି । ୭୧ ।
ଅଷ୍ଟକୋଣେ ଚନ୍ଦନ ଯେ ମନ୍ତ୍ରକୁ ଲେଖିବ ।
ଚନ୍ଦନ ମୂରଛ ବସ୍ତ୍ର ଉଜ୍ଜ୍ୱଳ ଦେବ । ୭୨ ।
ଦାମ ସୁଦାମ ସୁବାହୁ ସୁବଳ ଯେ ଗୃହ ।
ଗୃହ ଛନ୍ଦେ ଚନ୍ଦନ ଯେ ଗୋପାଳ ଉଗ୍ରହ । ୭୩ ।
ଷୋଳ ବେଣୁ ମିଶିଲେ ଯେ ହୋଇବ ବନ୍ଦନ ।
ଆବର ଗୃହ ଆଠରେ ବନ୍ଦନ ଯେ ଘୋଷ । ୭୪ ।
ପୁଣ ତନବନ୍ଧରେ ଯେ କଲବ ଉଗ୍ରର ।
ଓଁକାର ଅଟଇ ପୁଣ ତ୍ରିକୋଣ ପଦ୍ମର । ୭୫ ।
ଅର୍ଦ୍ଧମାତ୍ରା ଅଟଇ ଯେ ଅକ୍ଷର ପଞ୍ଚମ ।
ଓଁକାର ମଣ୍ଡଳ ଷୋଳଦଳ ଦକ୍ଷିଣମ । ୭୬ ॥
ତକାର ଅଟଇ ପୁଣ ଉତ୍ତର ଦିଗଇ ।
ଉତ୍ତର ଦିଗରୁ ଆସି ପୂର୍ବଦିଗେ ରହ । ୭୭ ।
ପୂର୍ବ ଯେ ଉତ୍ତର ପୁଣ ଏକ ବୋଲି କହେ ।
ଦକ୍ଷିଣଦିଗରୁ ଗମ ପଶ୍ଚିମକୁ ଲହେ । ୭୮ ।
ତକାର ବନ୍ଦନ ଦଳ ତଥିପରେ ଷୋଳ ।
ତହିଁ ଯେ ମଣ୍ଡଳ ଗୋଟି ଅଟେ ଅଷ୍ଟଦଳ । ୭୯ ।
ତଥିପରେ ଅର୍ଦ୍ଧମାତ୍ରା ଛଦଦଳ କହ ।
ବନ୍ଦ ଅଟେ ଷଡ଼ଦଳ ସାଧୁଭେଦ ପା[illegible] ୦ ।
ତଥିପରେ ବେଣୁଦଳେ ଦୁଇ ଛଇ ଜାଣ ।
ବେଣୁ ପରେ ଏକଦଳ ମଣ୍ଡଳ ପ୍ରମାଣ । ୭୧ ।
ବୃନ୍ଦାବନ ଉପରେ ଯେ ଶ୍ରୀହାସ ବନ୍ଧାର ।
ତହେଁ ବୃନ୍ଦ ଗୋପପୋଏ ଗୁରୁଙ୍କ ପଗ୍ରହ । ୭୨ ।
ଏ ଭେଦ ଜାଣିଲେ ସିନା ଗୁରୁଦୀକ୍ଷା ପାଇ ।
ଏ ଭେଦ ନ ଜାଣି ଶିଷ୍ୟ କଲେ ବାଧା ହୋଇ । ୭୩ ।

ଗୁରୁଶିଷ୍ୟ ବସନ୍ତି ଯେ ପଥର ନାବରେ ।
ଚକ୍ଷୁଶୂନ୍ୟ ପ୍ରାଣୀ ଯେହ୍ନେ ପଡ଼ଇ କୂପରେ । ୭୪ ।
ଶୟନେ ସ୍ୱପନେ ଗୁରୁଠାରେ ଚିତ୍ତ ଦିଅ ।
ବିଷ୍ଟପ ଯୁବତୀ ପ୍ରାପ୍ତେ ମନ ଗୋଟି ହୁଅ । ୭୫ ।
ବସ୍ତ୍ର ଅନ୍ନ ଧନ ଜନ ପଣ ଆଦ୍ୟ ଥିବ ।
କୃ ନୈବେଦ୍ୟ ଆଗେ ଶ୍ରେଷ୍ଠ ତା କରିବ । ୭୬ ।
ପୁତ୍ରଜାତ ହୋଇଲେ ଗୁରୁଠାରେ ଦୀକ୍ଷା ନେଇ ।
ଅନ୍ନ କମାଇଲେ ଗୁରୁମୁଖରେ ଭୁଞ୍ଜାଇ । ୭୭ ।
ବସ୍ତ୍ର ଆଦ୍ୟ ମିଳିଲେ ଯେ ଗୁରୁ ଅଙ୍ଗେ ଦେବ ।
ଭଗତ ସଭାର ଅଙ୍ଗେ ତେବେ ସେ ହୋଇବ । ୭୮ ।
ପଣ ଥିଲେ ଗୁରୁକାର୍ଯ୍ୟେ ହୋଇବ ତତ୍ପର ।
ଚିରସ୍ଥ କରିବ ଆସି ଗୁରୁଙ୍କ ମନ୍ଦିର । ୭୯ ।
ଏତେ ଗୁଣ ଥିଲେ ଶିଷ୍ୟ ଅଟଇ ନୁହଇ ।
ସେବାବଧି ଶିଷ୍ୟର ଯେ ବହୁତ ଅଟଇ । ୮୦ ।
ମନ୍ତ୍ରଯନ୍ତ୍ର ତନ୍ତ୍ରବଧି ଗୁରୁଙ୍କର ପଣ ।
ଅବାଡ଼ ଜ୍ୟୋତ ଯେ ତ୍ରୟା ସମାଧି ନିପୁଣ । ୮୧ ।
ନିଷ୍ଫଳ ହୋଇବା ହେତୁ ନ ଜାଣିଲେ ଗୁରୁ ।
ନିଶ୍ଚେ ବାଦ ପଡ଼ଇ ଯେ ନିଅର୍ଥେ ସେ ଗୁରୁ । ୮୨ ।
ଛନ୍ଦ ଷଡ଼ାଙ୍ଗ ଅଙ୍ଗନ୍ୟାସ କରନ୍ୟାସ ।
ସକଳ ସାହ୍ୱାସ୍ତ୍ର ମୁଖେ କରୁଥିବ ଘୋଷ । ୮୩ ।
ରୁଆପଟ୍ଟ ଗ୍ରନ୍ଥ ଲକ୍ଷ ଭଜନ ଜାଣିମ ।
ଏହା ନ ଜାଣିଲେ ଗୁରୁ ପଣ ଯେ ଅଧମ । ୮୪ ।
ଅଣ୍ଡିର ମାଇ ଯେ ମନ୍ତ୍ର ଜାଣିବ ପ୍ରମାଣ ।
ତଥି ବାର ନକ୍ଷତ୍ର ଯେ ବଢ଼ପଟି ଶୁଣ । ୮୫ ।

---

୮୪—୧ ରୁଆପଟ୍ଟ (କ);

ଏ ଭେଦ ନ ଜାଣି ଶିଷ୍ୟ କଲେ ବଡ଼ ମନ୍ଦ ।
ସାଧୁଜନ ଗୋଷ୍ଠିରେ ସେ ପଡ଼େ ବଡ଼ ଦ୍ୱନ୍ଦ । ୮୬ ।
ମୁକୁନ୍ଦ ଅନନ୍ତଦାସ ଗୋପଲୀଳା ଶୁଣ ।
ହେରୁ ଶିଷ୍ୟେ କହୁବ ସେ ଘଟକୁ ଦେଖିଣ । ୮୭ ।
ପଣ୍ଡିତ ଘଟରେ ହୁଏ ମହିମା ରହୁଇ ।
ମୂର୍ଖନ୍ତ ଶିଷ୍ୟର ଭେଦ ଏଥି ପୁଣ କାହିଁ । ୮୮ ।
ଶ୍ରୀଅଚ୍ୟୁତ ବଚନ ହେ ରାମଚନ୍ଦ୍ର ଘୋଷ ।
ଭୁଥ ବନ୍ଧ ବସ୍ତୁ ଧର୍ମ୍ମ ମନକର ତୋଷ । ୮୯ ।
ଉପଦେଶ ଦାସ ତୁମ୍ଭେ ବାରଜଣ ଶୁଣ ।
ରାଧାସଦାସ ଯେ ବାରଜଣ ମନେ ଗୁଣ । ୯୦ ।
ଏତୁ ଗୁରୁଭକ୍ତଗୀତା ବନ୍ଧଲେ ସୁଗତ ।
ଶ୍ରୀଚରଣଦାସ ଗୁରୁ କୃପା କରିଛନ୍ତ । ୯୧ ।
ବୃନ୍ଦାବନ ଚରିତ ଯେ କହିଲେ ଗୁପତେ ।
ଶ୍ରୀଦ୍ୱାରକାପଣବାରଜନର ଯେ ହିତେ । ୯୨ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଅଷ୍ଟବିଂଶ ଛାନ୍ଦ ।



# ଊନଚତ୍ୱାରିଂଶ ଛାନ୍ଦ

ସୁଦାମ ଦାମ ଯେ ଶ୍ରୀବସ୍ତ୍ର କଣ୍ଠ ।
ସ୍ତୋକ କୃଷ୍ଣ ସଙ୍ଗେ ଉଦ୍ଧବ ବନ୍ଧୁ । ୧ ।
ଅକ୍ରୂର ସାତ୍ୟକି ଯାଦବ ପୁଣ ।
ସନ୍ଦନନ୍ଦ ବୃଷନନ୍ଦ ଘେନଣ । ୨ ।
ନନ୍ଦ ଗୋପାଳ ଯେ ସଙ୍ଗତେ ପୁଣ ।
ଆନନ୍ଦନନ୍ଦ ଯେ ଅଛନ୍ତି ଜାଣ । ୩ ।
ସୁବାହୁ ସୁବଳ ସୁରଥ ମିଳି ।
ଲୋକପାଳ ଧର୍ମାନନ୍ଦ ମଣ୍ଡଳୀ । ୪ ।
ରାମକୃଷ୍ଣ ବେନି ସଙ୍ଗତେ ସେବା ।
ଜନମେ ଜନମେ ସଙ୍ଗତେ ଥିବା । ୫ ।
ସତ୍ୟ ତ୍ରେତୟା ଯେ କଳି ଦ୍ୱାପର ।
ଲୀଳା କରନ୍ତି କୃଷ୍ଣ ସଙ୍ଗତର । ୬ ।
ନୀଳ କୁଟୀରେ ଯେ ସୁଦାମ ବନ୍ଧୁ ।
ନବୀନ ତରୁ ଚନ୍ଦ୍ରପାଶେ ବନ୍ଧୁ । ୭ ।
ବଇଁଶୀ କାହାଳୀ ଶିଂଘା ଶବଦ ।
ବେଣୁ ବଇଁଶୀ ଯେ ସୁସ୍ୱର ନାଦ । ୮ ।
ସ୍ଫଟିକର ବେଢ ସ୍ୱର୍ଣ୍ଣର ଖମ୍ବ ।
ମାଣିକ୍ୟଜଡ଼ିତ ଅଛି ସୁଲଭ । ୯ ।
ପ୍ରବାଳର ବତା ମୁକୁତା ଗୁନ୍ଥି ।
ବାଇଗି ପାବଚ୍ଛ ଯିବାକୁ ଚନ୍ଦି । ୧୦ ।
ବନ୍ଧ ପୁଷ୍ପ ଯେ ଚନ୍ଦ୍ରପାଶେଣ ।
ଆମୋଦ କରଇ ଗ୍ରାଣ ଦନେଣ । ୧୧ ।

ବିବିଧ ପକ୍ଷୀ ଯେ ନାଦ କରନ୍ତି ।
ଚଉଷଠିକୋଟି ଏହି ରୂପଟି । ୧୨ ।
କୁଟୀ ଗୋଟିକରେ ଏକ ଗୋପାଳ ।
ରାମକୃଷ୍ଣଙ୍କର ସେବାରେ ମେଳ । ୧୩ ।
ଦିବାରାତ୍ରିରେ ଯେ ଅଠ ପ୍ରହର ।
ସେବା କରନ୍ତି ଯେ କୃଷ୍ଣ ପ୍ରବର । ୧୪ ।
ପ୍ରଥମ ପ୍ରହର ଦାମ ସଖାଙ୍କର ସେବା ।
ବାୟବ୍ୟ ପଶ୍ଚିମେ ଗୋପପୋଏ ମିଳିଥିବା । ୧୫ ।
ସେବା ଯେ ସୁଦାମ କରେ ଦ୍ୱିତୀୟ ପ୍ରହରେ ।
ଈଶାନ୍ୟ ପର୍ବରେ ପୋଏ ଅଛନ୍ତି ସଙ୍ଗରେ । ୧୬ ।
ସୁବାହୁ ଗୋପାଳ ପୁଣ ଦକ୍ଷିଣ ଦିଗର ।
ସୁବଳ ଗୋପାଳ ପୁଣ ଉତ୍ତର ଦିଗର । ୧୭ ।
ତୃତୀୟ ପ୍ରହରେ ପୁଣ ସୁବାହୁ ସେବଣ ।
ଏମନ୍ତେଣ ରାଜ ଦିବା କୃଷ୍ଣପାଦେ ମନ । ୧୮ ।
ସୁବଳ ଚତୁର୍ଥ ପୁଣ ପ୍ରହରେ ସେବଣ ।
ପଞ୍ଚପ୍ରହରେ ସେବା ଦାମ ପୁଣ । ୧୯ ।
ଷଷ୍ଠମପ୍ରହରେ ସେବା ସୁଦାମ ଯେ ମିଳି ।
ଶ୍ରୀକୃଷ୍ଣ ଶିରରେ ସେବା ଯେ ପୁଷ୍ପ ଅଞ୍ଜଳି । ୨୦ ।
ସପ୍ତମପ୍ରହରେ ପୁଣ ସୁବାହୁ ସେବଣ ।
ଅଷ୍ଟମପ୍ରହରେ ସେବା ସୁଶୀଳ କରଣ । ୨୧ ।
ଶ୍ରୀବୃନ୍ଦାବନ ଗୋପରେ ଶ୍ରୀକୃଷ୍ଣ ସଙ୍ଗର ।
ଶ୍ରୀକୃଷ୍ଣ ସେବା ନାମରେ ହୋଇ ତତପର । ୨୨ ।
ପାମର ଅଚ୍ୟୁତ ଗୀତେ ଲେଖିଲଇ ବୋଲି ।
ଏ କୁଟ ସନ୍ଧି କୁଟୀରେ ପାଶବ କି ପେଲି । ୨୩ ।
ଚଉଷଠିକୁଟୀ ତେବେ ଦର୍ଶନ କରବ ।
ଏ କୁଟୀକି ନ ପଶିଲେ ଫଣସ୍ତ ରହିବ । ୨୪ ।

ଏ କୁଟୀରେ ପଶି ଯେବେ ସେବା କରିପାର ।
ଶ୍ରୀଗୋପାଳ ରୂପ ତେବେ ଦରଶନ କର । ୨୫ ।
କେତେବେଳେ ସେ ବେଶ ଯେ ଅଟଇ ଶୁକଳ ।
କେତେବେଳେ ସେ ବେଶ ଯେ ଅଟଇ ଶ୍ୟାମଳ । ୨୬ ।
କେତେବେଳେ ସେ ବେଶ ଯେ ଗନ୍ଧର୍ବ ଅଟଇ ।
କେତେବେଳେ ସେ ବେଶ ଯେ ରଙ୍ଗମସ୍ତ ହୋଇ । ୨୭ ।
ନୀଳବର୍ଣ୍ଣ ଅଟଇ ଯେ କେତେବେଳେ ବେଶ ।
ଅନନ୍ତ ସ୍ୱରୂପ କେତେବେଳେ ହୋଏ ଦୃଶ୍ୟ । ୨୮ ।
ଦବାଗ୍ନି ବୃନ୍ଦାବନେ କରୁଥିବ ଚଣ୍ଡ ।
ମୁକୁନ୍ଦ ଅନନ୍ତ ଦୁଇ ମନେ ହେଉ ଚନ୍ଦ୍ର । ୨୯ ।
ହେଉମନେ ବୃନ୍ଦାବନେ ଯାଇଣ ତ ପାର ।
ଲୋଚନ ପାଦେ ଗମିଲେ ଫୁଟି ଯିବା ମର । ୩୦ ।
ଦୀନ ଅଚ୍ୟୁତକୁ ଗୁରୁ ହେଉ ଦେଲେ କହୁ ।
ଗୁରୁ ନ କହୁଲେ ବୃନ୍ଦାବନ ହେଉ ନୋହୁ । ୩୧ ।

**ଇତ ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଊନତ୍ରିଂଶତ୍ ଗ୍ରନ୍ଥ**

୨୯—୧ କରୁଥିବ ତଣ୍ଡ (କ); ୨୯—୨ ହେଉଛୁତ (ଖ);
୩୦—୨ ଲୋଚନ ପାବେ (କ);

## ଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ସୁଜନ ଗୋପାଳ ସାର ।
ପଶ୍ଚିମ ଦ୍ୱାରରେ ଯେତେ ବିସ୍ତାର । ୧ ।
ଦ୍ୱିତୀୟ ଦୁଆରେ ଶ୍ରୀଦାମ ପୁଣ ।
ସଙ୍ଗତେ ଏକ ଯେ ଗୋପାଳ ଜାଣ । ୨ ।
ସେହୁ ପଶ୍ଚିମ ଯେ ତୃତୀୟ ଦ୍ୱାରେ ।
ସ୍ତୋକ କୃଷ୍ଣ ଏକା ଧେନୁ ସଙ୍ଗରେ । ୩ ।
ଉଦ୍ଧବ ଗୋପାଳଗଣ ହେ ତହିଁ ।
ପଶ୍ଚିମ ଦ୍ୱାରରେ ଗୋପାଳ ରହି । ୪ ।
ଉତ୍ତର ପୂର୍ବେ ଯେ ବରଣ ଖେଳ ।
ଦୁଇ ଆବରଣେ ଦୁଇ ଗୋପାଳ । ୫ ।
ତୃତୀୟ ଆବରଣେ ସେ ସେ ଦୁଇ ।
ସୁଦାମ ସଖାର ଗୋପାଳ ତହିଁ । ୬ ।
ଦକ୍ଷିଣ ଦ୍ୱାରରେ ଗୋପାଳ ପୁଣ ।
ତୃତୀୟ ଦୁଆରେ ଅଛନ୍ତି ଜାଣ । ୭ ।
କିଙ୍କିଣୀ ସଙ୍ଗତେ ଦୁଇ ଗୋପାଳ ।
ଦକ୍ଷିଣ ଦ୍ୱାରରେ କରନ୍ତି ଖେଳ । ୮ ।
ତୃତୀୟ ଦୁଆରେ ରହି ଅଛଇ ।
ଲବଙ୍ଗ ଗୋପାଳ ମିଳଣ ଦୁଇ । ୯ ।
ଉଦ୍ଧବ ଗୋପାଳ ପୂର୍ବଦ୍ୱାରରେ ।
ଏମନ୍ତ ଦ୍ୱାଦଶ ଗୃହ ସ୍ଥଗରେ । ୧୦ ।

---

୨—୧ ପୁଣ୍ୟ ଦୁଇ (ଖ);

ପଶ୍ଚିମ ପଞ୍ଚମଦ୍ୱାରେ ଯେ ପୁଣ।
ପାରିଜାତକ ଯେ ବୃକ୍ଷ ଚହ୍ନିଣ। ୧୧ ।
ଉତ୍ତର ପଞ୍ଚମଦ୍ୱାରେ ଯେ ପୁଣ ।
ହରିଚନ୍ଦନ ଯେ ବୃକ୍ଷ ଚହ୍ନିଣ। ୧୨ ।
ପୂର୍ବଦଗେ ବ୍ରହ୍ମକୁଣ୍ଡ ଅଛଇ ।
ନରଞ୍ଜନକୁଣ୍ଡ ପଶ୍ଚିମେ ରହ୍ଇ । ୧୩ ।
ଦକ୍ଷିଣେ ଅଛଇ ରୁଦ୍ର ଯେ କୁଣ୍ଡ ।
କୃଷ୍ଣକୁଣ୍ଡ ଅଛୁ ଉତ୍ତରଖଣ୍ଡ । ୧୪ ।
ବ୍ରହ୍ମକୁଣ୍ଡେ ପଶି ସ୍ନାନ କରିବ ।
ରୁଦ୍ରକୁଣ୍ଡରେ ଯେ ରୂପ ଗୁଣିବ । ୧୫ ।
କୃଷ୍ଣକୁଣ୍ଡରେ ଯେ ସ୍ନାହାନ କର ।
କୃଷ୍ଣ ସଙ୍ଗତେ ଗୋପାଳ ସୁମର । ୧୬ ।
ନରଞ୍ଜନକୁଣ୍ଡେ କରି ସ୍ନାହାନ ।
ଲଳିତା ଜିପୁର କର ଦର୍ଶନ । ୧୭ ।
ତେବେ ଯିନା ରାଧାକୃଷ୍ଣକୁ ପାଇ ।
ରାଧାକୃଷ୍ଣ ଛନ୍ତି ପଶ୍ଚିମେ ରହି । ୧୮ ।
ପ୍ରଥମ ଦୁଆରେ ଗୋପୀ ରହନ୍ତି ।
ଚଉଷଠି ଗୋପୀ ସେବା କରନ୍ତି । ୧୯ ।
ପୂର୍ବଦଗରେ ଯେ ଲଳିତା ପୁଣ
ଅଠର ଗୋପୀ ଯେ ସଙ୍ଗତେ ଜାଣ । ୨୦ ।
ବିଶାଖା ଶ୍ରିଯ୍ୟା ଯେ ଦୁଇ ମିଳଣ ।
ଚଉଦକୋଟି ଯେ ତାଙ୍କ ସଙ୍ଗେଣ । ୨୧ ।
ହରିପ୍ରିୟା ସଙ୍ଗେ ଶ୍ରୀମତୀ ରହି ।
ନଇର୍‌ତ କୋଣେ ଏ ଦୁଇ ରହି । ୨୨ ।

---

୧୭—୨ କୃଷ୍ଣ ଅଙ୍ଗ ଯେ (କ);

ଉଣାଇଶ ଗୋପୀ ତାଙ୍କ ସଙ୍ଗରେ ।
ସେବା କରୁଛନ୍ତି ତାଙ୍କ ସମ୍ମୁଖରେ । ୨୩ ।
ବାହାରଦ୍ୱାରରେ ଶ୍ରୀମତୀ ପୁଣ ।
ଶ୍ରୀମତୀ ଧନ୍ୟା ଚନ୍ଦ୍ରା ଛନ୍ତି ଜାଣ । ୨୪ ।
ପନ୍ଦର ଗୋପୀ ଯେ ତାଙ୍କ ସଙ୍ଗର ।
ସେବା କରନ୍ତି ଯେ ରାଧା ପଯ୍ୟର । ୨୫ ।
ବାୟବ୍ୟଦ୍ୱାରରେ ଶ୍ୟାମଳା ପୁଣ ।
ଚନ୍ଦ୍ରରେଖା ଗୋପୀ ଅଛୁ ସଙ୍ଗେଣ । ୨୬ ।
ପନ୍ଦର ଗୋପୀ ଯେ ସଙ୍ଗତେ ବନ୍ଧୁ ।
ରାଧାଙ୍କ ସଙ୍ଗତେ ସେବା ଯେ ବନ୍ଧ । ୨୭ ।
ଦକ୍ଷିଣେ ପଦ୍ମା ଯେ ଅଛନ୍ତି ଜାଣ ।
ମଧୁମତୀ ସଖୀ ତାଙ୍କ ସଙ୍ଗେଣ । ୨୮ ।
ବତିଶ ଗୋପୀ ଯେ ସଙ୍ଗତେ ଛନ୍ତି ।
ରାଧାଙ୍କ ଚରଣସେବା କରନ୍ତି । ୨୯ ।
ଭଦ୍ରା ଗୋପୀ ଛନ୍ତି ନଇର୍ଋତରେ ।
କୃଷ୍ଣପ୍ରିୟା ଛନ୍ତି ତାଙ୍କ ସଙ୍ଗର । ୩୦ ।
ବତିଶ ଗୋପୀ ଯେ ଅଛନ୍ତି ପାଶ ।
ରାଧାସେବା କର ରାତ୍ର ଦିବସ । ୩୧ ।

---

୨୩—୨ ରାଧା ସମ୍ମୁଖରେ (ଖ);
୨୮—୨ ଶଶିରେଖା ସଖୀ ସଙ୍ଗତେ ଜାଣ (ଖ);
୨୯—୧ ସଙ୍ଗତେ ରହେ (ଖ); ୨୯—୨ ରାଧା ଠାକୁରାଣୀ ସେବାରେ ଥାଏ (ଖ); ୩୦—ସର୍ବ୍ୟା ଗୋପୀଛନ୍ତି ଅଗ୍ନି ଯେ କୋଣ । ମଧୁମତୀ ସଖୀ ତାଙ୍କ ସଙ୍ଗେଣ (ଖ); ୩୧—୧ ଗୋପୀ ଯେ ସଙ୍ଗତେ ଥାନ୍ତି (ଖ);
୩୧—୨ ରାଧାଙ୍କ ଚରଣେ ସେବା କରନ୍ତି (ଖ);

ପଶ୍ଚିମ ଯୁଗଳ ରାଧିକା କୃଷ୍ଣ ।
ଚନ୍ଦ୍ରାବଳୀ ସେବା କରଣ ଧ୍ୟାନ । ୩୨ ।
ଷଠ ନନ୍ଦଗୋପୀ ସଙ୍ଗତେ ରହେ ।
ଚନ୍ଦ୍ରମଣିଷ୍ଟଳ ସେବା ସେ ହୋଏ । ୩୩ ।
ମୁକୁଟସେବା ଯେ ଶ୍ୟାମଳା କରେ ।
ବୀଣା ବଜାନ୍ତି ଶ୍ରୀମତୀ ହସ୍ତରେ । ୩୪ ।
ହରିପ୍ରିୟା ସଖୀ ରବା ବଜାଇ ।
ଛଣାଖା ପୂର୍ବେ ଯେ ଛତ୍ର ଧରାଇ । ୩୫ ।
ସେବ୍ୟା ସଖୀ ପୁଣ ମୃଦଙ୍ଗ ବାଏ ।
ପଦ୍ମା ଅଳଙ୍କାର ଭଦ୍ରା ଯୋଗାଏ । ୩୬ ।
ରାଧାଙ୍କଠାବରୁ ସ୍ଫୁର ଯେ କଳା ।
କଳା ଶ୍ୟାମ ବୋଲି ଏକ ହୋଇଲା । ୩୭
କୁଙ୍କୁମ ଶୁକଳ ରଙ୍ଗ ଯେ କନ୍ଧ ।
ଏ ସ୍ଫୁର କଳାର ବୈଷ୍ଣବ ହୋଇ । ୩୮ ।
ପ୍ରେମରୂପା ଚନ୍ଦ୍ରାବଳୀ ଯେ ପୁଣ ।
ରତ୍ନରେଖା ହରପ୍ରିୟା ବୋଲିଣ । ୩୯ ।
ଏହାଙ୍କଠାବରୁ ଆବର ସ୍ଫୁର ।
ଆଠ ଅଷ୍ଟା ଯେ ଚଉଷଠି ନାରୀ । ୪୦ ।
ପୂର୍ବେ ଲଳିତା ବୃନ୍ଦାବତୀ ମିଳି ।
ମଧୁମତୀ ଚମ୍ପା ଲଳିତା କେଳି । ୪୧ ।
ଦମୂଣା ମଦନା ଶଶୀ ଯେ ରେଖା ।
ହିପୁରଦେବୀ ଯେ ସଙ୍ଗତେ ଦେଖା । ୪୨ ।
ତାମ୍ବୁଳ ସ୍ଫୁମର ସେବା କରନ୍ତି ।
ଷୋଳଲକ୍ଷ ନାରୀ ସଙ୍ଗତେ ଥାନ୍ତି । ୪୩ ।

---

୩୨—୨ କରଣ କଷ୍ଟ (କ);
୪୧—୧ ଚମ୍ପାଲଢକା ମଲ (ଖ);

ଯଶୋଦ୍ୟେ ସୁଭଦ୍ରା ଏ ରଙ୍ଗଦେବୀ ।
ଚନ୍ଦ୍ରଲା ତାର ତିଲୋତ୍ତମା ଆଦ । ୪୪ ।
ମାଲତୀ ସୁଶ୍ରୀ ସେ ଏ ଗୋପଗୋଷ୍ଠ ।
ବହୁଂଶୀ ଗନ୍ଧଚନ୍ଦନ ଦେଇ । ୪୫ ।
ସୁରଲକ୍ଷ ଗୋପୀ ଭଦ୍ରା ସଙ୍ଗରା
ଯଶୋଦ୍ୟା ପୂର୍ବରେ ଗୋପୀ ସୁମର । ୪୬ ।
ଧନ୍ୟା ଶ୍ରୀମତୀ ସେ ଉତ୍ତରେ ପୁଣ ।
ଶଶୀରେଖା ଦୂତୀ ଶ୍ୟାମ ସଙ୍କେତ । ୪୭ ।
ବସନ୍ତ ମୁକୁଳୀ ଏ ଗୋପନାରୀ ।
ବହୁଂଶୀମାନ ହସ୍ତରେ ଧରି । ୪୮ ।
ସେବା କରନ୍ତି ସେ ରାଧା ଚାମୁର ।
ଛଡ଼ଲକ୍ଷ ନାରୀ ତାଙ୍କ ସଙ୍ଗର । ୪୯ ।
ବାସୁଦେବ୍ୟ ଦ୍ୱାରରେ ସେବ୍ୟା ସେ ରହୁ ।
କୁମାରୀ କାମଶ୍ରେଣୀ ସଖି ଦୁଇ । ୫୦ ।
ମେନକା ବିଦ୍ୟାଧରୀ ରମ୍ଭା ପୁଣ ।
ସୁଶୀଳା ସଖୀ ଶାକାମ୍ଭେରୀ ଜାଣ । ୫୧ ।
ତାମ୍ବୂଳ ପୁଷ୍ପ ସେ ସେବା କରନ୍ତି ।
ଦୁଲକ୍ଷ ନାରୀ ସଙ୍ଗତେ ଯାନ୍ତି । ୫୨ ।
ଦକ୍ଷିଣେ ପଦ୍ମା ସେ ଅଛନ୍ତି ରହୁ ।
ତିଲୋତ୍ତମା ବିଦ୍ୟାଧରୀ ସେ ଦୁଇ । ୫୩ ।
ଅନ୍ନପୂର୍ଣ୍ଣା ଶାକାମ୍ଭେରୀ ସେ ପୁଣ ।
ଚପଳା ମଦନା ଗୋପୀ ସେ ଗଣ । ୫୪ ।
ଚାମରସେବା ସେ କରନ୍ତି ରହୁ ।
ଦଶଲକ୍ଷ ନାରୀ ସଙ୍ଗତେ ଥାଇ । ୫୫ ।

---

୪୬—୧ ବସନ୍ତା ସୁମିଳ (ଗ);
୪୯—୨ ଛଡ଼ ଛଡ଼ (ଖ);

ଶ୍ରୀମତୀ ଗୋପୀ ଯେ ଅଗ୍ନି କୋଣରେ ।
ମାଳତୀ ରତ୍ନରେଖା ଯେ ସାଙ୍ଗରେ । ୫୬ ।
କୁଙ୍କୁମ ସୁଗନ୍ଧକା ନାମ୍ନୀ ପୁଣ ।
ଚନ୍ଦ୍ରାବତୀ ଦସ୍କୁଣା ଯେ ମିଶ୍ରିଣ । ୫୭ ।
ପରମଲକ୍ଷ୍ମୀ ପରମାନନ୍ଦ ଯେ ।
ଯୋଗେଶ୍ୱର ନାମ୍ନୀ ଯେଜନ ବନେ । ୫୮ ।
ଛତ୍ରଲକ୍ଷ ନାମ୍ନୀ ସଙ୍ଗତେ ପୁଣି ।
ଗାନ୍ଧାରବଗରେ ଗୀତ ଗାଇଣ । ୫୯ ।
ଶଙ୍ଖ କରତାଳ ମୃଦଙ୍ଗ ତାଳ ।
ଗୁର୍ଜ୍ଜରୀରାଗରେ ଜୟ ମଙ୍ଗଳ । ୬୦ ।
ଏ ବେଶ ସେବା ଯେ ରାଧାଙ୍କ ସଙ୍ଗେ ।
ନୃତ୍ୟ କରନ୍ତି ଯେ ବିବିଧ ରଙ୍ଗେ । ୬୧ ।
ଗୋପୀମାନଙ୍କର ସୁନ୍ଦର ବେଶ ।
ରାଧାଠାକୁରାଣୀ ଦେଖି ହରଷ । ୬୨ ।
ଅହଲ୍ୟା ଗୋପୀ ଯେ ନଇର୍ଋତରେ ।
ତାରା ମନ୍ଦୋଦରୀ ଛନ୍ତି ପାର୍ଶ୍ୱରେ । ୬୩ ।
ଗଙ୍ଗରୀ ଦ୍ରୌପଦୀ ରେବତୀ ପୁଣ ।
କାନ୍ତିମାଳା ସୁକୁମାରୀ ସଙ୍ଗେଣ । ୬୪ ।
ତାମ୍ବୂଳ ସେବା ଯେ କରନ୍ତି ରନ୍ଧ୍ର ।
ରାଧା ଠାକୁରାଣୀ ମୁଖକୁ ଧାଇଁ । ୬୫ ।
ପଶ୍ଚିମେ ଜଣାଗ ଅଛନ୍ତି ପୁଣ ।
କମଳା ତୁଳସୀ ସଙ୍ଗତେ ଜାଣ । ୬୬ ।
ଜମ୍ବୁବତୀ ସତ୍ୟଭାମା ରୁକ୍ମିଣୀ ।
ଲକ୍ଷ୍ମୀ ଶ୍ରୀଆ ସଙ୍ଗେ ସାରଦା ପୁଣି । ୬୭ ।

---

୬୧—୧ ଗାସ୍ପେଣ ବେଶ (ଖ);

ଶ୍ୟମଳା ମିଶିଣ ଏ ଗୋପୀଗଣ ।
ପାଞ୍ଚଲକ୍ଷ ନାଗ୍ରୀ ତାଙ୍କ ସଙ୍ଗେଣ । ୬୮ ।
ଚାମର ସେବା ଯେ ରାଧା ଶ୍ରୀମୁରେ ।
ଚଉଷଠି ଗୋପୀ ଅଷ୍ଟ ଦଗରେ । ୬୯ ।
ଅଠାବନଲକ୍ଷ ଅନନ୍ତ ନାଗ୍ରୀ ।
ରାଜି ଦବା ରାଧାସେବା ଯେ କର । ୭୦ ।
ସଙ୍କୁଚିତ କେଶ ସମ୍ମୁଖେ ପୁଣ ।
ନବୀନ ନାଗରୀ କେଶ ସାଜିଣ । ୭୧ ।
ଉଦ୍ଧପରେ କେହୁ ଶିଖଣ୍ଡ ଦେଇ ।
କସ୍ତୁରୀ ଚିତା ଲଲିତା ଯୋଗାଇ । ୭୨ ।
ଗଣ୍ଡସ୍ଥ କପୋଲେ ଶୋଭା ଦିଶିଲା ।
ଶିଖଣ୍ଡି ଶୋହେ ତ ଶ୍ୟାମ ବୋଇଲା । ୭୩ ।
ଚନ୍ଦ୍ରାବଳୀ ବୋଲେ ଚୂଡ଼ା ସୁନ୍ଦର ।
ଗୋପୀ ସେବା କରେ ରାଧା ଅଙ୍ଗର । ୭୪ ।
ଯାଇ ମାଳତୀ କେତକୀ ଗୋ ପୁଣ ।
ଶୁଭ୍ରକେଶୀ ସେବା କରନ୍ତି ଜାଣ । ୭୫ ।
ଅଷ୍ଟରତ୍ନ ମଣି ମୁକ୍ତାମାନ ।
ସୀମନ୍ତନୀ ଗୋପୀ ଦିଏ ଖଞ୍ଜିଣ । ୭୬ ।
କୁସୁମ କବରୀ ଉପରେ ପୁଣ ।
କେ ଗୋପୀ ଓଢ଼ଣୀ ଯୋଗାଏ ପୁଣ । ୭୭ ।
ଅଷ୍ଟରତ୍ନ କାପ ଶ୍ରବଣେ ଦେଇ ।
କେଉଁ ଗୋପୀ ନେଇ କେଶ ଯୋଗାଇ । ୭୮ ।
ଫୁଲ ମଲ୍ଲୀକଢ଼ି କେ ଗୋପୀ ଦେଇ ।
କେ ବୋଲେ ଗୁରୁ ଶୂଦ୍ରକୁ ନିନ୍ଦଇ । ୭୯ ।

---

୭୨—୨ ଚିତା ଲଢକା (କ);

ଲଲାଟେ ସିନ୍ଦୂର କେ ଗୋପୀ ଦେଇ ।
ଗନ୍ଧ ଚନ୍ଦନ କେ ଗୋପୀ ଯୋଗାଇ । ୮୦ ।
କେ ଗୋପୀ ବଳଇ ନାସେ ବସଣୀ ।
ହୁଇଅଛ୍ର କ ଯେ ଏ ବନମଣି । ୮୧ ।
ମଦନ ଧନୁକୁ ଗଞ୍ଜେ ଭ୍ରୂଲତା ।
କେ ବୋଲେ କମଳୁ ନୟନ ଜାତା । ୮୨ ।
ନୟନେ କଜ୍ଜ୍ୱଳ କେ ଗୋପୀ ଦେଇ ।
ତମିଶକ ପୁଣ ଏନ୍ଥୁ ଜଡଇ । ୮୩ ।
ତିଳ ଫୁଲକୁ ଗୋ ନାସିକା ଗଞ୍ଜେ ।
ମୁକୁତାକୁ ଶ୍ରେଷ୍ଠ ଦନ୍ତ ବସନ୍ତେ । ୮୪ ।
କେ ବୋଲେ ବଧୂଳୀ ଜନ୍ମେ ଅଧର ।
କଣ୍ଠେ ସୁନା ସୁତା କେ ଦଏ ହାର । ୮୫ ।
ଅଷ୍ଟରତ୍ନ ମିଶି କଣ୍ଠ ବସନ୍ତେ ।
ହୃଦରେ ପଦକ ସୁନ୍ଦର ସାଜେ । ୮୬ ।
କରେ ରତ୍ନଚୁଡ଼ୀ କଟକି ପୁଣ ।
ବାହୁଟି ବନ୍ଦମାଳ ଯେ ଭୂଷଣ । ୮୭ ।
ତାଡ଼ ଯେ ମୁଦ୍ରିକା ଅଙ୍ଗୁଷ୍ଠି ସାଜେ ।
ବଟକ ବସନ ହୃଦେ ବସନ୍ତେ । ୮୮ ।
ସୁଘଞ୍ଚ କୁଚରେ କାଞ୍ଚଲ ଦେଇ ।
ଗୋପୀମାନେ ସେବା କରନ୍ତି ତହିଁ । ୮୯ ।
ଜ୍ୱଳନ୍ତ କଦଳୀ ଜଘନ ଜିଣି ।
ପଦ୍ମରେ ନୂପୁର ବାଜେ ବାଜେଣି । ୯୦ ।
ସୁରଧନୁ ଜନ୍ମେ ପାଦ ଅଳତା ।
ଅଙ୍ଗୁଷ୍ଠିରେ ଅଷ୍ଟରତନ ଜାତା । ୯୧ ।

---

୮୮—୧ ମୃଚୂକ କୁଚରେ (କ);

କରଣେ ଅଛନ୍ତି ଅମୃତ ଘେନ ।
ତିନ ଭୁବନରେ ଅଟେ ଜନମା । ୯୨ ।
ଗୋପୀଗଣମାନେ ସେବ ଅଛନ୍ତି ।
ସର୍ବ ଗୋପୀସାର ଲଳିତା ହୋନ୍ତି । ୯୩ ।
ଲଳିତା ନିପୁଣ ଭଜନ କର ।
ନିରଞ୍ଜନକୁଣ୍ଡେ ସ୍ନାହାନ କର । ୯୪ ।
ନିରଞ୍ଜନ କୁଣ୍ଡେ ସ୍ନାହାନ କଲେ ।
ଗୋପୀ ଅଙ୍ଗ ତେବେ ଧରିବ ଭଲେ । ୯୫ ।
ରାଧିକା ରୂପକୁ ପାଇ ଦର୍ଶନ ।
ହେବୁ ମନେ ସାଧୁଜନେ ଦେ ଘେନ । ୯୬ ।
ରାଧା ଶାଧା ମିଳି ପ୍ରଥମ କାଳେ ।
ଚମ୍ପକ ଫୁଲ ସେ ହୃଦକମଳେ । ୯୭ ।
ବେଶ କରନ୍ତି ସେ ରାଧାଙ୍କୁ ପୁଣ ।
ପ୍ରଥମ ପ୍ରହରେ ସେ ଗୋପୀଗଣ । ୯୮ ।
ଚନ୍ଦ୍ରରେଖା ଗୋପୀ ଦୁଇପ୍ରହରେ ।
ନାଗେଶ୍ୱର ପୁଷ୍ପ ଘେନିଣ କରେ । ୯୯ ।
ରାଧାଠାକୁରାଣୀ ସେବାରେ ରହି ।
ସର୍ବ ଗୋପୀ ତାଙ୍କ ସଙ୍ଗତେ ଥାଇ । ୧୦୦ ।
ତୃତୀୟପ୍ରହରେ ଚନ୍ଦ୍ରାବଳୀ ସେ ।
ମାଧବୀ ବେଶରେ ରାଧାଙ୍କୁ ପୂଜେ । ୧୦୧ ।
ତାଙ୍କ ସଖୀଗଣ ସଙ୍ଗତେ ଘେନ ।
ରାଧିକାସେବାରେ ହୋଇ ଦଇନ । ୧୦୨ ।
ଚତୁର୍ଥ ପ୍ରହରେ ମଦନା ଗୋଇ ।
କଦମ୍ବପୁଷ୍ପ ସେ ଅଙ୍ଗେ ଯୋଗାଇ । ୧୦୩ ।

---

୯୪—୨ ରାଧାକୁଣ୍ଡେ ଯାଇ (ଖ);

ରାଧାଠାକୁରାଣୀ କରନ୍ତି ବେଶ ।
କେ କହୁ ପାରିବ ଗୋପୀଙ୍କ ରସ । ୧୦୪ ।
ଚତୁର୍ଥ ପ୍ରହରେ ସେ ମଧୁମତୀ ।
ପଞ୍ଚବର୍ଣ୍ଣ ପୁଷ୍ପମାଳା ଯେ ଘେନି । ୧୦୫ ।
ସେବା କରନ୍ତି ସେ ରାଧାଙ୍କୁ ପୁଣ ।
ପଞ୍ଚମ ପ୍ରହରେ ସୁବେଶ ଜାଣ । ୧୦୬ ।
ଷଷ୍ଠମ ପ୍ରହରେ ଶ୍ରୀମତୀ ପୁଣ ।
ସେବା କରନ୍ତି ସେ ଘେନିଣ ଗନ୍ଧ । ୧୦୭ ।
ଲବଙ୍ଗ ପୁଷ୍ପରେ ବିନୋଦ ବେଶ ।
ମଧୁମତୀ ଆନ୍ତି ତାଙ୍କର ପାଶ । ୧୦୮ ।
ଶଶୀରେଖା ଗୋପୀ ସପ୍ତ ପ୍ରହରେ ।
କୁନ୍ଦପୁଷ୍ପ ଘେନି ସେବା ସେ କରେ । ୧୦୯ ।
ହରିପ୍ରିୟା ଗୋପୀ ଅଷ୍ଟ ପ୍ରହରେ ।
ବିବିଧ ବର୍ଣ୍ଣ ଯେ ପୁଷ୍ପ ଅପାରେ । ୧୧୦ ।
ରାଧା ଠାକୁରାଣୀ କରନ୍ତି ବେଶ ।
ଅନନ୍ତ ଗୋପୀ ଯେ ରାଧାଙ୍କ ଦାସ । ୧୧୧ ।
ଅଷ୍ଟଦଳରେ ଯେ କେଶର ପରେ ।
ରାଧାକୃଷ୍ଣ ବସେ କଣ ତହିଁରେ । ୧୧୨ ।
ସମ୍ମୁଖେ ଚନ୍ଦ୍ରାବଳୀ ଯେ ଅଛନ୍ତି ।
ଅଛନ୍ତି ରାଧିକା ବାମ ଯେ କଡ଼ । ୧୧୩ ।
ଭଜେ ଭଜନ୍ତି ଶ୍ରୀକୃଷ୍ଣ ପୁଣ ।
ନବଲକ୍ଷ ଗୋପୀ ସେବା କରଣ । ୧୧୪ ।
ସମ୍ମୁଖେ ଅଷ୍ଟରତ୍ନରେ ନିର୍ମାଣ ।
ମାଳତୀ ଲତା ଯେ କୁଟୀ ପାଶେଣ । ୧୧୫ ।
ତାମ୍ବୁଳ ସେବା ଯେ କରନ୍ତି ଗୋପୀ ।
ସୁବର୍ଣ୍ଣ ବର୍ଣ୍ଣେ ପୀତ ବସ୍ତ୍ର ଶୋଭ । ୧୧୬ ।

ବାୟୁବ୍ୟଦଗରେ ଶ୍ୟାମ ଯେ ରହୁ ।
ଅର୍ଦ୍ଧଅଙ୍ଗ ତାଙ୍କ ଶ୍ୟାମ ଦିଶଇ । ୧୧୭ ।
ଅର୍ଦ୍ଧଅଙ୍ଗ ତାଙ୍କ ଗଉର ପୁଣ ।
ସୁବର୍ଣ୍ଣଲତା ଯେ ଗୃହ ପାଶେଣ । ୧୧୮ ।
ନୀଳ ବସନ ଯେ ଅଙ୍ଗକୁ ସାଜେ ।
ଏମନ୍ତ ଶ୍ୟାମଳା କିରଣ ବିଜେ । ୧୧୯ ।
ଶ୍ରୀମତୀ ଗୋପୀ ଯେ ହୃଦରେ ରହୁ ।
ପଦ୍ମପ୍ରାନ୍ତେ ତାଙ୍କ ଅଙ୍ଗ ଦିଶଇ । ୧୨୦ ।
ଶୁକ୍ଳ ବସନ ପିନ୍ଧଣ ପୁଣ ।
ମଲ୍ଲିକାଲତା ଯେ ଗୃହ ପାଶେଣ । ୧୨୧ ।
ଶ୍ରୀମତୀ ଭ୍ରମର ସେବା ଯେ କରେ ।
ଶ୍ୟାମଳା ଗନ୍ଧଚନ୍ଦନ ଯେ ଧରେ । ୧୨୨ ।
ହରପ୍ରିୟା ଯେ ଐଶାନ୍ୟଦଗରେ ।
ସୁବର୍ଣ୍ଣରୁ ଅଙ୍ଗ ଉଜ୍ଜଳ ତାରେ । ୧୨୩ ।
କାଞ୍ଚନଲତା ଯେ ଗୃହ ପାଶରେ ।
ନୀଳବସନ ଯେ ପିନ୍ଧି ଅଙ୍ଗରେ । ୧୨୪ ।
ରତ୍ନ ପତ୍ରରଣ ସେବା ଯେ କରେ ।
ସେବା କରନ୍ତି ଯେ ଏ ନିରନ୍ତରେ । ୧୨୫ ।
ବିଶାଖା ନାୟିକା ପୂର୍ବରେ ରହୁ ।
ପୀତବର୍ଣ୍ଣ ତାଙ୍କ ଅଙ୍ଗ ଦିଶଇ । ୧୨୬ ।
ନୀଳବସନ ଯେ ଅଙ୍ଗ ସୁନ୍ଦର ।
ଲବଙ୍ଗଲତାରେ ତାଙ୍କର ଘର । ୧୨୭ ।
ରତ୍ନମାଳା ଅଲଙ୍କାର ଯେ ପୁଣ ।
ସେବା କରନ୍ତି ଯେ ରାଧା ଅଙ୍ଗେଣ । ୧୨୮ ।
ସେବ୍ୟା ନାୟିକା ଯେ ଅଗ୍ନିକୋଣର ।
ଆରକ୍ତ ବର୍ଣ୍ଣ ଯେ ଅଙ୍ଗ ସୁନ୍ଦର । ୧୨୯ ।

ଶୁକଳ ବସନ ପିନ୍ଧଣ ଗୋରୀ ।
ମାଧବୀଲତା ସେ ବୃକ୍ଷ ପାଶେଇ । ୧୩୦ ।
ନାନା ବର୍ଦ୍ଧମାନ ସେବା ତାଙ୍କର ।
ମାଧବୀଲତାରେ ଅଟଇ ଘର । ୧୩୧ ।
ପଦ୍ମା ନାମେ ଗୋପୀ ଦକ୍ଷିଣେ ରହେ ।
ପୀତବର୍ଣ୍ଣ ତାଙ୍କ ଅଙ୍ଗେ ସେ ଶୋହେ ।୧୩୨ ।
ପଦ୍ମଲତା ପୁଷ୍ପ ବେଢ଼ ତରୁବର ।
ଖୋଲ୍ଲ ବସନ ସେ ଅଙ୍ଗେ ସୁନ୍ଦର । ୧୩୩ ।
ଭୋଜନ ଷଡ଼ରସ ସେ କରନ୍ତି ।
ଏମନ୍ତେଣ ପଦ୍ମା ଦକ୍ଷିଣେ ଥାନ୍ତି । ୧୩୪ ।
ଭଦ୍ରା ନାୟିକା ରହି ସେ ନୈଋତ ।
ଶ୍ୟାମ ଅଟଇ ସେ ତାଙ୍କ ବର୍ଣ୍ଣିତ । ୧୩୫ ।
ମାଧବୀଲତାରେ ଅଛନ୍ତି ରହି ।
ବସନ ଧୂଳର ପ୍ରାପ୍ତେ ଦଣ୍ଡେଇ । ୧୩୬ ।
ଔଷଧ ବସ୍ତ୍ର ସେ ସେବା ତାଙ୍କର ।
ନଇଋତରେ ସେ ଭଦ୍ରା ସୁନ୍ଦର । ୧୩୭ ।
ଲଳିତା ଗୋରୀ ସେ ସେ ଚନ୍ଦ୍ରାବଳୀ ।
ପଶ୍ଚିମେ ଶ୍ରୀକୃଷ୍ଣ ସମ୍ମୁଖେ ଖେଳି । ୧୩୮ ।
ଦର୍ପଣ ସେବା ସେ ଲଳିତା କରେ ।
ଅଷ୍ଟ ନାୟିକା ସେ ଅଷ୍ଟ କୋଣରେ । ୧୩୯ ।
ଛତ୍ର ନାୟିକା ସେ ଅଛନ୍ତି ରହି ।
ବୃନ୍ଦାବତୀ ରଙ୍ଗଦେବୀ ସେ କହି । ୧୪୦ ।
ରାଧା କୃଷ୍ଣଙ୍କର ଜଗିଣ ଦ୍ୱାର ।
ସେବା କରେ ବୃନ୍ଦାବତୀ ଭ୍ରମର । ୧୪୧ ।

---

୧୩୩—୧ ପୁଷ୍ପ ତାଙ୍କ ଗୃହର (କ);

ରାଧାକୃଷ୍ଣ ଭକ୍ତ ଦେବେ ପାଇବ ।
ଶ୍ରୀଗୁରୁ ମୁଖରେ ଏହା ପୁଚ୍ଛିବ । ୧୪୨ ।
କୃଶଭ ଅଛନ୍ତି ଉତ୍ତରେ ପୁଣ ।
ଶ୍ରୀଶଭ ଅଛନ୍ତି ଦକ୍ଷିଣେ ଜାଣ । ୧୪୩ ।
ଷୋଳ ଦଳରେ ଯେ ଦୁଆଗ୍ର ହୋଇ ।
ତ୍ରିପୁର ପୂର୍ବରେ ଅଛନ୍ତି ରହି । ୧୪୪ ।
ତାରଣୀ ଦକ୍ଷିଣେ ଅଛନ୍ତି ଜାଣ ।
ଛମା ଯେ ପଶ୍ଚିମ ଦଗରେ ପୁଣ । ୧୪୫ ।
ଭଇରବୀ ଯେ ଉତ୍ତରେ ଅଛଇ ।
ଷୋଳ ଦଳରେ ଯେ ଦୁଆଗ୍ର ସେହି । ୧୪୬ ।
ଅନନ୍ତ ଗୋପୀରୁ ସାର ଯେ ପୁଣ ।
ନବଲକ୍ଷ ଗୋପୀଶ୍ରେଷ୍ଠ ଯେ ଗଣ । ୧୪୭ ।
ନବ ଲକ୍ଷ ସାର ଅଟନ୍ତି ଗୋଇ ।
ଷୋଳ ସହସ୍ର ଯେ ସାର ଅଟଇ । ୧୪୮ ।
ଷୋଳ ସସ୍ର ସାର ଏ ଚଉଷଠି ।
ଚଉଷଠିରୁ ଯେ ଅଠର ଗୋପୀ ୧୪୯ ।
ଅଠରରୁ ସାର ଅଟନ୍ତି ବାର ।
ବାରରୁ ସାର ଯେ ଆଠ ସୁମର । ୧୫୦ ।
ଆଠରୁ ସାର ଯେ ସ୍ବର ଅଟଇ ।
ସ୍ବରକଳାରୁ ଯୁଗ ଗୋପୀ ହୋଇ । ୧୫୧ ।
ଐଶାନ୍ୟ ଦଗରେ କୁଙ୍କୁମ କଳା ।
ଶ୍ୟାମକଳା ନଇର୍ତେ ରହିଲା । ୧୫୨ ।
ଆରକ୍ତ କଳା ଯେ ଅଗ୍ନିକୋଣରେ ।
ପଦ୍ମବର୍ଣ୍ଣ ପୁଣ ରହେ ଉତ୍ତରେ । ୧୫୩ ।

---

୧୫୩—୨ ପଦ୍ମଦଳ (ଖ);

ପୂର୍ବଦଳେ ପୀତକଳା ରହିଲ ।
ଗଉରକଳା ପଶ୍ଚିମେ ରହିଲ । ୧୫୪ ।
ଶ୍ୟାମକଳା ପୁଣ ବାୟବ୍ୟେ ରହି ।
ପୀତବର୍ଣ୍ଣ କଳା ଦକ୍ଷିଣେ ରହି । ୧୫୫ ।
ପୀତ କୁଙ୍କୁମ ଯେ ପୂର୍ବ ଈଶାନ୍ୟ ।
କୁଙ୍କୁମ ରହିଲ ଐଶାନ୍ୟକୋଣ । ୧୫୬ ।
ଏମନ୍ତ ହୋଇଣ ପୂର୍ବ ଅଷ୍ଟଦ ।
କୁଙ୍କୁମ କଳାଟି ଏ ଦଳେ ରହି । ୧୫୭ ।
ପୀତ ଆରକତ ଦକ୍ଷିଣେ ପୁଣ ।
ଆରକତ ରହେ ଦକ୍ଷିଣକୋଣ । ୧୫୮ ।
ପଦ୍ମ ଶୁକଳ ଯେ ଶ୍ୟାମ ଗଉର ।
ଉଜ୍ଜ କଳା ଯେ ଭକ୍ତର ସାଗର । ୧୫୯ ।
ଶ୍ୟାମ ଗଉର ଯେ ବାୟବ୍ୟେ ରହେ ।
ଏମନ୍ତେ ଶୁକଳ ଉତ୍ତରେ ଶୋହେ । ୧୬୦ ।
ପଶ୍ଚିମେ ନୈର୍ଋତେ ଗଉର ଶ୍ୟାମ ।
ନଇର୍ଋତେ ଶ୍ୟାମ କଳା ଉତ୍ତମ । ୧୬୧ ।
ଶ୍ୱେତ ରଙ୍ଗକଳା କୁଙ୍କୁମ କନ୍ଧ ।
ସୂର୍ଯ୍ୟକଳା ସ୍ୱଧା ଅଙ୍ଗରୁ ହୋଇ । ୧୬୨ ।
ପ୍ରେମରୂପା ଚନ୍ଦ୍ରାବଳୀ ଯେ ଦୁଇ ।
ରତ୍ନରେଖା ସ୍ୱଣପ୍ରସ୍ୱା ଯେ ଶୋହି । ୧୬୩ ।
ସ୍ୱଧାଙ୍କ ଅଙ୍ଗରୁ ବ୍ରଜ ନାୟିକା ।
ଏ ସ୍ୱଣକଳାରୁ ଅନନ୍ତ ଶାଖା । ୧୬୪ ।
ସ୍ୱଣପ୍ରିୟା ଛନ୍ତି ନଇର୍ଋତର ।
କୁଙ୍କୁମ କଳା ଯେ ତାଙ୍କ ଅଙ୍ଗର । ୧୬୫ ।
ରତ୍ନରେଖା ଅଗ୍ନିକୋଣରେ ରହି ।
ଆରକତ ବର୍ଣ୍ଣ ଅଙ୍ଗରେ ଶୋହି । ୧୬୬ ।

ନଇର୍ତ କୋଣେ ଭଦ୍ରା ଅଛଇ ।
ଚନ୍ଦ୍ରାବଳୀ କଳା ଯେବଣ ସେହୁ । ୧୬୭ ।
ଶ୍ୟାମବର୍ଣ୍ଣ ଭଦ୍ରା ଅଟଇ ପୁଣ ।
ବସନ୍ତ ହୋଇଛି ପଶ୍ଚିମ ସ୍ଥାନ । ୧୬୮ ।
ପ୍ରେମରୂପାଠାରୁ ଶ୍ରୀମତୀ ପୁଣ ।
ଶୁକଳ ପକ୍ଷ ଯେ କଳା ବୋଲିଣ । ୧୬୯ ।
ସୁଖକଳା ପୁଣ ବସନ୍ତ ହୋଇ ।
ପୂର୍ବ ପଶ୍ଚିମ ଯେ ଦକ୍ଷିଣେ କହି । ୧୭୦ ।
ଉତ୍ତର ପଶ୍ଚିମ ସ୍ଵର ଯେ ପୁଣ ।
ଓଁକାର ଅର୍ଦ୍ଧାଙ୍ଗ ବିନ୍ଦୁ ହେ ଜାଣ । ୧୭୧ ।
ଓଁକାର ପୂର୍ବ ଯେ ବିନ୍ଦୁ ପଶ୍ଚିମ ।
ଓଁକାର ଉପରେ ଦକ୍ଷିଣ ସ୍ଥାନ । ୧୭୨ ।
ଓଁକାର ବିନ୍ଦୁ ଯେ ଉତ୍ତର କହୁ ।
ଗୁରୁମୁଖେ ତତ୍ତ୍ଵ ଭେଦିବାରେ ପାଇ । ୧୭୩ ।
ମନ୍ତ୍ର ସୁମରିଣ କର ଦର୍ଶନ ।
ରାଧେକୃଷ୍ଣଶ୍ୟାମ କରଣ ନମ । ୧୭୪ ।
ଯୁଗଳ ମନ୍ତ୍ର ଯେ ଭଜନ କର ।
ଅଷ୍ଟ ସଖୀଙ୍କର ସେବା କରିବ । ୧୭୫ ।
ତ୍ରିଗୁଣ ଉପରେ ତ୍ରିକୋଣ ଥୋଇ ।
ଯୁଗଳ ବୀଜ ଯେ ମନ୍ତ୍ର ବସାଇ । ୧୭୬ ।
ରାଧାକୃଷ୍ଣ ମନ୍ତ୍ରେ କର ଦର୍ଶନ ।
ତେବେ ପାଇବ ଭଗବତର ସ୍ଥାନ । ୧୭୭ ।
ଶିଷ୍ୟଙ୍କୁ ଏ ଭେଦ ଗୁରୁ ନ କହୁ ।
ଅଯୋଗ୍ୟ ଗୁରୁଣୀ ଗୁରୁ ଅଟଇ । ୧୭୮ ।

---

୧୭୧—୨ ଊଁକାର (ଖ);
୧୭୬—୧ ଷଟ୍‌କୋଣ ଉ ପଥ (କ);

ଶିଷ୍ୟ ଦରସିଙ୍ଖା ଅଲୁଣି ଜାଣ ।
ଗୁରୁଶିଷ୍ୟ ଦୁହେଁ ଏମନ୍ତ ପୁଣ । ୧୭୯ ।
ସଙ୍ଗରେ ଯେସନ ପଡ଼ଇ ଗାଛ ।
ଏକଥା ବିବେକ ମୁଖରେ ପୁଚ୍ଛ । ୧୮୦ ।
ଦାତାର ପଦାର୍ଥ ନାଶକୁ ଯାଇ ।
ଗନ୍ଧୁଣୀ ଗୋଷ୍ଠାତ ଲଳେ ମରଇ । ୧୮୧ ।
ଦେଳଲୋକର ତ ମନ ବିରସ ।
ହରିର କଥା ଯେ ଅମୃତ ରସ । ୧୮୨ ।
ହଶରସର ଯେ ଭେଦ ନ ଜାଣି ।
ଶିଷ୍ୟକର୍ଣ୍ଣେ ଦୀକ୍ଷା କହନ୍ତି ପୁଣି । ୧୮୩ ।
କ୍ଷୁଧାର୍ତ୍ତି ହୋଇଣ ଶିଷ୍ୟ ପୁଚ୍ଛଇ ।
ଗୁରୁ ହଶରସ ଭୁଞ୍ଜାଏ ନାହିଁ । ୧୮୪ ।
ସେ ଶିଷ୍ୟର କ୍ଷୁଧା ନୁହଇ ନାଶ ।
ଗୁରୁଙ୍କୁ ଲଗଇ ଅଣା ଯେ ଦୋଷ । ୧୮୫ ।
ଯନ୍ତ୍ରମନ୍ତ୍ର ଏଣୁ ଗୁରୁ ସାଧିବ ।
ଶିଷ୍ୟକୁ ଯତନେ ଗୁପତେ ଦେବ । ୧୮୬ ।
ହରି ମହିମା ଅଯାଚକେ ଦେଲେ ।
ଶୂକର ହୁଅଇ ସେ ପ୍ରାଣୀ ମଲେ । ୧୮୭ ।
ମନ୍ତ୍ରଯନ୍ତ୍ର ଶିଷ୍ୟଠାରେ କହିବ ।
ଯାଚକେ କହିଲେ କୁଷ୍ଠ ଜନ୍ମିବ । ୧୮୮ ।
ତଷ୍କାଙ୍କ ପଙ୍କାଙ୍କ ଯେତୁ ନ କରେ ।
ଗୁରୁ ଅପରାଧ ସେତୁ ଆବୋରେ । ୧୮୯ ।
ଶୁଦ୍ଧମନ ଦାନ ଅଚ୍ୟୁତ ଗୁରୁ ।
ଶ୍ରୀଗୁରୁ କରୁଣା କଲେ ଚତୁର । ୧୯୦ ।

---

୧୭୯—୧ ଦରସିକ୍ଷୁଖା ସଣୀ (ଖ);

ଚରଣ ଦ୍ୱତରେ ଅଚ୍ୟୁତ ଦାସ ।
ଗୁରୁଭକ୍ତଗୀତା କଲେ ପ୍ରକାଶ । ୧୯୧ ।
ପାଷାଣ୍ଡ ଜନକୁ ଏହା ନ କହ ।
ପଣ୍ଡିତ ଚଉରେ ଏ ଶାସ୍ତ୍ର କହ । ୧୯୨ ।
ବାରବରଷ ଏ ପାଠ ଶୁଣିମ ।
ବୋଧ ଭେଦ ଗୁରୁ ବତାଇ ଦେବ । ୧୯୩ ।
ତେବେ ପାଇବ ଏ ଗ୍ରନ୍ଥର ସନ୍ଧି ।
ପଦବନ୍ଧରେ ଯେ ଅଛଇ ଛନ୍ଦ । ୧୯୪ ।
ପାମର ଅଚ୍ୟୁତ ନ ଧର ଦୋଷ ।
ସାଧୁଜନମାବେ ମୁଖରେ ଘୋଷ । ୧୯୫ ।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଚତ୍ୱାରିଂଶତ୍ ଗ୍ରନ୍ଥ ॥



## ଏକ ଚତ୍ୱାରଂଶତ୍ ଛାନ୍ଦ

ଦେବଙ୍କୁ ଦୁର୍ଲଭ ଚିନ୍ତାମଣି ଯେ ଅଛଇ ।
ଶଏ ଯୋଜନର ଦୀର୍ଘ ଷଟକୋଣ ହୋଇ ୧ ।
ପୁଣ ଶଏ ଯୋଜନ ଅଟଇ ପୁଣ ସ୍ଥିର ।
ଅଷ୍ଟକୋଣ ଏମନ୍ତ ଯେ ଚିନ୍ତାମଣି କର । ୨
ସହସ୍ର କେଶର ଚହୁଁ ପାଶର ଯେ ସ୍ଥଳ ।
ରାଧାସଙ୍ଗେ ବିହାର ଯେ ମଦନଗୋପାଳ । ୩ ।
ଶ୍ରୀକୃଷ୍ଣଙ୍କୁ ବେଶସେବା ଗୋପାଳ କରନ୍ତି ।
ସେଠାବର ନ ଚ ସ୍ତ୍ରି ଶ୍ରୀ ନ ଚ ପୁରୁଷ ହୋନ୍ତି । ୪ ।
ଯୁଗଳମନ୍ତ୍ର ଜପିଲେ ଭକ୍ତ ଅଙ୍ଗ ହୋଇ ।
ଶ୍ରୀକୃଷ୍ଣଙ୍କୁ ବେଶ ନେଇ ଗୋପାଳ ଯୋଗାଇ । ୫ ।
ବର୍ହପୁଚ୍ଛ ଯେ ଚୂଡ଼ାମନ୍ତ୍ର ପଢ଼ି ପୁଣ ।
ସୁଦାମ ଗୋପାଳ କୃଷ୍ଣ ଶିରରେ ଦେଇଣ । ୬ ।
ଗୁଞ୍ଜକୁଞ୍ଜ ମାଳ ପୁଣ ଦାମ ଯୋଗାଇଣ ।
ଅଷ୍ଟରତ୍ନ ଝଲକ ଯେ ଶ୍ରୀବସ୍ତ୍ର ଖଞ୍ଜିଣ । ୭ ।
ସୁବାହୁ ଗୋପାଳ ପୁଣ ଶ୍ରୀ ଖଣ୍ଡ ଦେଇ ।
ଗୋରଚନା ଚିତା ପୁଣ ସୁବଳ ଯୋଗାଇ । ୮ ।
ଅରୁଣ ତରୁଣ ମୃଦୁ କୋମଳ ଲୋଚନ ।
କେଉଁ ସଖା ଦିଅନ୍ତି ଯେ ନୟନେ ଅଞ୍ଜନ । ୯ ।
ହେମସୂତ୍ରେ ନାସାରେ କେ ଦିଅନ୍ତି ମୁକୁତା ।
ମଦନବାଣକୁ ଭ୍ରୂଭଙ୍ଗି ଅଟେ ଜିତା ୧୦ ।
ସର୍ବରଙ୍ଗ କୁଳକୁ ଯେ ନିନ୍ଦଇ ଅଧର ।
ଦନ୍ତମୋଡ଼ ଝଟକ ଯେ ଦିଶଇ ସୁନ୍ଦର । ୧୧ ।

ବୃନ୍ଦାବନଚନ୍ଦ୍ର ଅଷ୍ଟରତ୍ନ କୁଣ୍ଡଳ କର୍ଣ୍ଣରେ ।
ସେବା ଯେ କରନ୍ତି ପୁଣ ଶ୍ରୀକୃଷ୍ଣ ଅଙ୍ଗରେ । ୧୨ ।
କମ୍ବୁକଣ୍ଠେ ବ୍ୟାଘ୍ରନଖ ଅଷ୍ଟରତ୍ନେ ଶୋଭେ ।
କଉସ୍ତୁଭମଣି ହୃଦେ ଶୋଭାବନ ପାଏ । ୧୩ ।
ଭଟଟି ବାହୁଟି କରେ କଙ୍କଣ ଯେ ଦେଇ ।
ହୃଦରେ ପଦକ କେତୁ ଗୋପାଳ ଖଞ୍ଜାଇ । ୧୪ ।
ଅଷ୍ଟରତ୍ନ ମୁଦ୍ରିକା ଯେ ଅଙ୍ଗୁଷ୍ଠରେ ଦେଇ ।
ଗ୍ରୋକ କୃଷ୍ଣ ମୁରଲୀ ଯେ ହସ୍ତରେ ଯୋଗାଇ । ୧୫ ।
କଟୀରେ ଘଣ୍ଟି ଘଗୁଡ଼ି ଯେ ଗୋପାଳ ଦେଇ ।
ପୀତବସ୍ତ୍ର ନଟ କଚ୍ଛ ଯେ ପୁଣି ପାଳଇ । ୧୬ ।
ପାହୁଡ଼ ନୂପୁର ପୁଣ ସାତୁକ ଯେ ଦେଇ ।
ରତ୍ନକଠାଉ ଉଦ୍ଧବ ପଦ୍ମରେ ଯୋଗାଇ । ୧୭ ।
ଗନ୍ଧଚନ୍ଦନ ଗୋ ଅଙ୍ଗେ ପାଏ ଶୋଭାବନ ।
ଦକ୍ଷିଣ କରେ ମୁରଲୀ ଗୋପୀଙ୍କ ଭଜନ । ୧୮ ।
ଭକତବତ୍ସଳ ବାନା ବାମକରେ ଧରେ ।
ନିକଟମୋହନ ବନେ ରତ୍ନବେଦୀ ପରେ । ୧୯ ।
ଦକ୍ଷିଣକନ୍ଧରେ ଶୋଭେ ପଇତା ସୁନ୍ଦର ।
କେଶାକଣ୍ଠ ନୀଳମେଘ କନ୍ଦର୍ପ ମନ୍ଦର । ୨୦ ।
ଖଞ୍ଜନ ନୟନ ଦିଶେ କୁଞ୍ଜର ଆନନ ।
ଶ୍ରୀଅଙ୍ଗ ନନ୍ଦଇ ଦିଶେ ଦଳିତ ଅଞ୍ଜନ । ୨୧ ।
ନୀଳ ଉତ୍ପଳ ଦିଶେ କାଳିନ୍ଦୀର ଜଳ ।
ରତ୍ନବେଦୀକାରେ ରୂପ ଦିଶଇ ଉଜ୍ଜ୍ୱଳ । ୨୨ ।
ଗ୍ରୋକକୃଷ୍ଣ ପ୍ରଥମ ଯେ ପ୍ରହରରେ ପୁଣ ।
ଚମ୍ପା ପୁଷ୍ପ ଅଙ୍ଗରେ ଯେ ସେବା ଯୋଗାଇଣ । ୨୩ ।
ବୃନ୍ଦାବନ ଗୋପାଳ ଯେ ଦ୍ୱିତୀୟ ପ୍ରହରେ ।
ନାଗେଶ୍ୱର ପୁଷ୍ପ ବେଶ କରନ୍ତି ଅଙ୍ଗରେ । ୨୪ ।

ଖାରବାହୁ ଗୋପାଳ ଯେ ତୃତୀୟ ପ୍ରହରେ ।
ମାଧବୀପୁଷ୍ପ ଯେ ସେବା କରନ୍ତ ଅଙ୍ଗରେ । ୨୫ ।
ସଞ୍ଜୟ ଗୋପାଳ ପୁଣ ଚତୁର୍ଥ ପ୍ରହରେ ।
କଦମ୍ବ ଯେ ପୁଷ୍ପ ସେବା କରନ୍ତ କୃଷ୍ଣରେ । ୨୬ ।
ସାରୁକ ଅର୍ଜୁନ ପୁଣି ପଞ୍ଚମ ପ୍ରହରେ ।
ବୈଜୟନ୍ତୀ ପୁଷ୍ପ ସେବା କରନ୍ତ ଅଙ୍ଗରେ । ୨୭ ।
ସୁବାହୁ ଗୋପାଳ ପୁଣ ଷଷ୍ଠ ପ୍ରହରରେ ।
ଲବଙ୍ଗପୁଷ୍ପରେ ବେଶ କରନ୍ତ ସୁନ୍ଦରେ । ୨୮ ।
ସପ୍ତମପ୍ରହରେ ଶୁଣ ବିନୋଦ ଗୋପାଳ ।
କୁନ୍ଦପୁଷ୍ପେ ସେବା ଯେ କରଣ ସେ କୁଶଳ । ୨୯ ।
ସୁଦାମ ଦାମ ଗୋପାଳ ଅଷ୍ଟମପ୍ରହରେ ।
ବନମାଳପୁଷ୍ପ ସେବା କରନ୍ତ ଅଙ୍ଗରେ । ୩୦ ।
କୃଷ୍ଣମନ୍ତ୍ର ସ୍ମରଣ ଦର୍ଶନ କରିବ ।
କଳଭି କୃଷ୍ଣାୟ ନମ ମନ୍ତ୍ରରେ ଧରିବ । ୩୧ ।
ଅଷ୍ଟକୋଣ ବସାଇଲେ ମନ୍ତ୍ର ସର ହୋଏ ।
କଳଭି ଶ୍ରୀକୃଷ୍ଣ ଯେ ମନ୍ତ୍ର ଭେଦ କହେ । ୩୨ ।
କୃ ଅଟେ ସୁଦାମ ଯେ ଷ୍ଣା ଦାମ କହ ।
ୟ ଅଟେ ବଳଭଦ୍ର ନମ ସଖା ଦୁଇ । ୩୩ ।
ଲୋକପାଳ ଧର୍ମାନନ୍ଦ ଅଟନ୍ତ ଯେ ଦୁଇ ।
ନ ଲୋକପାଳ ମ ଧର୍ମାନନ୍ଦ କହ । ୩୪ ।
ଏଣୁକରି ରାମକୃଷ୍ଣ ଗୋପାଳ ସେବଣ ।
ରାମକୃଷ୍ଣ ବେଶ ଯେ କରନ୍ତ ଅନୁକ୍ଷଣ । ୩୫ ।
ରାଧାଦେବୀ ଶ୍ରୀକୃଷ୍ଣର ସେବାରେ ବସିଲେ ।
ଚିନ୍ତାମଣି ସ୍ଥଳେ ବିଜେ ମଦନଗୋପାଳ । ୩୬ ।

---

୩୨—୧ ଅଷ୍ଟକୋଣ (ଙ);

ଗୁରୁ ବୁଝାଇଲେ ତତ୍ତ୍ୱ ଭେଦ ପାରେ ଶିଷ୍ୟ ।
ତକାର ସଖା ଅଟନ୍ତି ବଳଦେବ କୃଷ୍ଣ । ୩୭ ।
ବନ୍ଧୁ କୃଷ୍ଣ ଅଟନ୍ତି ଶୁଣ ହେ ସୁଜନ ।
ଓଁକାରର ଆଦ୍ୟ ଅଟେ କୃଷ୍ଣ ସଖା ପୁଣ । ୩୮ ।
ସେବା ବେଶ ସନ୍ଧି ତତ୍ତ୍ୱ ମନ୍ତ୍ର ହେତୁ କର ।
ଗୁରୁ ବୁଝାଇଲେ ଶିଷ୍ୟ ନରକୁ ଉଦ୍ଧାର । ୩୯ ।
ଏ ଭେଦ ନ ଜାଣି ଗୁରୁ ଅଙ୍ଗ ସାଧ ଜଣ ।
ଅନ୍ଧେ ଅନ୍ଧ ସଙ୍ଗ ଯେସନ୍ତେ ପଥରେ ନ ଚର । ୪୦ ।
ଶୁଣ ହେ ମୁକୁନ୍ଦ ନନ୍ଦ ଅଚ୍ୟୁତ ବଚନ ।
ଭ୍ରଥ ବନ୍ଦ କୃଷ୍ଣଦାସ ମନେ ହେତୁ ଘେନ । ୪୧ ।
ଏହୁ ଗୁରୁଭକ୍ତଗୀତା ଗୁରୁଙ୍କର ଧନ ।
ଅଣାକ୍ଷର ମନ୍ତ୍ର ଅଟେ ଗୁରୁଙ୍କୁ ହେତୁ ଧ୍ୟାନ । ୪୨ ।

ଇତି ଶ୍ରୀ ଗୁରୁଭକ୍ତଗୀତା କଥନେ ନାମ ଏକଚତ୍ୱାରିଂଶତ୍ତ୍ ଛାନ୍ଦ ।

---

୩୯—୨ ନରଙ୍କ ଉପରେ ଗୁରୁ ଏ ଭେଦରେ ପାର (କ);

# ଦ୍ୱିଚତ୍ୱାରିଂଶତ୍ ଛାନ୍ଦ

ପ୍ରଥମ ପୂର୍ବ ଯେ ଦୁଆରେ ପୁଣ ।
ଗୋପକନ୍ୟାମାନେ ଦ୍ୱାର ଜଗିଣ । ୧
ଦ୍ୱିତୀୟ ଦୁଆରେ ଗୋପାଳ ପୁଣ ।
ଚିନ୍ତାମଣି ସ୍ଥଳ ରକ୍ଷା କରଣ । ୨ ।
ତୃତୀୟ ଦୁଆରେ ଗୋପାଳେ ରହୁ ।
ଚତୁର୍ଥ ଦୁଆରେ ସୁରଭି କନ୍ଧ । ୩ ।
ପାରିଜାତ ବୃକ୍ଷ ପଞ୍ଚମ ଦ୍ୱାରେ ।
ଷଷ୍ଠୁବନେ କଳ୍ପ ସେହୁ ମୂଳରେ । ୪ ।
ଅଷ୍ଟପାଟବଂଶୀ ବିଷ୍ଣୁ ସଙ୍ଗର ।
ଉଦ୍ଭବ ଗୋପାଳ ଗଣ୍ଡ ଚନ୍ଦ୍ରର । ୫ ।
ଅଷ୍ଟ ଆବରଣେ ବିଷ୍ଣୁ ବନ୍ଦଣ ।
ଲକ୍ଷ୍ମୀ ସରସ୍ୱତୀ ସଙ୍ଗତେ ପୁଣ । ୬ ।
ଅନନ୍ତ ଶଙ୍କର ଅଛନ୍ତି ଚନ୍ଦ୍ର ।
ଚିନ୍ତାମଣିସ୍ଥଳ ଏମନ୍ତ ହୋଇ । ୭ ।
ସପ୍ତ ଆଭରଣେ ବିଷ୍ଣୁ ଅଛନ୍ତି ।
ଶୁକଳବର୍ଣ୍ଣ ଚତୁର୍ଭୁଜ ହୋଇ । ୮ ।
ଉତ୍ତର ପ୍ରଥମ ଦୁଆରେ ପୁଣ ।
ଶ୍ରୁତିକନ୍ୟାମାନେ ଚନ୍ଦ୍ର ବନ୍ଦଣ । ୯ ।
ଦ୍ୱିତୀୟ ଦୁଆରେ ଗୋପବାଳକ ।
ସୁଦାମ ଗୋପାଳ ସଙ୍ଗ ବାଳକ ୧୦ ।
ତୃତୀୟ ଦୁଆରେ ରନ୍ଧଣ ଗୋପ ।
ଚତୁର୍ଥେ ଧେନୁ ଶାମଳସ୍ୱରୂପ । ୧୧ ।

ପଶ୍ଚିମ ଦୁଆର କୃଷ୍ଣଚନ୍ଦନ
ସୁବର୍ଣ୍ଣ ମନ୍ଦିରେ ସେହୁ ଶ୍ଲାଘନେଣ । ୧୨ ।
ବଳଦେବ ଙ୍କେ ରେବତୀ ଘେନି ।
ଷଷ୍ଠମ ଦୁଆରେ ଦେବଗଣଙ୍କ । ୧୩ ।
ସପ୍ତମ ଦୁଆରେ ବୃଷ୍ଟି ବନ୍ଧଣ ।
ଚଇତନ୍ୟ ବୃଷ୍ଟି ନାମ ଯେ ପୁଣ । ୧୪ ।
ପ୍ରଥମେ ଦକ୍ଷିଣ ଦୁଆରେ ପୁଣ ।
ଦେବକନ୍ୟାମାନେ ଦ୍ୱାର କଟିଣ । ୧୫ ।
କଙ୍କିଣୀ ଗୋପାଳ ଦ୍ୱିତୀୟ ଦ୍ୱାରେ ।
ଲବଙ୍ଗ ଗୋପାଳ ତୃତୀୟ ଦ୍ୱାରେ । ୧୬ ।
ଚତୁର୍ଥ ଦୁଆରେ କୃଷ୍ଣ ବୃଷ୍ଟି ଯେ ।
ଅବତାର ବୃଷ୍ଟି ସେଠାରେ ଥିଲେ । ୧୭ ।
ପଶ୍ଚିମଦ୍ୱାରେ ରାଧାକୃଷ୍ଣ ରଙ୍ଗ ।
ଏକାଦଶ ବନ ଚଉପାଶକୁ । ୧୮ ।
ମଧ୍ୟରେ ଅଛଇ ଏକଇ ବନ ।
ଉତ୍ତରେ ଯମୁନା ନଦୀର ସ୍ଥାନ । ୧୯ ।
ପଶ୍ଚିମେ ରାଧାକୃଷ୍ଣ ବଟେ ଜଗ ।
ପୂର୍ବ ପଶ୍ଚିମ ଯେ ଦାଗ ବସ୍ତୁକ । ୨୦ ।
ଉତ୍ତର ଦକ୍ଷିଣ ଅଛଇ ଦୂର ।
ରତ୍ନଦ୍ୱାରେ ସେବା କରଣ ଚନ୍ଦ୍ର । ୨୧ ।
ଅଗ୍ନି ବାୟବ୍ୟ ଯେ ନଇର୍ତ୍ତ ତରେ ।
ଐଶାନ୍ୟ ମିଶିଣ ଅଷ୍ଟ ଦାଟରେ । ୨୨ ।
ଅଠଅଷ୍ଟ ଚଉଷଠି ଦୁଆର ।
ଅଷ୍ଟଦ୍ୱାର ଜଗି ସେବା ବାଧ୍ୱର । ୨୩ ।
ବରଙ୍ଗନା ସ୍ୱପ୍ନଣି ନାମ ତହିଁ ।
ପୂର୍ବଦାଟରେ ଯେ ବୃଷ୍ଟି ଅଛଇ । ୨୪ ।

ଐଶାନ୍ୟ ଦଗେ କୃପବନ୍ଥୁ ପୁଣ ।
ଚନ୍ଦ୍ରାମଣିସ୍ଥଳ ଜଗି ରହିଣ । ୨୫ ।

ବସୁଦ୍ବବନ୍ଥୁ ଯେ ଉତ୍ତରେ ସ୍ଥାନ ।
ଉତ୍ତୁବେଦୀସ୍ଥାନେ ସେତା ଭଜନ । ୨୬ ।

ନୃସିଂହ ବନ୍ଥୁ ବାୟୁବ୍ୟଦଗରେ ।
ରହିଅଛନ୍ତି ଯେ ସେବା ସ୍ତବରେ । ୨୭ ।

ବାମନ ପଶ୍ଚିମ ଦୁଇ ପୁଣ ।
ନଇର୍ତ୍ତକୋଣଦଗେ ରହିଣ । ୨୮ ।

ଦକ୍ଷିଣଦଗେ ଶ୍ରୀରାମ ମୂରତ ।
ଉତ୍ତୁବେଦୀପରେ ଶୋଭା ଦଶନ୍ତ । ୨୯ ।

ଅଗ୍ନି କୋଣେ ବସେ ଜଗନ୍ନାଥ ।
ପଞ୍ଚମୂରତ ଯେ ଘେନ ସଙ୍ଗତ । ୩୦ ।

ଏମନ୍ତେ ଅଷ୍ଟବନ୍ଥୁ ଚଉପାଶେ ।
ବେଢ଼ି ରହିଛନ୍ତି ଶ୍ରୀକୃଷ୍ଣପାଶେ । ୩୧ ।

ରାଧାକୃଷ୍ଣ ବସେ ପଶ୍ଚିମ ଦଳ ।
ଏମନ୍ତ ହୋଇ ଚନ୍ଦ୍ରାମଣିସ୍ଥଳ । ୩୨ ।

ଅଷ୍ଟବନ୍ଥୁ ସେବା କଲେଣ ପୁଣ ।
ଅବତାର ବନ୍ଥୁ ସେବା କରଣ । ୩୩ ।

ତେବେ ସିନା ରାଧ କୃଷ୍ଣକୁ ପାଇ ।
ବନ୍ଥୁ ବାଞ୍ଛ ତେବେ ଗ୍ରହଣ ଦେଇ । ୩୪ ।

ଅଜପା ମନ୍ତ୍ର ଯେ ଜପ କରଣ ।
ଅବତାର ବନ୍ଥୁ ସନ୍ତୋଷ ପୁଣ । ୩୫ ।

ଅଜପା ମନ୍ତ୍ର ଯେ ଜପଇ ନାହିଁ ।
ରାଧାକୃଷ୍ଣ ସେହୁ ଦୃଶ୍ୟ ନ ପାଇ । ୩୬ ।

ପ୍ରଥମେ ସ୍ୱର ତଥିପରେ ସ୍ୱର୍ ।
ତଥି ପାର୍ଶ୍ୱେ ସ୍ୱର ସ୍ୱର ଧର । ୩୭ ।
ସ୍ୱର ଅଠରେ ଯେ ହେବ ବନ୍ଧନ ।
ବୀଜମନ୍ତ୍ର ଆଠ ଅକ୍ଷର ଘୋଷ । ୩୮ ।
ତତ୍ସବିତୁର୍ ବରେଣୀୟୋ ଯେ କହ ।
ଭର୍ଗୋଦେବସ୍ୟ ଧର୍ମହି ଅଟଇ । ୩୯ ।
ଧିୟୋୟୋନ ପ୍ରଚୋଦୟାତ୍ ସୁମର ।
ପର ରଜ ଶେଷ ବନ୍ଦ ଆଠର । ୪୦ ।
ପ୍ରଥମରେ ସୃଷ୍ଟି ବୀଜକୁ ଧର ।
ଯନ୍ତ୍ର ଗୋଟିଏ ଯେ ଲେଖି ଭୂମିର । ୪୧ ।
ସେ ଯନ୍ତ୍ରେ ଏକ ବସନେକ ହୋଇ ।
ତ୍ରିଶଙ୍କୁ ଗୁପତ ଠାବରେ କହୁ । ୪୨ ।
ତନ୍ତ୍ରେ ବସାଇବ ଅଠ ଅକ୍ଷର ।
ପରଂ ବସ୍ତୁରୂପ ଜାଣ ସୁମର । ୪୩ ।
ରଜ ବସ୍ତୁ ଚରସ୍ୟନ ସ୍ୱସ୍ୟଣ
ଏମନ୍ତେ ଅଜପା ମନ୍ତ୍ର ଜର୍ପଣ । ୪୪ ।
ଶେଷ ମସ୍ତକ ରୁଦ୍ରବସ୍ତୁ କହୁ ।
ବନ୍ଦ ସର୍ବଦେବ ଅନ୍ତର୍ଯ୍ୟାମି । ୪୫ ।
ଦକ୍ଷିଣ ଅଗ୍ନିରେ ପର ବସଇ ।
ପୂର୍ବ ଐଶାନ୍ୟ ଯେ ରଜକୁ କହୁ । ୪୬ ।
ବନ୍ଦ ବସଇ ବାୟବ୍ୟଦଗରେ ।
ଏମନ୍ତ ଅଜପା ଅସ୍ତ୍ର ହୋଇଲେ । ୪୭ ।

---

୩୭—୧ ତଥି ପାଶେଣ (ଖ);
୪୧—୧ ପ୍ରଥମେ ଅଠ ସ୍ୱର କରି ଧର (ଖ); ୪୫—୧ ମସ୍ତକ ବସ୍ତୁ ପୂର୍ଣ୍ଣ (ଜ)
୪୭—୧-୨ ବେଳାନ୍ତର ନଇର୍ତ୍ତର । ବନ୍ଦ ବସଇ ବାୟବ୍ୟଦଗର (ଗ)

ଏ ଭେଦ ଜାଣିଲେ ଗୁରୁ ବୋଲଇ ।
ଗୁରୁଅଙ୍ଗ ବୋଲି ସଂସାରେ କହି । ୪୮ ।
ଶିଷ୍ୟର କଷ୍ଟ ଯେ ହୋଏ କାରଣ ।
ମଲେଣ ଗନ୍ଧ ସେ ଲଭଇ ପୁଣ । ୪୯ ।
ବାସନା ରହଇ ବୀଜ ପାଚଣ ।
ବୃକ୍ଷ ଅଙ୍କୁରଇ ଇଚ୍ଛା ସୁଖେଣ । ୫୦ ।
କେଉଁ ଭୂଇଁ ପରିଏ ଝଡ଼ି ନ ପଡ଼େ ।
ଦଗଧ ମୃତ୍ତିକା ରହେ ପୃଥ୍ୱୀରେ । ୫୧ ।
ଏଣୁ କରି ହରିନାମ ଘୋଷିବ ।
ହରିଚରଣରେ ଶରଣ ଥିବ । ୫୨ ।
ଶ୍ରବଣେ ହରିକଥା ଶୁଣୁଥିବ ।
ବଦନରେ କରିକଥା ଗୁଣିବ । ୫୩ ।
ହସ୍ତରେ ହରିର ଚରଣ ପୁଣ ।
ତାଳ କର୍ତ୍ତାଳ ଖୋଳ ବୀଣା ଗୁଣ । ୫୪ ।
ଜମ୍ପ ଶାରଙ୍ଗୀ ଯେ ଅମୃତ ରସ ।
ଖଞ୍ଜିରି ସମତାଳରେ ଯେ ଘୋଷ । ୫୫ ।
ଭଜନ ତୁଳସୀ ମାଳ ଯେ ପୁଣ ।
ଲେଖନେ ଲେଖିବ ଶ୍ରୀକୃଷ୍ଣଗୁଣ । ୫୬ ।
ରେଖାପଲ୍ଲବରେ ତୁଳସୀ ମାଳ ।
ଭୁଆଗ୍ରନ୍ଥ ପଟ ଲକ୍ଷ ଉଲ୍ଲୋଳ । ୫୭ ।
ଛତ୍ରହର ଯେ ଛନ୍ଦଣ ଶ୍ରେଣି ।
ନବତାଳେ କୃଷ୍ଣକଥା ଯେ ଗୁଣି । ୫୮ ।
ଦନ୍ତ ତାଳବ୍ୟ ହରସ୍ୱ ଦୀର୍ଘରେ ।
ମୂର୍ଦ୍ଧଣ୍ୟ ପ୍ଳୁତାନୁସ୍ୱାର ବିସ୍ୱରେ । ୫୯ ।
ଏତେ ଗୁଣରେ ଯେ ଲେଖନକରେ ।
କୃଷ୍ଣର ଗୁଣ ଲେଖିବ ହସ୍ତରେ । ୬୦ ।

ଜ୍ୟୋତି ଅବାଙ୍ଗ ଯେ ଶୁଦ୍ଧା ସମାଧି ।
ଓଁକାର ପଞ୍ଚ ଜଳାନ୍ଧ୍ରକ ଭେଦ । ୬୧ ।
ଯେଉଁ ଜନର ଏତେ ପିନା ଗୁଣ ।
ସେ ଜନ ଚନ୍ଦ୍ରାମଣି ଦରଶନ । ୬୨ ।
ଦେହ ବନ୍ଧଣ ସେ ଗୁଣ ସ୍ୱଦନ୍ତ ।
ଦେହ ଅନ୍ତେ ପୁଣ ଗୋଲକ ପାନ୍ତ । ୬୩ ।
ବିଷ୍ଣୁ ଅନନ୍ତ ମୁକୁନ୍ଦ ଯାଦବ ।
ଶୁଣ ବିଷ୍ଣୁଦାସ ଭଗତଭାବ । ୬୪ ।
ଚଉଷଠି ବିଷ୍ଣୁ ମଧ୍ୟରେ ଲୀଳା ।
ଦୁଷ୍ଟ ନିବାରଣ ସନ୍ଥଙ୍କ ଭେଳା । ୬୫ ।
ଚଉଷଠିରୁ ଯେ ବଛଣ ଜାଣି ।
ବଛଣୁଁ ସାର ଦଶରୂପ ପୁଣି । ୬୬ ।
ଦଶରୁ ସାର ଯେ ଆଠ ଅଟଇ ।
ଆଠରୁ ସାର ପାଞ୍ଚରୂପ ହୋଇ । ୬୭ ।
ଶ୍ୱେତ ପୀତ ଲୋହିତାରକ୍ତ ପୁଣ ।
ନୀଳ ସ୍ୱରୂପ ପାଞ୍ଚରୂପ ଜାଣ । ୬୮ ।
ଶ୍ୱେତସ୍ୱରୂପ ନାରାୟଣ ନାମ ।
ପୀତସ୍ୱରୂପ ଗୁଣିମ ଶ୍ରୀରାମ । ୬୯ ।
ଲୋହିତ ସ୍ୱରୂପ ଗୋପେ କହ୍ନାଇ ।
ଅରକ୍ତରୂପ ଚୈତନ୍ୟ କହି । ୭୦ ।
ନୀଳ ସ୍ୱରୂପ ଯେ କଳଙ୍କିରୂପ ।
ନାଶନ୍ତି ଜଗତଜନର ତାପ । ୭୧ ।
ଅଉ ଯେତେ ରୂପ ନୀଳ ବିହାର ।
ନୀଳା ଜଟଣ ରହନ୍ତି ସ୍ତବର । ୭୨ ।

---

୬୨—୧ ନୟନର ଏତ ବୁଣର (କ, ଖ); ସେନ (କ), ପିନ (ଖ);

ବଳୀର ଛମନ୍ତେ ବାମନ ହୋଇ ।
ହିରଣ୍ୟ ଛଳେ ନୃସିଂହ ରୂପହିଁ । ୭୩ ।
ପୃଥ୍ୱୀର ଛଳେ ବରାହ ଯେ କୂର୍ମ ।
ବ୍ରହ୍ମା ବେଦଛଳେ ମୀନ ଜନମ । ୭୪ ।
ମୂଢ଼ଙ୍କ ଛଳେ ବଉଦ୍ଧ ମୂରତି ।
ବିପ୍ରଙ୍କ ଛଳେ ପର୍ଶୁରାମ ହୋଇନ୍ତି । ୭୫ ।
ପାତାଳ ଛଳେ ଅନନ୍ତ ସ୍ୱରୂପ ।
ଧନ୍ୱନ୍ତରି ସ୍ୱରୂପ ନରଙ୍କ ହିତ । ୭୬ ।
ଭରଥ ଶତ୍ରୁଘନ ଏ ଲକ୍ଷ୍ମଣ ।
ଷଷ୍ଠୀ ନସ୍ତାରଣେ ଏ ରୂପ ପୂର୍ଣ୍ଣ । ୭୭ ।
ସୁଭଦ୍ରା ସୁଦ୍ରି (ସୁଦର୍ଶନ) ଅସ୍ୱାକାଢରେ ।
ପୃଥ୍ୱୀ ଆପ ତେଜ ବାୟୁ ସଙ୍ଗରେ । ୭୮ ।
ଶୂନ୍ୟ ଆଦିତ୍ୟ ଚନ୍ଦ୍ର ତାରଗଣ ।
ମନ ବୁଦ୍ଧି ଅହଂକାର ଯେ ଗୁଣ । ୭୯ ।
ହୟଗ୍ରୀବ ବ୍ୟାସ ଶୁକ ଅଟଇ ।
ବିଷ୍ଣୁ ଅଂଶେ ଲୀଳା କରନ୍ତି ମହୀ । ୮୦ ।
ବିଷ୍ଣୁର ଲୀଳାରେ ଖେଳ ଏ ମହୀ ।
ମୂଢ଼ମାନେ ଏହା ଜାଣନ୍ତି ନାହିଁ । ୮୧ ।
ଧନ ଜନ ପତି ମାୟାରେ ମତ୍ତ ।
ଗୁରୁଚରଣରେ ନ ଦେଇ ଚିତ୍ତ । ୮୨ ।
ଗୁରୁଙ୍କୁ ଯେଣୁ ସେ ନ ପୂଜେ ପ୍ରାଣୀ ।
ତେଣୁ ବିଷ୍ଣୁମାୟା ନ ପାରେ ଜିଣି । ୮୩ ।
ଯେଣୁ ବିଷ୍ଣୁରୂପ ଗୁରୁ ଘୋଷନ୍ତି ।
ବିଷ୍ଣୁ ଗୁରୁ ତେଣୁ ଭିନ୍ନ ନୁହନ୍ତି । ୮୪ ।
ଗୁରୁ ଆଗେ ଶିଷ୍ୟ କହିଲେ ମିଛ ।
ଲାଗଇ ଗୋହତ୍ୟାଦୋଷ ପ୍ରତ୍ୟକ୍ଷ । ୮୫ ।

ଗୁରୁଠାରେ ଘଟ କପଟ କରି ।
ବ୍ରହ୍ମହତ୍ୟା ଦୋଷ ପାତକ କରି । ୮୬ ।
ଛନ୍ଦକରି ଗୁରୁଠାରେ କହିଲେ ।
ସୁରାପାନଦୋଷ ଲାଗଇ ଭଲେ । ୮୭ ।
ମାୟାକଥା ଯେବେ ଗୁରୁଙ୍କୁ କହି ।
ବନ୍ଧୁଙ୍କ ମାତୃହରଣ ସେ ହୋଇ । ୮୮ ।
ବସ୍ତ୍ର ପରାଏ ଗୁରୁଙ୍କୁ ମଣିବ ।
ଶିବ ପରାଏ ଗୁରୁଙ୍କୁ ପୂଜିବ । ୮୯ ।
ଗୁରୁଙ୍କୁ ବ୍ରହ୍ମାପ୍ରାୟେ ସ୍ତୁତି କରି ।
ଆଜ୍ଞାକୁ ହୋଇଥିବ ଅବଧାରି । ୯୦ ।
ଏତେ ଗୁଣ ଶିଷ୍ୟ ବୋଲି ଜାଣିବ ।
ଏମନ୍ତ ଶିଷ୍ୟ ଭକତ ଗଣିବ । ୯୧ ।
ଗୃହ ଦ୍ୱାରେ କହୁଥିବ କାହିଁ ।
ଶ୍ରୀକୃଷ୍ଣ ଗୁଣ ଯେ ଧ୍ୟାନରେ ଚନ୍ତ୍ର । ୯୨ ।
ଯନ୍ତ୍ର ତନ୍ତ୍ର ମନ୍ତ୍ର ଘୋଷୁଣ ଥିବ ।
ଗୁରୁର ଭକତ ତେବେ ହୋଇବ । ୯୩ ।
ଶ୍ରୀଗୁରୁଚରଣେ ଶରଣ ପଶି ।
ପାମର ଅଚ୍ୟୁତ ନ ଧର ଦୋଷ । ୯୪ ।
ଗୁରୁଭକ୍ତଗୀତା ଶିଷ୍ୟକାରଣେ ।
ପାମର ଅଚ୍ୟୁତ ଏ ଗୀତେ ଭଣେ । ୯୫ ।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଦ୍ୱିଚତ୍ୱାରିଂଶତ୍ତ୍ମ ଗ୍ରନ୍ଥ ।

—※—

## ଦ୍ୱିଚତ୍ୱାରିଂଶତ୍ ଛାନ୍ଦ

କହୁଅଛି କଥାଏ ଶ୍ରୀଗୁରୁଦେବ ।
କପଟରୂପ ଯେ ବହୁଦଇବ । ୧ ।
ମୂଢ଼ଙ୍କ ଜନମ ନକଲା ନୁହନ୍ତି ।
ପଢ଼ନ୍ତ ଦର୍ଶନେ ଭଗତ ପାନ୍ତି । ୨ ।
ଶୁଣ ହେ ସୂତର ସୂକ୍ତ ବଚନ ।
ମନ୍ତ୍ରମୂର୍ତ୍ତି କରି କର ଭଜନ । ୩ ।
କପଟ ରୂପକୁ କଲେ ଦର୍ଶନ ।
ମନ୍ତ୍ରମୂର୍ତ୍ତି ପୂଜା କରିବ ମନ । ୪ ।
ଓଁକାର ବୋଲଣ ଯେଉଁ ଅକ୍ଷର ।
ଛନ୍ଦ ବୋଲି କରି ମନେ ସୁମର । ୫ ।
ମ ଅକ୍ଷରଟି କଳାବଦନ ।
ସ୍ୱ ଅକ୍ଷରଟି ରଙ୍ଗାଧର ଧ୍ୟାନ । ୬ ।
ହ୍ଵ ଅକ୍ଷର ଡାହାଣ ଭୁଜରେ ।
ବାମ ଭୁଜରେ ରେ ଅକ୍ଷର ଧରେ । ୭ ।
ଡାହାଣ ନୟନ କୁରୁ ଟି କହୁ ।
କ୍ଷ କ୍ଷର ବାମ ନୟନ ହୋଇ । ୮ ।
ମ କ୍ଷର ବେନି ଶ୍ରବଣ ହୋଏ ।
ଜୀବଆତ୍ମା ସ୍ୱ ଅକ୍ଷର କହେ । ୯ ।
କୁରୁ ଅକ୍ଷର ଯେ ଦେହ ଅଟଇ ।
ଦେହମଧ୍ୟେ କ୍ଷୟ ଆତ୍ମା ବୋଲଇ । ୧୦ ।

---

୫—୧ ଓଁକାର (କ);
୧୦—୨ ଦେହ ମଧ୍ୟେ କୁରୁ (କ, ଖ);

ସିଂହାସନ ଅଟେ ସ୍ୱା ଅକ୍ଷର ।
ଏମନ୍ତ ହ୍ରୋଦ୍ଧଣ ମନ୍ତ୍ର ସୁନ୍ଦର । ୧୧ ।
କପଟ ରୂପକୁ ତେବେ ବର୍ଜନ ।
ସ୍ୱଚ୍ଛନ୍ଦ ଚନ୍ଦ୍ର ଯେ କରଣ ମନ । ୧୨ ।
ସ୍ୱର୍ଣ୍ଣ ଅବସରେ କର ଭଜନ ।
ଶ୍ରୀଗୁରୁ ମୁଖରୁ ପସୃଣ ଘେନ । ୧୩ ।
ସଖୀଅଙ୍କ ଚହ୍ନି କରିବା ଲାଗ୍ୟେ ।
ଅକ୍ଷର ଗୋଟିକେ ସଖୀଏ ହୋଏ । ୧୪ ।
ହ୍ର ଷର ବୃନ୍ଦାବତୀ ଅଟଇ ।
ରେ ଅକ୍ଷର ରଙ୍ଗଦେବୀ କହଇ । ୧୫ ।
ସୁଭଦ୍ରା ଅଟଇ ସ୍ୱା ଅକ୍ଷର ।
ମ ଷର ପ୍ରିୟମ୍ବଦା ସୁନ୍ଦର । ୧୬ ।
ରତ୍ନରେଖା କୃଷ୍ଣ ଷର ଅଟଇ ।
ଷ୍ଣ ଷର କତ୍ୟାଦେବୀଟି କହଇ । ୧୭ ।
ଏମନ୍ତେ ଛଅ ଯେ ସଖୀ ଗୁଣିଣ ।
ସ୍ୱରୂପଙ୍କ ଏ ଭେଦ ପସୃର ପୁଣ । ୧୮ ।
ରେ ଷର ବୋଲି ରେବତୀ ଗୁଣ ।
ସ୍ୱା ଅକ୍ଷରରୁ ଦୂତିକା ପୁଣ । ୧୯ ।
ମ ଅକ୍ଷରରୁ ସାବିତ୍ରୀ ଗୋଇ ।
ଚନ୍ଦ୍ରାବଳୀ କୃଷ୍ଣ ଷରେ କସଇ । ୨୦ ।
ରାଧା ସୁନ୍ଦରଣ କୃଷ୍ଣ ମନ୍ତ୍ରେଣ ।
ଏମନ୍ତ ହ୍ରୋଳଣ ଗୋପୀ ଗୁଣିଣ । ୨୧ ।
ଜିଇଁବାନରେ ସଖୀ କର ଭଜନ ।
ଶୀରର୍ଭି ବୃନ୍ଦାବତୀ ରାଧା ପୁଣ । ୨୨ ।
ସ୍ୱାରର୍ଭି ରେବତୀ ପ୍ରେମରୂପାହି ।
କାଳର୍ଭି ଚନ୍ଦ୍ରାବଳୀ ରାଧା କହଇ । ୨୩ ।

ହୃଦରେ ରାମ କୃଷ୍ଣ ଛନ୍ଦେ ଭଜିବ ।
ସ୍ମରଣ୍ଡି ଶୀରଣ୍ଡି କାଲଂ ବୁଝିବ । ୨୪ ।
ଏମନ୍ତ ସ୍ୱରୂପ ଗୋଟି ବସାଇ ।
ପୂର୍ବମୁଖେ ଗୁରୁ ବସିବ ଶାନ୍ତି । ୨୫ ।
ଶିଷ୍ୟଙ୍କୁ ପଶ୍ଚିମ ମୁଖ କରିବ ।
ଶିଷ୍ୟ କର୍ଣ୍ଣରେ ଯେ ମନ୍ତ୍ର କହିବ । ୨୬ ।
ହୃଦରେ କୃଷ୍ଣ ରାମ ମନ୍ତ୍ର ସୁମର ।
ଶାମ ଶବଦ ଯେ ଗୁପତ କର । ୨୭ ।
ହୃଦରେ ବୀଜଗୋଟି ପ୍ରଥମେ ଥୋଇ ।
ରାମ ବୀଜ ତଥି ପାଶେ ବସାଇ । ୨୮ ।
କୃଷ୍ଣ ବୀଜ ତଥି ପାଶେ ରହିନ ।
ଶ୍ୟାମ ବୀଜ ତଥି ପାଶେ ବସିବ । ୨୯ ।
ହୃଦରେ ରାମ ବୀଜ ତଳେ ବସାଇ ।
ତନ୍ଧି ତଳେଣ ପ୍ରଣବକୁ ଥୋଇ । ୩୦ ।
ଗୁରୁପୀଢ଼ି ତଥି ତଳେ ଲେଖିବ ।
ଶେଷେ ପରାପର ଗୁରୁ ଗୁଣିବ । ୩୧ ।
ପରମ ଗୁରୁ ଯେ ତଥି ତଳେଣ ।
ଶ୍ରୀଗୁରୁ ଆପଣେ ତଥି ତଳେଣ । ୩୨ ।
ଶାମବୀଜ ପାଶେ ଚନ୍ଦ୍ର ବସାଇ ।
ଷୋଡ଼ଶ ପଦାର୍ଥ ପୂଜା ଯେ ଥୋଇ । ୩୩ ।
ବସ୍ତ୍ର ଅଳଙ୍କାର ସେବା ମିଳିବ ।
ସମର୍ପଣ ନେଇ ମନ୍ତ୍ରେ କରିବ । ୩୪ ।

---

୨୯—୧ ରେ ଷଭୁ ଗୁଣ (ଖ);
୩୧—୨ ଶେଷେ ଚନ୍ଧି ପରାପର ଗୁଣିବ (କ);

ଫୁଲ ପାନ ବସ୍ତ୍ର ଚନ୍ଦନ ଯେତେ ।
ଦୁବ ଅକ୍ଷତ ଶ୍ରୀଫଳ ସହିତେ । ୩୫ ।
ଦକ୍ଷିଣା ଗୁଆ ଯେ ବନ୍ଧ ଫଳ ।
ଗୁରୁଚରଣରେ ସେବା ନିର୍ମଳ । ୩୬ ।
ନବଦିନେ ପୁତ୍ରେ ଦୀକ୍ଷା କହିଲେ ।
ଚନ୍ଦଗୋଷ୍ଟି ଲେଖି ନାମ ବହିଲେ । ୩୭ ।
ଦୁଅଇ ତାହାର ପରମ ଗତି ।
ମୃତ୍ୟୁ ହେଲେ ପୁଣ ଜନ୍ମ ଲଭନ୍ତି । ୩୮ ।
ବରଷେ ପୂର୍ତ୍ତିରେ ମନ୍ତ୍ର ବହିଲେ ।
ଚନ୍ଦ୍ର ଷଡ଼ାକ୍ଷର ଲେଖି ପୃଥ୍ୱୀରେ । ୩୯ ।
ଶିଷ୍ୟର ଦୁଅଇ ଉଗତ ଜାତ ।
ମଲେଣ ବ୍ରାହ୍ମଣ ଘରରେ ଜାତ । ୪୦ ।
ତୃତୀୟ ବରଷେ ନାମ ବହିଲେ ।
ଚନ୍ଦ୍ର ଚତୁର୍ବୀଜ ଲେଖିବ ଭଲେ । ୪୧ ।
ପ୍ରଣବ କୋଷ୍ଠେ ପୁଣ ବସାଇ ।
ମନ୍ଦ ଯୋଗୀ ଘରେ ମଲେ ଜନ୍ମଇ । ୪୨ ।
ପଞ୍ଚମ ବରଷେ ନାମ ବହିଲେ ।
ଚନ୍ଦ୍ର ମନ୍ତ୍ରବୀଜ ପ୍ରଣବ ଭଲେ । ୪୩ ।
ଗୁରୁ ପ୍ରଣବ ଯେ ବହିବ ତହିଁ ।
ମଲେଣ ଦେବତା ଶରୀର ପାଇ । ୪୪ ।
ସପ୍ତମ ବରଷେ ନାମ ବହିବ ।
ଚନ୍ଦ୍ରମନ୍ତ୍ର ଗୁରୁ ପ୍ରଣବ ଥିବ । ୪୫ ।
ଓଁକାର ବସାଇ ବତିଶ ଦଳ ।
ମଲେ ଜନ୍ମ ବଇକୁଣ୍ଠରେ ମେଳ । ୪୬ ।

୪୧—୧ ମନ୍ତ୍ର ବହିଲେ (ଗ);

ନବମ ବରଷେ ଦୀକ୍ଷା କହିଲେ ।
ଜାଲାନ୍ଧ୍ର ଯନ୍ତ୍ର ଯେ ଲେଖିବ ଭଲେ । ୪୭ ।
ଶିଷ୍ୟଙ୍କୁ କହିଲେ ଭଗତ ହୋଏ ।
ମଲେ ସେହୁ ବୀଜ ବିନାଶ ନୋହେ । ୪୮ ।
ଲେଉଟି ସେ ଜନ ହରି ଭଜନ ।
ଭଗତ ସ୍ୱଭାବରେ ବଳଇ ମନ । ୪୯ ।
ବାରବରଷରେ ଦୀକ୍ଷା କହିବ ।
ଜାଲାନ୍ଧ୍ର ସମାଧି ଗୁପ୍ତା କହିବ । ୫୦ ।
ପଞ୍ଚାକ୍ଷର ଷଡାକ୍ଷର ଯେ ପୁଣ ।
ଷଡାକ୍ଷର ଲେଖି ଜିହ୍ୱା ଅଗ୍ରେଣ । ୫୧ ।
ପଞ୍ଚାକ୍ଷର କଣ୍ଠ ଦେଶରେ କହି ।
ଏ ଦୀକ୍ଷା ପାଇଲେ ଭଗତ ହୋଇ । ୫୨ ।
ଏ ଦୀକ୍ଷା ଯାହାକୁ ହୋଏ ପ୍ରାପତ ।
ଜାଣିବା ସେ ଜନ କୃଷ୍ଣ ଭଗତ । ୫୩ ।
ଏ ଦୀକ୍ଷା ଯେନ୍ନ ଯେ ସୁରଇ ନାହିଁ ।
ଯଦୁବଂଶ ଭକ୍ତ ତାକୁ ନ କହି । ୫୪ ।
ଯେ ଷଣ ଅକ୍ଷରେ ହୁଅନ୍ତି ଭକ୍ତ ।
ଅନନ୍ତ ଭକ୍ତରେ ଭଗତେ ସେତ । ୫୫ ।
ଦକ୍ଷିଣାସ୍ତନ ହୃଦରେ ବନ୍ଧିବ ।
ରବ ଶନ ଗୁରୁ ମଙ୍ଗଳ ସ୍ୱବ । ୫୬ ।
ଶୁକଳ ପକ୍ଷ ଯେ ତଥି ବସ୍ତୁର ।
ପୁରୁଷ ଅଙ୍ଗକୁ ଶିଷ୍ୟ ଯେ କର । ୫୭ ।

---

୫୬—୧ ଯେନ୍ନ ଯେ ହଳଇ (କ),
୫୭—୧ ବନ୍ଧିବ (କ); ୪୮—୨ ନନ୍ଦେ ଶମର (ଖ);

ସୋମ ଶୁକ୍ର ବୁଧବାର ସୁମର ।
ହରିସ୍ମରଣ ଯେ ହୃଦେ ସମ୍ଭର । ୬୮ ।
ସ୍ତ୍ରୀଜନଙ୍କୁ ଯେ ଦୀକ୍ଷା ଦେଲେଣ ।,
ଗୁରୁଙ୍କ ପ୍ରମାଦ ନ ପଡ଼େ ପୁଣ । ୬୯ ।
ହରେ ରାମକୃଷ୍ଣ ପୁରୁଷେ ଦେବ ।
ରାଧେ କୃଷ୍ଣଶ୍ୟାମ ସ୍ତ୍ରୀ କହିବ । ୭୦ ।
ଦକ୍ଷିଣାଙ୍ଗନେ ସ୍ତ୍ରୀଙ୍କି ଦେଇ ।
ଗୁରୁଙ୍କ ପ୍ରମାଦ ନଷ୍ଟେ ପଡ଼ଇ । ୭୧ ।
ହରିସ୍ମରଣେ ପୁରୁଷଙ୍କୁ ଦେଲେ ।
ଗୁରୁଙ୍କୁ ବିପତ୍ତି ପଡ଼ଇ ଭଲେ । ୭୨ ।
ଶିଷ୍ୟହୃଦେ ଭକ୍ତି ନୁହଇ ଜାତ ।
ମୂଢ଼ମତି ତାର ହୁଅଇ ଚିତ୍ତ । ୭୩ ।
ଏଣୁକରି ଦେହ ଅସ୍ଥିର ମାୟା ।
ଅଣସ୍ୱର ବାୟୁ ଏଣୁ ଖେଳଇ । ୭୪ ।
ମନ୍ତ୍ର ଶୁଦ୍ଧ ଗୁରୁ ଅଙ୍ଗ କରିବ ।
ମନ ଚିତ୍ତ ଯେ ବ୍ରହ୍ମଲୋକେ ଥିବ । ୭୫ ।
ଅଭି କୃଷ୍ଣମନ୍ତ୍ର ପଞ୍ଚତତ୍ତ୍ୱରେ ।
ନମ ବୋଲି ଶୁଦ୍ଧ କରି ମନ୍ତ୍ରରେ । ୭୬ ।
ଦଶାଦର ନମ ଏ ସୁଦର୍ଶନେ ।
ଷଡଚକ୍ର ପୂଣ କରିବ ମନେ । ୭୭ ।
ଅଗ୍ନିଦତ୍ତ ପୂଜା ପ୍ରଥମେ କରି ।
ଦକ୍ଷିଣ ଦଗକୁ ପୂଜା ଶ୍ରେଶ । ୭୮ ।

---

୭୦—୧ହରେକୃଷ୍ଣ ରାମ (ଖ);
୭୭—୧ କୃଷ୍ଣମୂର୍ତ୍ତି (କ); ୭୬—୨ ନମ ଶୁଦ୍ଧ ସିଦ୍ଧ (ଘ);

ଉତ୍ତର ଦଗକୁ ପୂଜା କରିବ ।
ନୈଋତ ଦଗକୁ ପୁଣ ବନ୍ଦିବ । ୬୯ ।
ବାୟବ୍ୟଦଗକୁ ପୂଜା ଯେ କର ।
ଈଶାନ୍ୟଦଗକୁ ପୂଜା ସୁମର । ୭୦ ।
ପୂର୍ବଦଗକୁ ଯେ ପୂଜା କରଣ ।
ପଶ୍ଚିମ ଦଗକୁ ପୂଜା ବନ୍ଦଣ ୭୧ ।
ପାତାଳ ଅନନ୍ତ ଦେଶ ବନ୍ଦଣ ।
ସ୍ଵର୍ଗ ବ୍ରହ୍ମଦର ବନ୍ଦିବ ପୁଣ । ୭୨ ।
ଦଶଦଗ ପୂଜା ଏମନ୍ତ କର ।
ପୂର୍ବମୁଖେ ବସି ଗୁରୁ ସୁମର । ୭୩ ।
ସୁଦର୍ଶନ ଚକ୍ର ନମ ବୋଲଣ ।
ଦଶଦଗ ସୁଦର୍ଶନ ଯେ ପୁଣ । ୭୪ ।
ବାମପାଖୁଣେ ଗୁରୁଙ୍କୁ ବସାଇ ।
ଅଗ୍ରେ ରାଧାକୃଷ୍ଣ ଭଜେ କରାଇ । ୭୫ ।
ଦକ୍ଷିଣ ପାଖୁଣ ଶିଷ୍ୟ ଯେ ଗଣ ।
ଏମନ୍ତେ ପୂଜା ଯେ ଶୁଦ୍ଧ କରଣ । ୭୬ ।
ନଗମସ୍ଥାନରେ ବସିଣ ପୁଣ ।
ଶିଷ୍ୟ ଗୁରୁଦୀକ୍ଷା ଗୋପ୍ୟ ଶ୍ରବେଣ । ୭୭ ।
ପାହାନ୍ତ ପ୍ରହରେ ସ୍ନାନ କରଣ ।
ଦୀକ୍ଷା ଦେଲେ ଉତ୍ତ ହୁଅଇ ପୁଣ । ୭୮ ।
ରାତ୍ର ପାଞ୍ଚଘଡ଼ିଠାରେଣ ପୁଣ ।
ଦୀକ୍ଷା ଦେଲେ ଭଲ ହୋଏ କାରଣ । ୭୯ ।
ରାତ୍ର ଏକଘଡ଼ିଠାବରେ ପୁଣ ।
ଦୀକ୍ଷା ଦେଲେ ଭଲ ହୁଅଇ ଶୁଣ । ୮୦ ।
ଦିବା ପାଞ୍ଚଘଡ଼ିଠାବରେ ଦେବ ।
ଶିଷ୍ୟର ଉତ୍ତମ ହୁଅଇ ଲଭ । ୮୧ ।

ନିର୍ଜନବୃକ୍ଷରେ ତୁଳସୀ ତଳେ ।
ନିଗମବନେ ବା ଓଶ୍ୱତ୍ଥମଳେ ।୮୨।
ଶିଷ୍ୟଙ୍କୁ ମନ୍ତ୍ରରେ ଶୁଦ୍ଧ କରିଣ ।
ଶିଷ୍ୟମସ୍ତକେରୁ ମନରେ ଗୁଣ ।୮୩।
ଅଁ ଶୁଦ୍ଧ କୃଷ୍ଣ କୃଷ୍ଣ ବୋଲିଣ ।
ହ୍ରଂ ହ୍ରଂ ବୋଲି ମନ୍ତ୍ର ପଢ଼ିଣ ।୮୪।
ଶିଷ୍ୟଙ୍କୁ ଏମନ୍ତେ ସ୍ନାନ କରାଇ ।
ଶିଷ୍ୟ ଯେ ସ୍ନାନର ଫଳ ଲଭଇ ।୮୫।
ଗୁରୁଙ୍କ ମନ୍ତ୍ର କରିଣ ଲକ୍ଷ୍ୟ ।
ଅଁ କୃଷ୍ଣ କୃଷ୍ଣ ହର ହର ଯେ ।୮୬।
ଅଶ୍ୱିନ ଦେଲେ ଏମନ୍ତେଣ ସ୍ନାନ ।
ଗୁରୁଶିଷ୍ୟ ଦୁହେଁ କର ଭଜନ ।୮୭।
କାର୍ତ୍ତିକମାସରେ ଦେଲେଣ ପୁଣ ।
ଶିଷ୍ୟ ମନ୍ତ୍ର ମନେ ସ୍ମରେ ପୁଣ ।୮୮।
ଅଁ କୃଷ୍ଣ କୃଷ୍ଣ ହରଇଁ କହୁ ।
କରଇଁ ପାଶ ଅଁ ନମ ହୋଇ ।୮୯।
ଗୁରୁମନ୍ତ୍ର ସ୍ମରଣେ ଯେ ଚଳେ ।
ଓଁ ପୁରୁଷୋତ୍ତମ ନମ କଣ ନଚ୍ଛୋ ।୯୦।
ଗୁରୁଙ୍କ ରାଧା ଅଙ୍ଗେଣ ଧ୍ୟାଇ ।
ଶିଷ୍ୟ ଚନ୍ଦ୍ରାବଳୀ ଅଙ୍ଗ ସେବଇ ।୯୧।
କୃଷ୍ଣ ଅଙ୍ଗେ ମନ ନେଇ ଯୋଇବ ।
ଚନ୍ଦ୍ରାମଣିସ୍ଥଳେ ଧ୍ୟାନ କରିବେ ।୯୨।

---

୯୦—୨ ଓଁ ପୁରୁଷୋତ୍ତମ କରଣ ନଚ୍ଛୋ (ଖ),
ଅଁ ପୁରୁଷୋତ୍ତମ ନମ କର ନଚ୍ଛୋ । (ଝ):

ସେ ଅଷ୍ଟ ଦଳର କେଶର ପରେ ।
ରାଧାକୃଷ୍ଣ ବସେ ପ୍ରେମସ୍ୱଭାବରେ । ୯୩ ।
ଏକକଣ୍ଠୀ ବେଳ ପାଦ ଅଛଇ ।
ପାଦେ ଶ୍ୟାମ ପାଦେ ଗଉର ହୋଇ । ୯୪ ।
ଭୁଜେ ଗଉର ସେ ଭୁଜେ ଶ୍ୟାମଳ ।
ଲପନ ଗଉର କାନ୍ଦଣୀ କଲ । ୯୫ ।
ଏମନ୍ତେଣ ଲୀଳା କରଣ ଚାହିଁ ।
ଭଗତଜନ ତା ଦର୍ଶନେ ପାଇ । ୯୬ ।
ଅଧେ ପ୍ରକୃତି ଅଧେ ଅଟେ ପୁରୁଷ ।
ଶ୍ରୀବୀଜ ସୁମନ କାଳଣି ଘୋଷ । ୯୭ ।
ସୁନାମ ଅବୀଜ ଏକତ୍ର କର ।
ପ୍ରକୃତି ଅଙ୍ଗକୁ ଧ୍ୟାନ ସେ କର । ୯୮ ।
ଗୁରୁ ରାଧା ବୀଜ କର ଏକତ୍ର ।
ପ୍ରକୃତି ପୁରୁଷ ସେ ଜୀବରେ ଚନ୍ଦ୍ର । ୯୯ ।
ଜୀବ ପରମରେ ଜାଣି ଭଜନ ।
ଜ୍ୟୋତି ସମାଧିରେ କରଣ ଧ୍ୟାନ । ୧୦୦ ।
ଅଶେଷଜନ୍ମର ଦୁରିତ ଯାଇ ।
ଏ ଭେଦ ଜାଣିଲେ ଶିଷ୍ୟ ବୋଲାଇ । ୧୦୧ ।
ଏ ଭେଦ ପୁଣ ସେ ଶିଷ୍ୟ ନ ଜାଣେ ।
ଶିଷ୍ୟ ଗୁରୁ ଦୁହେଁ ଭ୍ରମେ ଏ ବଣେ । ୧୦୨ ।
ଜନମ୍ବେ ଭ୍ରମିଣ ନ ପାଏ ପଥ ।
ଅମୃତା ମାତ୍ରୁଣ କେଲଣ ଜାତ । ୧୦୩ ।
ଜନ୍ମ ଅକାରଣେ ଏମନ୍ତ ଯାଏ ।
ଅନେକ ଜନ୍ମେଣ ଭକ୍ତ ଉଦଯେ । ୧୦୪ ।

---

୯୮—୧ ସୁମନ ଅବୀଜ (କ)।

ସମାଧି ଅଟଇ ଭଗତ ମୂଳ ।
ଅଚ୍ୟୁତର ସେବା ବୈକୁଣ୍ଠସ୍ଥଳ । ୧୦୫ ।

ଜମ୍ବୁଗ୍ରାମଦେଶେ ରାମର ହିତ ।
ଉତ୍ତରବାସିନାସ୍ଥଳାରେ ଥିତ । ୧୦୬ ।

ପୂର୍ବଜନ୍ମଫଳେ ରାମଙ୍କୁ ମୁହିଁ ।
ଏ ଦୀକ୍ଷା କହିଲି ସେବେନ୍ଦ୍ର ବନ୍ଧୁ । ୧୦୭ ।

ରାମ କହିଲ ଯେ ଗୁମ୍ଫଙ୍କୁ ପୁଣ ।
ଅନନ୍ତ ମୁକୁନ୍ଦ ଧନ୍ୟ ଶ୍ରବଣ । ୧୦୮ ।

ଭଗତ ଶିଷ୍ୟଙ୍କୁ ଏ ଦୀକ୍ଷା ଦେବ ।
ନିର୍ମଳ ଶିଷ୍ୟର ମନ ବୁଝିବ । ୧୦୯ ।

ସେ ଶିଷ୍ୟ ହୃଦରେ ଏ ଦୀକ୍ଷା ରହେ ।
ଛଦ୍ମ ଶିଷ୍ୟ ଯେ ଏହା ନ ପାଏ । ୧୧୦ ।
ଛଡନ୍ତେ ଭଗତ ଚରଣ ସୁତ ।
ସୁଦାମ ସଖା ମୁଁ ଦାସ ଅଚ୍ୟୁତ । ୧୧୧ ।

ଏ ଗୀତା ଗୁପତ କଲେ ବର୍ଣ୍ଣିତ ।
ଫେଡ଼ିଲେ ବିପତ୍ତି ପଡ଼ଇ ସତ । ୧୧୨ ।

ଉତ୍ତମ ଶିଷ୍ୟଙ୍କୁ ଏ ପାଠ କହ ।
ମୂଢ଼ାତ୍ମ ଶିଷ୍ୟ ଯେ ବୁଝିବ କାହିଁ । ୧୧୩ ।

ମୂଢ଼ାତ୍ମ ଦାମ୍ଭିକ କପଟୀଜନେ ।
ମିଥ୍ୟା ପରଦାର ଯେ ଚଳେ ମନେ । ୧୧୪ ।

ସେ ଜନ ଘଟେ ଏ ପ୍ରବେଶ ନୋହୁ ।
କହିଲେ ଏଣୁଟି ଅପ୍ରାଧ ହୋଇ । ୧୧୫ ।

ଶରଧା କର ଯେ ବୁଝି ଶୁଣିବ ।
ହରଷେ ସେ ଜନ ଆଗେ ଭଣିବ । ୧୧୬ ।

ଏ ପାଠ ଶରଧା ରସିକ ହୃଦେ ।
ପାମର ଅଚ୍ୟୁତ ଲେଖିଲ ଗୀତେ । ୧୧୭ ।

ଇତି ଶ୍ରୀବ୍ରହ୍ମଭକ୍ତଗୀତାକଥନେ ନାମ ଦ୍ୱିଚତ୍ୱାରିଂଶତ ଗ୍ରନ୍ଥ ।



## ଚତୁଶ୍ଚତ୍ୱାରିଂଶତ୍ ଛାନ୍ଦ

କରୁଣା କରବା ସୁଦୟା ଚତ୍ତେଣ ।
ହରେକୃଷ୍ଣ ମହାମନ୍ତ୍ର ଶୁଦ୍ଧ ପରମାଣ । ୧ ।
ଷୋଡଶ ଅକ୍ଷର ମାତ୍ର ଯେ ଅଷ୍ଟ ପୁରୁଷ ।
ବୁଝାଇ କହିବା ଗୁରୁ ଫିଟିବ ସନ୍ଦେଶ । ୨ ।
ତତ୍ତ୍ୱ ପରତତ୍ତ୍ୱ ତୁମ୍ଭେ ଦୁଇ ଦାସ ଶୁଣ ।
ଅନନ୍ତ ମୁକୁନ୍ଦ ତୁମ୍ଭେ ଅଟ ହେ ସୁଜାଣ । ୩ ।
ପରାକୃତ ଭାଷା ଗୀତ କରଣ ଯେ କହ ।
ଗୋପାଳ ସ୍ୱତେ ହେ ତୁହଁ ଏଥୁ ଗୀତ ଗାଇ । ୪ ।
ଚଉଣ କୋଠା ଧରବ ସ୍ୱର ଅଷ୍ଟ କର ।
ଭୂମି ଖଣ୍ଡେ ଲିପିଣ ଯେ ମନ୍ତ୍ରକୁ ସୁମର । ୫ ।
ହରେକୃଷ୍ଣ ମହାମନ୍ତ୍ର ବତିଶ ଲେଖିଣ ।
ନାନା ଉପହାର ଭୋଗ ଦେବ ସେଠାରେଣ । ୬ ।
ବସ୍ତ୍ର ପୂଜା ଦେଇଣ ଯେ ଶିଷ୍ୟଙ୍କୁ କହିବ ।
ଶିଷ୍ୟର ସଂଶୟ ଦୋଷ ମନରୁ ଛାଡ଼ିବ । ୭ ।
ତନ୍ତ୍ରେ ବୁଝାଇଲେ ଶିଷ୍ୟ ମନ ହୋଏ ସ୍ଥିର ।
ଜଡ଼ମତ ଭାଙ୍ଗଇ ଯେ ଶିଷ୍ୟ ହୃଦୟର । ୮ ।
ତତ୍ତ୍ୱଭେଦ କହିବା ହେ ମନ୍ତ୍ରେ ହେତୁକର ।
ଏମନ୍ତ ହୋଇଣ ଗୁରୁଦୀକ୍ଷାର ବିସ୍ତର । ୯ ।
ହରେ ଯେ ଓଁକାର କୃଷ୍ଣ ବିନ୍ଦୁ ବୋଲି ପୁଣ ।
ଅର୍ଦ୍ଧାଙ୍ଗେ ମନ୍ତ୍ର ରାମକୁ କର ସୁମରଣ । ୧୦ ।

---

୧୦—୨ ମନ୍ତ୍ରରାଜରୁ (ଖ);

ଉତ୍ତମ ଦିନରେ ଏହୁ ସମ୍ବନ୍ଧ ପୁଣି ।
ଶିଷ୍ୟହୃଦେ ଭଗତ ଅଙ୍କୁର ହୋଏ ପୁଣ । ୧୧ ।
ମନ୍ଦଦିନେ କହିଲେ ଭକ୍ତି ନାତ ନୋହି ।
ଶିଷ୍ୟ ମୂଢ଼ମତି ପୁଣ ହୃଦୁଁ ନ ଛାଡ଼ଇ । ୧୨ ।
ମୁକୁନ୍ଦ ଅନନ୍ତ ଶିରେ କରଦେଲ ହସ୍ତ ।
ଏଥିରେ ସଂଶୟ ଗୁରୁ ଫେଡ଼ିଣ କହିବା । ୧୩ ।
ଶୁଣ ଅହେ ରାମସୁତ ମୁକୁନ୍ଦ ଅନନ୍ତ ।
ଗୁରୁ ଉପଦେଶ ବିଧି ପରମ ଗୁପତ । ୧୪ ।
ବିଶ୍ୱାସ ଭଗତ ଶିଷ୍ୟ ହୋଇଲେ ସେ ପାଇ ।
ବିଶ୍ୱାସ ଭକ୍ତ ନୋହିଲେ ଭ୍ରମି ମରୁଥାଇ । ୧୫ ।
ଗୁରୁ ଏଣୁକରି ସେ ଉତ୍ତମ ବିଗୁଚଣ ।
ଶିଷ୍ୟଙ୍କୁ ଦିଅନ୍ତି ହେରୁ ସୁଦଣ୍ଡ ବୁଝିଣ । ୧୬ ।
ପୂର୍ଣ୍ଣିମୀ ଦିନରେ ଦେଲେ ସର୍ବସିଦ୍ଧି ହୋଇ ।
ପ୍ରତିପେ ଉତ୍ତମ ତେଜ ବୃଦ୍ଧି ପ୍ରକାଶଇ । ୧୭ ।
ଦ୍ୱିତୀୟାରେ ଉତ୍ତମ ସେ ସିଦ୍ଧି ହୋଏ ଫଳ ।
ତୃତୀୟାରେ ଆନନ୍ଦ ସେ ହୁଅଇ ମଙ୍ଗଳ । ୧୮ ।
ଚତୁର୍ଥୀଦିନରେ ଦେଲେ ବଶ ସେ ହୁଅଇ ।
ପଞ୍ଚମୀଦିନରେ ହେଲେ ଧନବନ୍ତ ହୋଇ । ୧୯ ।
ଷଷ୍ଠୀ ସପ୍ତମୀରେ ଉତ୍ତମ ହୋଏ ପୁଣ ।
ଅଷ୍ଟମୀରେ ନିଷେଧ ନବମୀ ଭଲ ଶୁଣ । ୨୦ ।
ଦଶମୀତିଥିରେ ସେ ଦାରିଦ୍ର୍ୟ ଯୋଗ ହୋଇ ।
ଏକାଦଶୀଦିନରେ ସୁଜ୍ଞାନ ଭକ୍ତି ପାଇ । ୨୧ ।
ଦ୍ୱାଦଶୀଦିନରେ ଦେଲେ ମୃତ୍ୟୁ ହୋଏ ନାଜ ।
ପୁତ୍ର ଦାର ଧନଯସ୍ତେ ତ୍ରୟୋଦଶୀ ବୃଦ୍ଧି । ୨୨ ।
ବଳସିଦ୍ଧି ହୁଅଇ ଚତୁର୍ଦ୍ଦଶୀ ଦିନେ ।
କଳଙ୍କଯୋଗ ପ୍ରାପତ ଅମାବସ୍ୟାରେ ଦେନେ । ୨୩ ।

ଏମନ୍ତ ହୋଇଣ ତଥିମାନଙ୍କର ପୁଣ ।
ଗୁରୁଦୀକ୍ଷା ଭଗତ ହେ ଗୋପସୁତ ଶୁଣ । ୧୪ ।
ପୂର୍ବେ ଯେ ଶ୍ରୀକୃଷ୍ଣ ଯାହା ନାରଦେ କହିଲେ ।
ଋଷ୍ଟେତ ଶୁଣିଲ ପୁଣ ପୂର୍ବ ସ୍ୱର୍ଗଫଳେ । ୧୫ ।
ରବିବାରେ ଦୀକ୍ଷା ଦେଲେ ଦୁଃଖଯୋଗ ହୋଇ ।
ସୋମବାରେ ସୁଖଯୋଗ ସମ୍ପତ୍ତ ପାଇ । ୧୬ ।
ମଙ୍ଗଳବାରରେ ସର୍ବସିଦ୍ଧ ହୋଏ ଯୋଗ ।
ବୁଧବାରେ ବିଦ୍ୟାଭକ୍ତି ଲଭଇ ସଂଯୋଗ । ୧୭ ।
ଗୁରୁବାରେ ଦପିତ ସେ ତେଜବଳ ହୋଇ ।
ସର୍ବଜନ ବଶ୍ୟ ଶୁକ୍ରବାରରେ ଲଭଇ । ୧୮ ।
ଶନିବାରେ ପୁତ୍ର ଧନ ଲକ୍ଷ୍ମୀ ହାନ ହୋଏ ।
ଏଣୁକରି ଗୁରୁ ସର୍ବଠାରୁ ପୁଣ୍ୟମୟେ । ୧୯ ।
ଗୁରୁ କୃଷ୍ଣ ବୈଷ୍ଣବ ତିନ ଅଙ୍ଗ ଏକ ।
ସ୍ମରିଲେ ଖଣ୍ଡନ ଯେ ହୁଅଇ ପାତକ । ୨୦ ।
ଚୈତ୍ରମାସରେ ଦେଲେ ଅନ୍ଧ ଯେ ଲୋଚନ ।
ବୈଶାଖମାସରେ ଦେଲେ ପାଇ ଭକ୍ତି ଜ୍ଞାନ । ୨୧ ।
ଜ୍ୟେଷ୍ଠମାସେ ଦୀକ୍ଷାଦେଲେ ମରଣ ଲଭଇ ।
ଆଷାଢ଼ମାସରେ ଦେଲେ ବନ୍ଧୁ ନାଶ ଯାଇ । ୨୨ ।
ଶ୍ରାବଣମାସରେ ଦେଲେ ମହାସୁଖ ପାଏ ।
ଭାଦ୍ରବ ଆଶ୍ୱିନେ ରତ୍ନ ପ୍ରାପ୍ତ ହୁଅଏ । ୨୩ ।
କାର୍ତ୍ତିକରେ ମହାଲକ୍ଷ୍ମୀ ସମ୍ପତ୍ତ ଯୋଗ ।
ମାର୍ଗଶିରେ ଧନକ୍ଷୟ ହୁଅଇ ସଯୋଗ । ୨୪ ।
ପୁଷ୍ୟେଣ ମୁକତିଯୋଗ ସମ୍ପତ୍ତ ହୋଏ ।
ମାଘେଣ ସମ୍ପତ୍ତିଯୋଗ ହୁଅଇ ଜଦବସ୍ତେ । ୨୫ ।
ସର୍ବ କର୍ମଫଳ ଯେ ଫଗୁଣମାସେ ହୋଇ ।
ଦ୍ୱାଦଶମାସର ବିଧି ଏମନ୍ତ ଅଟଇ । ୨୬ ।

ଶିଷ୍ୟରେ ଏମନ୍ତ ଯୋଗ ଜାଣିଣ କହିବ ।
ହରେକୃଷ୍ଣ ହରେକୃଷ୍ଣ କୃଷ୍ଣ କୃଷ୍ଣ ଭାବ । ୩୭ ।
ହରେ ହରେ ବୋଲିଣ ଯେ ବର୍ଣ୍ଣ ବୁଝିବ ।
ଛତିଶାକ୍ଷର ମନ୍ତ୍ରବଧି ଏମନ୍ତ ଯେ ଭାବ । ୩୮ ।
ହରେରାମ ହରେରାମ ବର୍ଣ୍ଣଣ କର ।
ରାମ ରାମ ହରେ ହରେ ବଚଣ ସୁମର । ୩୯ ।
ଷୋଳଗୋଟି ଅକ୍ଷର ଯେ ଅଣ୍ଡିର ଅଛଇ ।
ବେଳଆଠ ଏଥିରେ ଯେ ପ୍ରିୟାଙ୍କ ହୋଇ ୪୦ ।
ହକାର ଅକ୍ଷର ଯେ ବିମଳା ସଖୀ କହି ।
ଶ୍ରୀଦାମ ସଖା ରେକାର ଅକ୍ଷର ଅଛଇ । ୪୧ ।
କୃକାରକୁ ସାରଦା ଯେ ସଖୀ ବୋଲି ଜାଣ ।
ସୁଦାମ ସଖା ଅଟନ୍ତି ଷ୍ଣକାର ଯେ ପୁଣ । ୪୨ ।
ହକାରକୁ ମେଧା ସଖୀ ବୋଲିକରି କହି ।
ରେ ଯେ ଅକ୍ଷର ବସୁ ଦାମ ସଖା ହୋଇ । ୪୩ ।
କୃକାରକୁ ଲଳିତା ଯେ ସଖୀ ବୋଲି ଜାଣ ।
ମହାବଳ ସଖା ଏହୁ ଷଣ ଅଟେ ପୁଣ । ୪୪ ।
କୃକାରକୁ ଚିତ୍ର ସଖୀ ବୋଲିକରି କହି ।
ସୁବାହୁ ସଖାବୋଲିଣ ଷଣ ଯେ ଅଛଇ । ୪୫ ।
କୃକାର କୃଷ୍ଣଲାସଖୀ ବୋଲି କରି ଜାଣ ।
ଷଣ ଅକ୍ଷର ପାର୍ଥ ସଖା ଅଟନ୍ତି ଯେ ପୁଣି । ୪୬ ।
ହକ୍ଷର ହଂସିନୀ ଯେ ସଖୀ ବୋଲି କହି ।
ଦେବସଖା ବୋଲି ରେ ଯେ ଅକ୍ଷର ଅଛଇ । ୪୭ ।

---

୪୩—୨ ରେ ଭାବ ଅକ୍ଷର ଯେ ସୁଦାମ ହୋଇ (ଖ);
୪୪—୨ ମନ ଅଙ୍ଗେ (ଖ); ମନ ଅଟେ (କ);
୪୫—୨ ମନ ଯେ (କ, ଖ); ୪୬—୨ ମନକ୍ଷର (ଖ, ଗ);

ହ ଯେ ଅକ୍ଷର ବୋଲି ନାରାୟଣ ସଖୀ ।
ରେକାର ସୁବଳ ସଖା ଏଣୁକରି ଲେଖି । ୪୮ ।
ହକାରକୁ କେଶୀସଖୀ ବୋଲିକରି ଜାଣ ।
ଅକ୍ଷୟ ସଖା ବୋଲଣ ରେକାରକୁ ଗୁଣ । ୪୯ ।
କୃ ଯେ ଅକ୍ଷର ପଦ୍ମସଖା ବୋଲି କହୁ ।
ଶ୍ରୀବତ୍ସ ସଖା ଯେ ମ ଅକ୍ଷର ଅଟଇ । ୫୦ ।
ହକାରକୁ ଭମ୍ବାସଖୀ ବୋଲି କରି ଜାଣ ।
ଅର୍ଜୁନ ସଖା ବୋଲଣ ରେକାରକୁ ଗୁଣ । ୫୧ ।
ସୁଶୀଳା ସଖୀ ଯେ ଗ୍ରଥ ଅକ୍ଷର ଅଟଇ ।
ମ ଯେ ଅକ୍ଷର ପ୍ରିୟ ସଖା ବୋଲି କହୁ । ୫୨ ।
ବାର୍ତ୍ତିକା ସଖୀ ବୋଲଣ ଗ୍ରଥକୁ ବଚ୍ଚର ।
ଲବଙ୍ଗ ସଖା ବୋଲଣ ମର୍ଦ୍ଦକୁ ସୁମର । ୫୩ ।
ରଙ୍ଗଣୀ ସଖୀ ବୋଲଣ ଗ୍ରଥ ଯେ ଅଟଇ ।
ମହାବାହୁ ସଖା ବୋଲି ନାମ ଅଛୁ କହୁ । ୫୪ ।
ହକାରକୁ ପ୍ରିୟାସଖୀ ବୋଲିକରି ଜାଣ ।
ଶ୍ୟାମ ସଖା ବୋଲିକରି ରେକାରକୁ ପୁଣ । ୫୫ ।
ସଂସାର ସଖୀ ବୋଲଣ ହକାରକୁ କହୁ ।
କୃଷ୍ଣସଖା ବୋଲଣ ଯେ ରେକାର ଅଟଇ । ୫୬ ।
ଏମନ୍ତେ ବତଶକ୍ଷର ହରେକୃଷ୍ଣ ମନ୍ତ୍ର ।
ଷୋଳଯୁଗ୍ମ ହୋଇବ ହେରୁ ଯନ୍ତ୍ର ମନ୍ତ୍ର ତନ୍ତ୍ର । ୫୭ ।
ଚଉଷଠି କୋଠା ଗୋଟି ଶଳଖି ଲେଖିବ ।
ଆଠଗୋଟି ଅକ୍ଷର ଯେ ପ୍ରଥମେ ଲେଖିବ । ୫୮ ।
ସଖୀସଖା ଯୁଗଳ ଯେ ଆଠ ବସଇବ ।
ପୁଣ ଆଠଧଣ ଯେ ମନ୍ତ୍ରକୁ ବହେବ । ୫୯ ।

---

୫୯—୨ ବନ୍ଧବ (କ), ୭୩—୨ଗୃଣ ଯେ କୁଣ୍ଡଳ ହଂସୀ (ଖ);

ପୁଣ ସଖୀସଖା ତଥ ପାଶରେବସାଇ ।
ପୁଣ ଆଠ ଅକ୍ଷର ଯେ ତଥ ତଳେ ଥୋଇ । ୭୦ ।
ପୁଣ ସଖୀ ସଖା ଆଠ ବସାଇବ ତଳ ।
ପୁଣ ଆଠ ଅକ୍ଷର ଯେ ଲେଖି ଭୂମିତଳ । ୭୧ ।
ପୁଣ ସେହ୍ନ ସଖୀସଖା ଅଠ ବସାଇବ ।
ଚଉଷଠି ଆନଗୁହି ଶିଷ୍ୟ ଭକ୍ତ ହେବ । ୭୨ ।
ଚମ୍ପଲା ସାରଦା ମେଧା ଲଲିତା ଯେ କହ୍ନ ।
ଗୁରୁ ଯେ ବୃନ୍ଦା ହଂସୀ ନାଗପୁଣୀ କହ । ୭୩ ।
କେଶୀ ପଦ୍ମାଶୀଳାବତୀ ରଙ୍ଗଣୀ ଯେ ପୁଣ ।
ପ୍ରିୟାସଖୀ ଶଙ୍ଖ ଯେ ସଖୀ ବୋଲି ଗଣ । ୭୪ ।
ଶ୍ରୀଦାମ ସୁଦାମ ବସୁଦାମ ମହାବଳ ।
ସୁବାହୁ ପାର୍ଥ ଦେବ ଯେ ଆବର ସୁବଳ । ୭୫ ।
ଶ୍ରୀବତ୍ସ ଅର୍ଜୁନ ପ୍ରିୟ ଲବଙ୍ଗ ଯେ କହ୍ନ ।
ମହାବାହୁ ରାମ କୃଷ୍ଣସଖା ସର୍ବଧାପ୍ତି । ୭୬ ।
ଏମନ୍ତ ଦର୍ଶନେ ଏତେ ଫଳଗନ୍ଧ ପାଇ ।
ହରେ କୃଷ୍ଣ ରାମ ଭଜ ମନ ଚିତ୍ତ ଦେଇ । ୭୭ ।
ମୋହନକୁଞ୍ଜରେ ଛନ୍ତି ଲଳିତା ଯେ ପୁଣ ।
ତାମ୍ବୁଳ ସେବାକରନ୍ତି ଶ୍ରୀକୃଷ୍ଣଙ୍କୁ ପୁଣ । ୭୮ ।
ଲଳିତକୁଞ୍ଜରେ ଯେ ବିଶାଖା ଛନ୍ତି ରହ୍ନ ।
କର୍ପୂରସେବା କରନ୍ତି ଶ୍ରୀକୃଷ୍ଣଙ୍କୁ ଧ୍ୟାଇ । ୭୯ ।
ଚମ୍ପାଦେବୀ ଚମ୍ପକୁଞ୍ଜରେ ଯେ ଛନ୍ତି ପୁଣ ।
ବସ୍ତ୍ରସେବା ବର୍ଦ୍ଧମାନ ସେବା ଯୋଗାଇଣ । ୮୦ ।
ବସନ୍ତକୁଞ୍ଜରେ ରଙ୍ଗଦେବୀ ଛନ୍ତି ରହି ।
ନୃତ୍ୟଗୀତ ସୁରମାନ ଆଳାପ ଯେ ଗାଇ । ୮୧ ।
ସୁଦେବୀ ସୁଖକୁଞ୍ଜରେ ଅଛନ୍ତି ବର୍ଦ୍ଧଣ ।
ଜଳସେବା କରନ୍ତି ଯେ ମନ ହରଷେଣ । ୮୨ ।

ତୁଙ୍ଗବିଦ୍ୟା ଶ୍ୟାମକୁଞ୍ଜେ ଅଛନ୍ତି ସେ ରହି ।
ଚଉଷଠି ତାନ ସେ ଛତିଶ ରାଗ ଗାଇ । ୭୩ ।
ଅରୁଣକୁଞ୍ଜରେ ଇନ୍ଦୁରେଖା ରହି ପୁଣ ।।
ବାଦ୍ୟବିଧି କରନ୍ତି ସେ ମନ ହରଷେଣ । ୭୪ ।
ଶ୍ରୀକୃଷ୍ଣସେବାରେ ସଖୀ ସଖା ଛନ୍ତି ରହି ।
ମୂଢ଼ ଶିଷ୍ୟ ବୁଝିଲେ ସେ ମୁକତି ଲଭଇ । ୭୫ ।
ହକାର ଶକତି ବସେ ନ ସିକାରେ ପୁଣ ।
ରେକାର ଶବଦ ରଖ ବଦନେ ଗୁଣିଣ । ୭୬ ।
କୃକାରକୁ ଚକ୍ଷୁଦ୍ୱାରେ ରଖ ମନଦେଇ ।
ଷ୍ଣକାରକୁ ତାଳୁକା ସେ ମଧ୍ୟରେ ବସାଇ । ୭୭ ।
ଚକ୍ଷୁମଧ୍ୟେ ରାକାର ସେ ବସାଇଣ ପୁଣ ।
ମକାର ତାଳୁକାମଧ୍ୟେ ଅଛଇ ବସିଣ । ୭୮ ।
ଓଁ ନମ କୃଷ୍ଣ ରାମହରେ ବୋଲି ପୁଣ ।
ହରେ କୃଷ୍ଣ ରାମ ତିନ ଅଭେଦନ୍ତି ଜାଣ । ୭୯ ।
ଗୋପୀ ଅଙ୍ଗ ହରେ ବୋଲି ରାମ ଅଙ୍ଗ ରାଧା ।
କୃଷ୍ଣନାମ କୃଷ୍ଣ ହୋଇ ଏକ ସେ ନିବିଧା । ୮୦ ।
ଗୋପୀ ଭଜୁଛନ୍ତି କୃଷ୍ଣ ରାଧାରାଧା ପୁଣ ।
କୃଷ୍ଣ ଭଜୁଛନ୍ତି ରାଧାରାଧା ଗୋପୀଗଣ । ୮୧ ।
ରାଧାଅଙ୍ଗୁ ଗୋପୀମାନେ ହୁଅନ୍ତି ଜନମ ।
କୃଷ୍ଣ ଅଙ୍ଗୁ ତାହାର ଗୋପାଳ ଯେଉଁ ନାମ । ୮୨ ।
ଏଣୁକରି ରାଧାକୃଷ୍ଣ ଅର୍ଦ୍ଧ ଅର୍ଦ୍ଧ ହୋଏ ।
ଗୁରୁ ଶିଷ୍ୟ ଅଙ୍ଗ ହୋଇ ଭଗତ ହୃଦୟେ । ୮୩ ।
ଏଣୁକରି ଗୁରୁଶିଷ୍ୟ ଅନୁବ୍ରତେ ପୁଣ ।
ମନ୍ତ୍ର ସବୁ ଶିଖୁଥିବ ଗୁରୁଙ୍କ ପାଶେଣ । ୮୪ ।

---

୭୫—୨ ଭଗତି ଲଭଇ (ଙ);

ବିନାଗୁରୁ ନ କହିଲେ ସଂଶୟ ନ ହରେ ।
ବିଦ୍ୟା ଶାସ୍ତ୍ର ପଢ଼ି ପଢ଼ି ଫୁଟିକର ମରେ । ୮୫ ।
ଗୁରୁସେବା କରି ଯେବେ ବିଦ୍ୟା ପୁଣ ଘୋଷେ ।
ପୂରିଲ କୁମ୍ଭର ପ୍ରାୟେ ହୃଦେ ପରକାଶେ । ୮୬ ।
ବୃକ୍ଷରୁ ବାହାର ପୁଷ୍ପ ପରାୟେ ଅଛଇ ।
ମଲେଣ ସେ ଜନର ବାସନା ନ ଲୁଚଇ । ୮୭ ।
ଦେହ ମୃତ୍ୟୁ ଅଛଇଟି ବୃକ୍ଷର ପରାୟେ ।
କୃଷ୍ଣଭକ୍ତି ବାସନା ପରାୟେ ରହିଥାଏ । ୮୮ ।
ଜଗତ ବାସନା ଶୂନ୍ୟ ସଂସାରେ ରହିବ ।
ଗୋପପୁତ୍ର ଅନୁବ୍ରତେ କୃଷ୍ଣ ଭଜୁଥିବ । ୮୯ ।
ସବେ କୃଷ୍ଣ ରାମ ଭଜ ଯତନେ ହୃଦେଣ ।
ନାମରୂପ ସଂସାରରେ ନାହିଁ ବଡ଼ ପୁଣ । ୯୦ ।
କୃଷ୍ଣରାଧେ କୃଷ୍ଣରାଧେ ନିରନ୍ତରେ ଭଜ ।
ସକଳ କଳୁଷ ଯାଉ ପାଦପଦ୍ମେ ମଜ୍ଜ । ୯୧ ।
ତ୍ରିକୂଟସନ୍ଧିରେ ଲକ୍ଷ୍ୟେ କରଣ ହେବା ମନ ।
ମନକୁ ଅମନେ ଦେଇ ପାଦପଦ୍ମେ ଧ୍ୟାନ । ୯୨ ।
ରାସଦବା ଏ ଆନକୁ କରୁଥିବ ଲକ୍ଷ୍ୟେ ।
ସୁହୃଦେ କହିଲୁ ଏ ଚବିଶ ଗୋପ ପୋଏ । ୯୩ ।
ଏ ଭବଜଳକୁ ଏହୁ ନାବ ଅଟେ ପୁଣ ।
ଗୁରୁଭକ୍ତିଗୀତା ଶୁଣ ପାଇବ କାରଣ । ୯୪ ।
ପାମର ଅଚ୍ୟୁତ ଗୁରୁଚରଣକୁ ଧ୍ୟାଇ ।
ଶ୍ରୀଗୋରଙ୍ଗପରିବାର ଶୁଣ ମନ ଦେଇ । ୯୫ ।

**ଇତି** ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଚତୁଷ୍ଟଦ୍ୱାରିଂଶ ଛାନ୍ଦ ।



## ପଞ୍ଚଚତ୍ୱାରିଂଶତ୍ ଛାନ୍ଦ

ରାମଚନ୍ଦ୍ର ଦାସର ଏକ ସ୍ତୁଢ ଯେକ ।
ସଂଶୟ ଲାଗିଲା ଚିନ୍ତ ବୁଝିବାର ସ୍ଥାନ । ୧
ହରେକୃଷ୍ଣ ରାମର ଯେ ଚକ୍ରଭେଦ ଗୂଢ଼ ।
ବୁଝିଲେ ଶିଷ୍ୟର ଭେଦ ଗୁଡ଼ାଚ ଯେ ମୂଢ଼ । ୨
ହକାର ଯଜ୍ଞକୁ ଧରି ରହିଅଛୁ ପୁଣ ।
ରେକାର ମୂର୍ଦ୍ଧ ଠାରେ ବସିଅଛି ଶୁଣ । ୩
କୃକାର ଭୂଲଡୋପରେ ଝଙ୍କାର କରଇ ।
ଷ୍ଣକର ସାମକୁ ଯେ ଧରିକରି ରହୁ । ୪ ।
ରାକାର ଋକକୁ ଧରି ଅଛଇଟି ପୁଣ ।
ମକାର ଅଥର୍ବ ସଙ୍ଗେ ମିଶି ଅଛୁ ଜାଣ । ୫ ।
ଏମନ୍ତ ହୋଇଣ ବେଦେ ମନ୍ତ୍ର ଅଛୁ ରହୁ ।
ସୂକ୍ଷ୍ମ ବିପ୍ର ଶୂଦ୍ର ଜାତି ବୈଷ୍ଣବ ଜାଣଇ । ୬ ।
ବେଦରେ ଗାୟତ୍ରୀମନ୍ତ୍ର ଅଛଇ ରହୁଣ ।
ପର ରଜ ଙ୍ଗ ବଦ ଗାଳ ଅଠ ପୁଣ । ୭ ।
ପର ବ୍ରହ୍ମ ଯଜୁ ସଙ୍ଗେ ଅଛନ୍ତି ମିଶିଣ । ।
ରଜ ବ୍ରହ୍ମ ଋକ ଯେକ ଲୀଳା କରେ ପୁଣ । ୮
ଶମ୍ଭ ତେଜ ମହେଶ ଯେ ସାମ ସଙ୍ଗେ ରହୁ ।
ବଦ ସର୍ବ ଦେବଗଣ ଅନ୍ତ୍ରେ ଘରେ ପାଇ । ୯ ।
ଅର୍ଦ୍ଧମାତ୍ରା ବ୍ରହ୍ମ ବୋଲି ଧ୍ୟାନକର ଚିତ୍ତେ ।
ଓଁକାର ଯେ ଗୋପୀଅଙ୍ଗ ବୋଲିକରି କହୁ । ୧୦

---

୪—୨ ଭ ଭାବ (କ, ଖ);

ବନ୍ଧ ଅଟେ ଶ୍ରୀକୃଷ୍ଣ ଯେ ସନ୍ତଜନ ଶୁଣ ।
ଏମନ୍ତ ଯେ ବେଢ଼ିଛନ୍ତି ସଖୀସଖାଗଣ । ୧୧ ।
ଚକ୍ର ସଙ୍ଗୁ ଏ ଭେଦ ଯେ ଏତ କଣ ଜାଣ ।
ସଖଙ୍କ ସାମ ନୁହନ୍ତି ବେଗଳ ଯେ ପୁଣ । ୧୨ ।
ସ୍ୱର ଯେ ଦୁଗୁଣେ ଆଠ ବୋଲକଣ କହୁ ।
ଅଷ୍ଟାକ୍ଷର ବୀଜ ଯେ ଗାୟତ୍ରୀମନ୍ତ୍ର କହୁ । ୧୩ ।
ପୂର୍ବ ଯେ ପଶ୍ଚିମ ଦଗ ଉତ୍ତର ଦକ୍ଷିଣ ।
ଅଗ୍ନି ଯେ ବାୟବ୍ୟ ବୋଲି ନୈଋତ ଈଶାନ୍ୟ । ୧୪ ।
ଏ ଅଷ୍ଟଦଳରେ ଅଷ୍ଟ ଅକ୍ଷର ବସଇ ।
ଏ ଅଷ୍ଟ ବନ୍ଧଲେ ଯେ ଗୋଲକ ସ୍ଥାନ ପାଇ । ୧୫ ।
ପ ବୋଲି ଯାହା କହୁ ସେ ଅଟେ ଲଳିତା ।
ପୂର୍ବଦଳ ଜଗଣ ସେ ଅଛନ୍ତି ବନିତା । ୧୬ ।
ର ବୋଲି ଯାହା କହୁ ଚନ୍ଦ୍ରମୁଖୀ ଜାଣ ।
ଦକ୍ଷିଣଦଳ ଜଗିଣ ରହିଛନ୍ତି ପୁଣ । ୧୭ ।
ର ବୋଲି ଯାହା କହୁ ଈଶାନ୍ୟ ଅଟଇ ।
ରଙ୍ଗିଣୀ ବୋଲିଣ ତାଙ୍କ ନାମ ପୁଣ କହୁ । ୧୮ ।
ଜ ବୋଲି ହରିପ୍ରିୟା ନାମ ଅଟେ ପୁଣ ।
ଅଗ୍ନି ଯେ କୋଣରେ ପୁଣ ଅଛନ୍ତି ରହିଣ । ୧୯ ।
ଶ ବୋଲି ଶଶିରେଖା ବସୁରଣ ଦର ।
ପଶ୍ଚିମଦଳରେ ତାଙ୍କ ଅଟଇ ଦୁଆର । ୨୦ ।
ଆଦର ଷ ଯେ ଶ୍ୟାମା ବୋଲି କରି କହୁ ।
ବାୟବ୍ୟଦଳରେ ପୁଣ ଅଛନ୍ତି ଯେ ରହୁ । ୨୧ ।
ବ ବୃନ୍ଦାବତୀ ଯେ ଉତ୍ତରେ ଛନ୍ତି ପୁଣ ।
ଦ ଦନୁଷା ଚନ୍ଦ୍ରି ନୈଋତ ଦଳେଣ । ୨୨ ।
ଏ ଅଷ୍ଟକୁ ବେଢ଼ିଛନ୍ତି ଚବିଶ ଯେ ପୁଣ ।
ଚବିଶ ଅକ୍ଷର ନାମ ବୁଝ କରି ପୁଣ । ୨୩ ।

ଅକ୍ଷର ଗୋଟିକେ ତ୍ରିଶ୍ଚ ଅଛନ୍ତି ଗୋଟିଏ ।
ହେତୁରୂପରୁ ବୁଝାଇଲେ ସେବା ଶିଷ୍ୟ ପାଏ । ୨୪ ।
ଉଷ୍ଣବର୍ଣ୍ଣବରଣୀସ୍ତୋଇଗେ।ତେବ କନ୍ଧ ।
ସ୍ୱୀ ଧ୍ୟମସ୍କ ଧ୍ୟସ୍ତୋସ୍ୱନପ୍ରତ୍ରେଦସ୍ତାତ୍ର ଏନ୍ଧ । ୨୫ ।
ଏ ଚକ୍ଷଣ ବନ୍ଧଲେ ପାଇବ ହେତୁ ପୁଣ ।
ଗୁରୁ ବୁଝାଇଲେ ଶିଷ୍ୟ ସଂଶୟ ହରଣ । ୨୬ ।
ଏ ନାଗ୍ରକ ବେଢ଼ି ଛନ୍ତି ଆବର ବଢଣ ।
ଛଦଣ ଯୁବଣ୍ଡ ନାନା ବେଶରେ ସୁବେଣ । ୨୭ ।
ମଳବନ୍ଧ ପବନନ୍ଧି ବୋଲିଣ ଯେ ନାମ ।
ମେରୁଭେଦ ରସ ଦନ୍ଧି ବୋଲିଣ ଉତ୍ତମ । ୨୮ ।
ଏନ୍ଧ ପ୍ରାପ୍ତେ ଅନ୍ଧନଣ କରୁଥିବ ଲସ୍ତେ ।
ଏଣୁ ତାର ସିଦ୍ଧବାଣୀ ହୋଇବ ଯେ କସ୍ତେ । ୨୯ ।
ଏମନ୍ତ ହୋଇଣ ଚଉଷଠି ଛନ୍ତି ଗୋଈ ।
ବେଦ ମନ୍ତ୍ର ବୁଝି ବ୍ରହ୍ମା ପୂଜାକରେ ତନ୍ଧି । ୩୦ ।
ଭୁଭୁବସ୍ୱ ମନ୍ଧ ଜଗଣ ଭଜନ ।
ଜନ ତପ ସତ୍ୟ ଆପଜ୍ୟୋ୍‌ଽ ଲଗା ଧ୍ୟାନ । ୩୧ ।
ରସୋଽମୃତ ବ୍ରହ୍ମଗୁରୁ ଅନନ୍ତ ଆଚୋଣ ।
ଭୂବୋସ୍ୱରେଁ ଦସ୍ତାକର ଏମନ୍ତ ଧୂମର । ୩୨ ।
କାମନା କରିବ ସିଦ୍ଧ ନାମ ମନ୍ତ୍ର ଜପି ।
କାମନାଗାସ୍ୱତ୍ରୀ ଅନ୍ଧନ ଶ୍ରୀ ମନେ ଚ୍ଛାପି । ୩୩ ।
ଶ୍ରୀରାଧିକାଯୈ ବିଦ୍ମହେ ପୁଷ୍ପବାଣାୟବେ ।
ଧୀମହି ତନ୍ନୋରାଧା ପ୍ରଚୋଦୟ ତରେ । ୩୪ ।

---

୨୭—୧ ବନ୍ଧଲେ (କ),
୩୨—୧ ବ୍ରହ୍ମଭୁ ସୋଽହଂହଂସଭୁ ଆଚୋଣ (ଖ),
୩୨—୨ ଭୁଭୁବ ସ୍ୱରେଁ କର ଏମନ୍ତ ଯେ କର (ଖ),
୩୪—୧ ଶ୍ରୀଓଂ ରାଧିକାସ୍ୱ (କ.ଖ)

ଏ କାମଗାୟତ୍ରୀ ଜପ କଲେ ଭକ୍ତି ପାଇ ।
ଶ୍ରିୟଂ ଅର୍ଦ୍ଧ ସୂକ୍ଷ୍ମ ସାଧୁ ବୈଷ୍ଣବ ଭଜଇ । ୩୫ ।
ହରେ କୃଷ୍ଣ ରାମ ଯେ ଅଜପା ଆଠକ୍ଷର ।
ଗାୟତ୍ରୀ ଚବିଶକ୍ଷର ବୃଦ୍ଧିବ ବିସ୍ତର । ୩୬ ।
ଛନ୍ଦବନ୍ଧ ବ୍ରହ୍ମା ଯେ ଗାୟତ୍ରୀମନ୍ତ୍ର ଶୁଣ ।
କାମ ଯେ ଗାୟତ୍ରୀ ମିଶି ଏ ଛନ୍ଦରେ ପୁଣ । ୩୭ ।
ବଢଣ କୋଠି ଧରଣ ଯନ୍ତ୍ରକୁ ଲେଖିବ ।
ବନ୍ଦନ ପୂଜା ଦେଇଣ ଶିଷ୍ୟକୁ କହିବ । ୩୮ ।
ଗାୟତ୍ରୀଛନ୍ଦକୁ କର ବଢଣ ବଢଣ ।
ଶିଷ୍ୟର ହୃଦକୁ ଧନ୍ଦ ଫିଟିବ ସନ୍ଦେଶ । ୩୯ ।
ବ୍ରହ୍ମଗାୟତ୍ରୀଙ୍କ ଯେ ପାଞ୍ଚସ୍ୱର ଧର ।
ଛଅସ୍ୱର ଧଇଲେ ଟଳଣ ହେବ ସର । ୪୦ ।
ଓଁ କାରକୁ ବସାଇଣ ସବୁକୁ ଧରିବ ।
ଶିଷ୍ୟ ଯେ ଦର୍ଶନକର ମନବୋଧ ହେବ । ୪୧ ।
ପାଞ୍ଚସ୍ୱର ଯେ ଧରିବ ଗାୟତ୍ରୀକାମକୁ ।
ଟଳଣ ହେବ ପଟଣ ଶ୍ରିୟଂ ବେଦଠାକୁ । ୪୨ ।
ଉତ୍ତମ ବାର ଯେ ଘଡ଼ି ଯୋଗ ବୃଦ୍ଧିକର ।
ଗୁହ୍ୟ କର ଉତ୍ତମଶିଷ୍ୟକୁ ବିସ୍ତର । ୪୩ ।
ରବିବାରେ ନିଷେଧ ଅଟଇ ଦୀକ୍ଷା ପୁଣ ।
ଶନିବାରେ ନ କରିବ ଶିଷ୍ୟଦୀକ୍ଷାଗଣ । ୪୪ ।
ସୋମବାର ଦିନ ବିଧି ମନେ ହେତୁକର ।
ଶିଷ୍ୟଦୀକ୍ଷା ହେତୁଗୋଟି ମନରେ ବିଚାର । ୪୫ ।
ପ୍ରଭାତୁ ପ୍ରହରେ ସୋମବାରରେ ନ ଦେବ ।
ପ୍ରହରେ କେ ଦେଲେ ଶିଷ୍ୟ ମୂଢ଼ମତି ହେବ । ୪୬ ।
ପ୍ରହରେକ ଉତ୍ତାରେଣ ଅଷ୍ଟଘଡ଼ି ଭଲ ।
ନାମେ ସୁଖୀ ଶିଷ୍ୟ ପୁଣ ହୁଅଇ ଅମୂଲ୍ୟ । ୪୭ ।

ଦ୍ୱାଦଶଘଡ଼ି ଉପରୁ ପ୍ରହରେ ଯେ ମନ୍ଦ ।
ଏଥିରେଣ ଦୀକ୍ଷା ଦେଲେ ଶିଷ୍ୟ ଜଡ଼ ଅନ୍ଧ । ୪୮ ।
ସୋମବାରେ ସନ୍ଧ୍ୟାକାଳେ ପ୍ରହରେ ଉତ୍ତମ ।
ଶିଷ୍ୟ ପ୍ରେମଭକତରେ ହୁଅଇ ଉଦ୍ୟମ । ୪୯ ।
ପ୍ରହର ଉପରେ ଛଅ ଘଡ଼ି ମନ୍ଦ ହୋଇ ।
ଏଯୋଗରେ ଦୀକ୍ଷାଦେଲେ ମୂଢ଼ ବୁଦ୍ଧି ହୋଇ ।୫୦।
ଦଶଘଡ଼ି ଉପରେ ଯେ ଛଅଘଡ଼ି ଭଲ ।
ଏକାଳେ ଦୀକ୍ଷା ଘେନିଲେ ମନ ସମତୁଲ ।୫୧।
ସପ୍ତଦିବା ସୋମବାରେ ଏମନ୍ତ ବୁଝିବ ।
ଏହା ନ ଜାଣିଲେ ଗୁରୁ ଜ୍ଞାନ ହୀନ ହେବ ।୫୨।
ମଙ୍ଗଳବାରଦିବାରେ ପ୍ରସଙ୍ଗେ ନିଷେଧ ।
ଏ ଯୋଗେଣ ଦୀକ୍ଷାଦେଲେ ଦରିଦ୍ର ଯେ ଅନ୍ଧ ।୫୩।
ବେନିଘଡ଼ି ଉପରେଣ ଭଲ ଆଠ ଘଡ଼ି ।
ଗୁରୁପାଦୁଁ ଶିଷ୍ୟମନ ନ ଯାଇ ସେ ଛାଡ଼ି ।୫୪।
ଦଶଘଡ଼ି ଉପରେଣ ଛଅ ମନ୍ଦ ହୋଇ ।
ଶିଷ୍ୟକଣ୍ଠେ ଦୀକ୍ଷାଦେଲେ ଦୁଃଖ ଯୋଗ ଥାଇ । ୫୫ ।
ମଙ୍ଗଳସନ୍ଧ୍ୟାରେ ପୁଣ ଅଟଇ ନିଷେଧ ।
ଦୀକ୍ଷାଦେଲେ ଗୁରୁଅଙ୍ଗେ ପଡ଼ଇ ଯେ ବାଧ । ୫୬ ।
ପ୍ରହର ଉପରେ ଆଠଘଡ଼ି ଭଲ ହୋଇ ।
ଦୀକ୍ଷା ଦେଲେ ଶିଷ୍ୟକଣ୍ଠେ ଗୁରୁ ସୁଖୀ ହୋଇ । ୫୭ ।
ଦ୍ୱାଦଶଘଡ଼ି ଉପରେ ପ୍ରହରେ ଯେ ମନ୍ଦ ।
ଏ ଯୋଗେଣ ଦୀକ୍ଷାଦେଲେ ଶିଷ୍ୟଅଙ୍ଗେ ବାଧ । ୫୮ ।
ମଙ୍ଗଳବାରର ବିଧି ଅଟଇ ଏମନ୍ତ ।
ଗୁରୁଶିଷ୍ୟକଥା ବଡ଼ ପରମାଦ ମତ । ୫୯ ।

---

୫୩—୨ ଦରିଦ୍ର ଯେ ଅନ୍ଧ (ଖ);

ବୁଧବାରେ ବେଳଘଡ଼ି ପ୍ରହରେ ଉତ୍ତମ ।
ଭଜନ ଦୃଢ଼ ନିର୍ମଳ ହୋଏ ତାର ମନ । ୭୦ ।
ବେଳଘଡ଼ି ଉତ୍ତରେଣ ଛଡଘଡ଼ି ନାହିଁ ।
ଏ ଯୋଗେଣ ଦୀକ୍ଷା ଦେଲେ ଜଡମତି ହୋଇ । ୭୧ ।
ଦିବସ ଅର୍ଦ୍ଧଠାବରୁ ଆଠ ଘଡ଼ି ଭଲ ।
ଏ ଯୋଗରେ ଦୀକ୍ଷାଦେଲେ ସେବା କରେ ତୁଲ । ୭୨ ।
ବୁଧବାରେ ସବେ ଛଡଘଡ଼ି ଯେ ନ ଦେବ ।
ଏମନ୍ତ କାଳେଣ ଦେଲେ ଶିଷ୍ୟ ନ ସେବିବ । ୭୩ ।
ଛଡଘଡ଼ି ଉତ୍ତରେଣ ଆଠ ଭଲ ହୋଇ ।
ଏ ଯୋଗେଣ ଦୀକ୍ଷା ଦେଲେ ମନ ଦୃଢ଼ ହୋଇ । ୭୪ ।
ଚଉଦ ଘଡ଼ି ଉତ୍ତରୁ ବେଳଘଡ଼ି ମନ୍ଦ ।
ବୁଧବାର ଦିବାନିଶି ଏମନ୍ତ ଯେ ଛନ୍ଦ । ୭୫ ।
ଗୁରୁବାର ଦିବସରେ ଛ ଘଡ଼ି ନିଷେଧ ।
ଛଡଘଡ଼ି ଉତ୍ତରେ ଯେ ଛଡଘଡ଼ି ଶୁଦ୍ଧ । ୭୬ ।
ଦ୍ୱାଦଶଘଡ଼ି ଉତ୍ତରୁ ଗୁଣଘଡ଼ି ନାହିଁ ।
ସନ୍ଧ୍ୟା ଗୁଣଘଡ଼ି ପୁଣି ନିଷେଧ ଅଟଇ । ୭୭ ।
ସନ୍ଧ୍ୟା ଗୁଣ ଉତ୍ତରେଣ ଆଠଘଡ଼ି ଭଲ ।
ଶିଷ୍ୟ ଦୀକ୍ଷା ଘେନିଲେ ଯେ ହୁଅଇ ଅମୂଲ୍ୟ ୭୮ ।
ଦ୍ୱାଦଶ ଉତ୍ତରୁ ଗୁଣଘଡ଼ି ଯେ ନ ଦେବ ।
ଏହୁକାଳେ ଦୀକ୍ଷା ଦେଲେ ଗୁରୁ ଦୁଃଖୀ ହେବ । ୭୯ ।
ଶୁକରବାର ପ୍ରଭାତ୍ ଛଡ଼ି ସିଦ୍ଧ ଘଡ଼ି ।
ଦୀକ୍ଷା ଦେଲେ ଗୁରୁପାଦେ ଶିଷ୍ୟ ଥାଇ ନଡ଼ି । ୭୦ ।
ଛଡ଼ ଉତ୍ତରିଲେ ଛଡ଼ ଘଡ଼ି ମନ୍ଦ ହୋଇ ।
ଏ ଯୋଗେ ଦୀକ୍ଷା ଘେନିଲେ ଦରିଦ୍ର୍ୟ ଲଭଇ । ୭୧ ।
ଦ୍ୱାଦଶ ଉତ୍ତରୁ ଦଶଘଡ଼ି ଭଲ ହୋଇ ।
ଏ ଯୋଗେଣ ଦୀକ୍ଷା ଦେଲେ ଶିଷ୍ୟ ସୁଖୀ ପାଇ । ୮୨ ।

ଦଣ୍ଡଘଣ୍ଟ ହସ୍ତେଣ ଛଡ଼ଘଣ୍ଟ ମନ୍ଦ ।
ଛଡ ହରୁଥିଲେ ଘଣ୍ଟଘଣ୍ଟ ଶୁଦ୍ଧ ହେବ । ୭୩ ।
ବାର ଯୋଗମାନଙ୍କରେ ଏମନ୍ତ ଅଛଇ ।
ଏ ଭେଦ ନ ଜାଣି ଯେବେ ଶିଷ୍ୟ କର ଯାଇ । ୭୪ ।
ଅତମଣ ବଥାମାନ ଗୁରୁଙ୍କୁ ହୁଅଇ ।
ଶିଷ୍ୟବୃନ୍ଦି ସ୍ବଭାବତ ମୂଢ଼ମତ ସେହୁ । ୭୫ ।
ଅନେକପ୍ରକାରେ ଗୁରୁ ଶିଷ୍ୟଙ୍କୁ କହିଲେ ।
ଶିଷ୍ୟର ଭଗବନ୍ତ ହୁଅଇ ଯେ ଭଲେ । ୭୬ ।
ଗୁରୁଶିଷ୍ୟ ଅଭେଦଟି ବେଗଲ ନୁହଇ ।
ନୀରକ୍ଷୀର ପ୍ରାୟେ ଯେବେ ମନ ମଜ୍ଜି ଥାଇ । ୭୭ ।
ଚରଣ ସ୍ପର୍ଶିବ ଗୁରୁ ସୁହୃଦ ମନେଣ ।
ଫଳପୁଷ୍ପ ଯେ ମିଳିବ ସୁଖେ ଦେବ ପୁଣ । ୭୮ ।
ପ୍ରଭାତେଣ ଗୁରୁରୂପ ସୁମରିବ ଚିତ୍ତେ ।
ଗୁରୁଙ୍କୁ ଯେ ଭଜୁଥିବ ହୃଦରେ କରତେ । ୭୯ ।
ଗୁରୁଙ୍କୁ ଭଜିଲେ ଯେ ଶ୍ରୀକୃଷ୍ଣ ଭକ୍ତି ପାଇ ।
ଗୁରୁ ନ ସେବିଲେ ଯେ ଭଗବଦ୍ଧାନ ହୋଇ । ୮୦ ।
ଅଗତ କି ଗତି ପିତା ଗୁରୁ ଅଟେ ପୁଣ ।
ହରିନାମ ଗୁରୁ ପୁଣ ଦିଅନ୍ତି ଶ୍ରବଣ । ୮୧ ।
ହରିର ନାମକୁ ପୁଣି ତୁଲ ନୁହେ କିଛୁ ।
ଏଣୁକରି ମୂଳବୃକ୍ଷ ଗୁରୁଙ୍କୁ ଲେଖିଛୁ । ୮୨ ।
ସଂସାରେ ଯେତେକ ଦ୍ରବ୍ୟ ଅଛଇଟି ପୁଣ ।
ନାମକୁ ଯେ ସମତୁଲ ନୁହନ୍ତିଟି ଜାଣ । ୮୩ ।
ପୂର୍ବଜନ୍ମ ଭାଗ୍ୟଥିଲା ଗୁରୁସେବା କଲା ।
ନାମ ହୃଦେ ଜପିଲେ ସଂସାରେ ହେବ ଭଲ । ୮୪ ।
ସ୍ତ୍ରୀ କି ବା ପୁରୁଷ ନର ଜନ୍ମ ହେବ ମସ୍ତ ।
କୃଷ୍ଣ ଯେ ଭଜିବ ସର୍ବବର୍ଣ୍ଣେ ଶ୍ରେଷ୍ଠ ହୋଇ । ୮୫ ।

ଶ୍ୱପଚ ବ୍ରାହ୍ମଣ ଯେବେ କୃଷ୍ଣ ଆଶ୍ରେ କରେ ।
ସେ ଜନଙ୍କୁ ଦେଖିଲେ ସକଳ ପାପ ହରେ । ୮୬ ।
ଶତେକସହସ୍ର ଶାଳଗ୍ରାମ ଦେଖିଲାର ଫଳ ।
ବାରକୋଟି ବିପ୍ର ଦରଶନେ ଅଟେ ତୁଲ । ୮୭ ।
ଶତେ ଶମ୍ଭୁ ଦରଶନ ପୁଣ୍ୟଫଳ ପାଇ ।
ନାମ ଆଶ୍ରେ କଲା ପ୍ରାଣୀ ବର୍ଣ୍ଣଶ୍ରେଷ୍ଠ ହୋଇ । ୮୮ ।
ସକଳ ବର୍ଣ୍ଣରୁ ସେ ତ ହୁଅନ୍ତି ବାହାର ।
ଅଚ୍ୟୁତ ସେ ଜାତିଗୋତ୍ର ଅଟଇ ତାହାର । ୮୯ ।
ଶ୍ରୀକୃଷ୍ଣର ପାଦପଦ୍ମ ଅଟଇ ତା ଧନ ।
ସକଳ ଭରସା କରିଥାନ୍ତି ପାଦେ ଥାନ । ୯୦ ।
ବାଞ୍ଛାବୃତ୍ତି ଆଶା ସେହୁ ଚରଣଙ୍କୁ କରି ।
ଦୁଃଖ ସୁଖ ଜାଣନ୍ତି ସେ ପାଦପଦ୍ମ ଧରି । ୯୧ ।
ଅଚ୍ୟୁତ ଗୋତ୍ରରେ ତୁମ୍ଭେ ପଶିଲ ଶରଣ ।
ଆଶ୍ରେ ଏକା କରିଥିବ ଶ୍ରୀରଙ୍ଗାଚରଣ । ୯୨ ।
ରାମଚନ୍ଦ୍ର ଦାସଙ୍କର ସଙ୍ଗ ଆଶ୍ରେ କର ।
ଦ୍ୱାଦଶ ଗୋପାଳ ତୁମ୍ଭେ ଅଟ ଶ୍ରେଷ୍ଠସାର । ୯୩ ।
ମୁକୁନ୍ଦ ଅନନ୍ତ ବତ୍ସ ସୁଦାମ ଶୁଣିଲ ।
ମନ୍ତ୍ର ଯନ୍ତ୍ର ବୁଝିବାର ମନ ହେଲୁ ଭଲ । ୯୪ ।
ସଦଗୁରୁ ଆଶ୍ରେ କଲ ମନ୍ତ୍ର ଯନ୍ତ୍ର ପାଇଁ ।
ସଦଗୁରୁ ନ ସେବିଲେ ହେଉ ହେବ କାହିଁ । ୯୫ ।
ଚୈତନ୍ୟାବତାର ସତ୍ୟଚନ୍ଦ୍ରହସ୍ତେ ଦୟା କରେ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ହେଉ ସମାଧି ସୁମରେ । ୯୬ ।
ଅବାଡ଼ ବାଜିବା ହେତୁ ଛାୟା ଦରଶନ ।
ପଞ୍ଚାକ୍ଷର ଅଷ୍ଟାକ୍ଷର କରନ୍ତି ଭଜନ । ୯୭ ।
ଅଷ୍ଟାକ୍ଷର ଷୋଡଶ ଯେ ଛଡ଼ାକ୍ଷର ଜପି ।
କୃଷ୍ଣମନ୍ତ୍ର ଠାକୁରାଣୀମନ୍ତ୍ର ହୃଦେ ସ୍ଥାପି । ୯୮ ।

ଚଇତନ୍ୟମନ୍ତ୍ର କାମଗାୟତ୍ରୀ ଭଜନ ।
ପଞ୍ଚନାମ ହୃଦୟରେ କରନ୍ତି ସାଧନ ।୯୯।
ଅଙ୍ଗନ୍ୟାସ କରନ୍ୟାସ ଷଡ଼ାଙ୍ଗ କପଚ ।
ମାତୃକା ଯେ ଭୂତଶୁଦ୍ଧି ହୃଦେ କର ଜପ ।୧୦୦।
ଗୀତା ଭାଗବତ କାବ୍ୟ ପୁରାଣେ ବଖାଣି ।
ଓଁକାର ଅକ୍ଷର ଭେଦ ପାରନ୍ତି ଯେ ଜାଣି ।୧୦୧।
ଜଳାକଳସ୍ୱଭେଦେ ପଢ଼ିଥା'ନ୍ତି ଯେଉଁ ଜନ ।
ଏତେ ଗୁଣ ଯେ ଜାଣନ୍ତି ସେହୁ ଭକ୍ତଜନ ।୧୦୨।
ଏ ଜନ ସଙ୍ଗରେ କ୍ଷଣେ ଦଣ୍ଡେ ଯେବେ ବସି ।
ପାତକମାନେ ଯେ ହୃଦୁଁ ପଳାଅନ୍ତି ଖସି ।୧୦୩।
ପୂର୍ବଜନ୍ମ ଭାଗ୍ୟ ଥିଲେ ଏ ଗୁରୁ ମିଳଇ ।
ପାପ ଘଟ ବୋଲି କହ ଏ ଜନଙ୍କୁ କହ ।୧୦୪।
ଏହା ଯେ ନ ସାଧେ ସେହୁ କଷାମାଟି ଘଟ ।
ଭବ ମାୟା ମୋହ ଭ୍ରମ କରନ୍ତି ମୁରଟ ।୧୦୫।
ମୋହମାୟାବଳରେ ମୁଁ ବୁଡ଼ି ହେଲ ବଣା ।
ଏ ଜନପାଦକୁ ଧାଇ ଅଚ୍ୟୁତ ଭଜନା ।୧୦୬।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ପଞ୍ଚଚତ୍ୱାରିଂଶତ୍ ଛନ୍ଦ ।



## ଷଟ୍‌ଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ବାଳକ ବସ୍ତ୍ର କହୁବା ବଚନ ।
ମୁକୁନ୍ଦ ଅନନ୍ତ ଦାସ ସୁଦାମ ହେ ଘେନ ।୧।
ପ୍ରେମମନ୍ତ୍ର ଭଜିଲେ ଶ୍ରୀକୃଷ୍ଣଭକ୍ତି ପାଇ ।
ଚନ୍ଦ୍ରାମଣି ସ୍ଥାନ ପୁଣ ସେ ଜନ ଲଭଇ ।୨।
କ୍ଷଣେ ଦଣ୍ଡେ ସେହୁ ମନ୍ତ୍ର ଜପି ଧ୍ୟାନ କର ।
ସଂସାରତାପର ପାପ ନ ଥିବ ଶରୀର ।୩।
ମନ୍ତ୍ରମତ୍ତ ଜନ ଆମ୍ଭେ ଅଜ୍ଞା ହେଉ ପୁଣ ।
ଶ୍ରୀଗୁରୁ ପରମଗୁରୁ ମୁଖରେ ପ୍ରମାଣ ।୪।
ଶ୍ରୀଗୁରୁ ପରମଗୁରୁ ଭଜନର ସାର ।
ଲୋଚନପଥରେ ଦରଶନ କରନ୍ତର ।୫।
ପୂର୍ବଜନ୍ମ ଭାଗ୍ୟ ଥିଲା ଦର୍ଶନ ଲଭିଲୁ ।
ଶ୍ରୀକୃଷ୍ଣ ଭଜନ ମନ୍ତ୍ର ଶ୍ରବଣେ ଶୁଣିଲୁ ।୬।
ମନ୍ତ୍ରଭେଦ ମନେ ଘେନ ହେତୁ ମନ ଦେଇ ।
ଯନ୍ତ୍ର ମନ୍ତ୍ର ବିଧି ପୁଣ କେମନ୍ତ ଅଟଇ ।୭।
ବେଳ ପାଞ୍ଚ ଧରିବ ଯେ ଦଶ କୋଠି ହେବ ।
ପ୍ରେମମନ୍ତ୍ର ଗୋଟି ତଥି ମଧ୍ୟରେ ଲେଖିବ ।୮।
ରାଧା ରାଧା ଆଦ୍ୟାକ୍ଷର ପାଞ୍ଚ ପୁଣ ଧର ।
ରାଧା ରାଧା କୃଷ୍ଣ ବୋଲ ଏ ଦଶ ଅକ୍ଷର ।୯।
ଏ ଯନ୍ତ୍ର ଲେଖିଣ ବସ୍ତ୍ରପୂଜା ପୁଣ ଦେଇ ।
ଶିଷ୍ୟଙ୍କୁ କହିଲେ ଗୁରୁ ଉଗତ ସେ ପାଇ ।୧୦।
ରାଧା ରାଧା ବ୍ରତାକ୍ଷର ଅର୍ଦ୍ଧାଙ୍ଗେଣ ବନ୍ଦ ।
ରାଧା ରାଧା ବ୍ରତାକ୍ଷର ଓଁକାରେଣ ଛନ୍ଦ ।୧୧।

---

୧୧—୧ ଅର୍ଦ୍ଧାଙ୍ଗେଣ ବନ୍ଧ (କ);

କୃଷ୍ଣ ବୋଲି ବେଦାକ୍ଷର ବିନ୍ଦୁରେ ବସାଇ ।
ପ୍ରେମ ମନ୍ତ୍ର ଯନ୍ତ୍ର ତନ୍ତ୍ର ଏମନ୍ତ ଅଟଇ ।୧୨।
ଶିଷ୍ୟଙ୍କୁ ଉତ୍ତମ ଯୋଗେ ଏହୁ ମନ୍ତ୍ର ଦେବ ।
ଶୁକ୍ଳପକ୍ଷ ଯେ କୃଷ୍ଣପକ୍ଷ ବୁଝି ଥିବ ।୧୩।
କୃଷ୍ଣପକ୍ଷ ନିଷେଧର କଥାମାନ ଶୁଣ ।
ତୃତୀୟା ତିଥିରେ ମନ୍ଦଯୋଗ ହୋଏ ପୁଣ ।୧୪।
କୃଷ୍ଣପକ୍ଷ ଦଶମୀ ଯେ ତିଥିରେ ନ ଦେବ ।
ଏ ଯୋଗରେ ଦୀକ୍ଷା ଦେଲେ ଶିଷ୍ୟ ନ ସେବିବ ।୧୫।
କୃଷ୍ଣପକ୍ଷ ସପ୍ତମୀ ଦିବସରେ ଯେ ମନ୍ଦ ।
ଏହୁ କାଳେ ଦୀକ୍ଷା ଦେଲେ ମୃତ୍ୟୁମନ୍ତ ଛନ୍ଦ ।୧୬।
କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନରେ ନ ଦେବ ।
ଏ ଚାରିଦିନ ଏ ପକ୍ଷେ ନିଷେଧ କହିବ ।୧୭।
ଶୁକ୍ଳପକ୍ଷ ଚତୁର୍ଥୀ ତିଥିରେ ନ ଦେବ ।
ଏ ଯୋଗେଣ ଦୀକ୍ଷା ଦେଲେ ଅଙ୍କୁର ବୁଡ଼ିବ ।୧୮।
ନ ଦେବ ଶୁକ୍ଳ ଏକାଦଶୀ ତିଥିଠାରେ ।
ଦୀକ୍ଷା ଦେଲେ ଶିଷ୍ୟ ପୁଣ ସେବା ଯେ ନ କରେ ।୧୯।
ଦିବସେ ଶୁକ୍ଳପକ୍ଷେ ଅଷ୍ଟମୀ ନ ଦେବ ।
ଗୁରୁ ଶିଷ୍ୟ ଉଭୟ ଯେ ବିଡ଼ମ୍ବଣ ହେବ ।୨୦।
ପୂର୍ଣ୍ଣମୀ ଦିବସେ ପୁଣ ଦୀକ୍ଷା ଯେ ନ ଦେଇ ।
ଏହି ଅଷ୍ଟଦିନ ପୁଣ ନିଷେଧ ଅଟଇ ।୨୧।
ତୃତୀୟା ଦଶମୀ ଦିନ ଦିବସରେ ଦେବ ।
ସପ୍ତମୀ ଚତୁର୍ଦ୍ଦଶୀ ଯେ ଶୁଭେ ଭଲ ହେବ ।୨୨।
କୃଷ୍ଣପକ୍ଷ ତିଥି ପୁଣ ଏମନ୍ତ ଅଟଇ ।
ଗୋପସୁତ ଗୁରୁଦେବେ ବୁଝି ମନ ଦେଇ ।୨୩।
ଏକାଦଶୀ ଚତୁର୍ଥୀ ଯେ ଦିବସେ ଉତ୍ତମ ।
ଅଷ୍ଟମୀ ପୂର୍ଣ୍ଣମୀ ଶୁଭେ ଦେବ ହରିନାମ ।୨୪।

ଗୁରୁଙ୍କର ବାକ୍ୟ ପୁଣ ମନ୍ତ୍ର ଅଟଇ ।
ତୁମ୍ଭଙ୍କୁ କହିଲୁ ହେତୁ ଅଙ୍କୁରିବା ପାଇଁ ।୧୫।
କରଯୋଡ଼ି ଜଣାଉଛନ୍ତି ଗୁରୁଦେବ ପୁଣ ।
ଏହା ଜାଣି ସଂସାରେ ଅଛନ୍ତି ପ୍ରାଣୀଜନ ।୧୬।
ଶୁଣ ଆହେ ଗୋପସୁତ ଭଗତ ବତ୍ସର ।
କୋଟିକେ ଗୋଟିଏ ପୁଣ ଅଛନ୍ତି ସଂସାର ।୧୭।
ପଣ୍ଡିତ ପୁରୁଷ ଏକ ଏକ ଠିନା ଥାଏ ।
ସହସ୍ରେ ମୂରୁଖ ତାଙ୍କ ସମତୁଲ ନୋହେ ।୧୮।
ଏକ ସ୍ୱର୍ଣ୍ଣ ଗୋଟିକକୁ ପଥର ଲେଖ୍ୟଏ ।
ମୂଲ କଲେ ସେ ପୁଣ ଯେ କସତୁଲ ନୋହେ ।୧୯।
ମୁକୁତା ଗୋଟାକୁ ଗରଗଡ଼ ଯେ ଲେଖ୍ୟଏ ।
ଲକ୍ଷ କଲେ ସେ ପୁଣ ଯେ କେଉଁ କାର୍ଯ୍ୟ ହୋଏ ।୨୦।
ହରିର ସେ ଯେଉଁ ଜନ ଦିନେ ମଧ୍ୟେ ଥାଇ ।
ତାହାର ସୁଫଳ ଜନ୍ମ ମୁଖେ କେବା କହୁ ।୨୧।
ତିନି ଭୁବନରେ ସା'ର ସେ ଜନ ଅଟଇ ।
ସେ ଜନ ଦର୍ଶନ କଲେ ଫଳ ଅନ୍ତ ନୋହି ।୨୨।
ହରିଭକ୍ତ ଜନ ଯଦି ପ୍ରତ୍ୟୁଷରୁଁ ଦର୍ଶନ ।
ସେ ଦିନର ପାତକ ଯେ ହୁଅଇ ଦହନ ।୨୩।
କର୍ଣ୍ଣଦୀକ୍ଷା ଗୁରୁ ଯଦି ପ୍ରତ୍ୟୁଷରୁ ଦର୍ଶନ ।
କୃଷ୍ଣ ଦରଶନରୁ ପୁଣ୍ୟ ଅଧିକ ଯତନ ।୨୪।
ଦିବା ଅର୍ଦ୍ଧେ ପୁଣ ଯଦି ଦର୍ଶନଟି ପାଇ ।
ସେ ଦିନର ଫଳ ପୁଣ ଅନ୍ତ କରି ନୋହି ।୨୫।
ଗୁରୁଙ୍କ ଦର୍ଶନ ଯଦି ସନ୍ଧ୍ୟା କାଳେ ହୁଏ ।
କୋଟିତୀର୍ଥ ଜଳର ଯେ ଫଳ ପୁଣି ପାଏ ।୨୬।
ରାତ୍ରାର୍ଦ୍ଧେ ଗୁରୁ ଯଦି ଦର୍ଶନଟି କର ।
କୋଟି ସ୍ୱର୍ଣ୍ଣଦାନ ପୁଣ ନୋହେ ସମସର ।୨୭।

ଗୁରୁମୁଖେ ଶ୍ଳୋକ ଦେଲେ ଅନ୍ୟ କେବା କରି ।
ଶତେ ଶମ୍ଭୁ ଶତେ ବିପ୍ର ପୁଣ୍ୟଫଳ ସରି ।୩୮।
ବସ୍ତ୍ର ଅଳଙ୍କାର ସବୁ ଗୁରୁଅଙ୍ଗେ ଦେଇ ।
ମୃତ୍ୟୁଅନ୍ତେ ଦେହ ହେଲେ ଦୁଃଖଯୋଗ ନୋହି ।୩୯।
କୃଷ୍ଣମନ୍ତ୍ର କୃଷ୍ଣଭକ୍ତି ପ୍ରାପ୍ତେ ମଣ ଚିତ୍ତ ।
କୃଷ୍ଣ ଗୁରୁ ବୈଷ୍ଣବ ତିନ ଏକ ମତ ।୪୦।
ମନ୍ତ୍ରଜପ ଗୁରୁସେବା ବୈଷ୍ଣବେ ବିଶ୍ୱାସ ।
ଜିଣେ ଷଡ଼ ଇନ୍ଦ୍ରି ଜାତ ହୋଇଲେ ତ ଦାସ ।୪୧।
ଭେଖ ବନ୍ଧ ଛଡ଼ମୁଣ କଥା ସବୁ କରି ।
ବୈଷ୍ଣବପଥିକୁ ସେହୁ ଅଟନ୍ତି ବଇରି ।୪୨।
ଗୁରୁଧର୍ମ୍ମ ବୃନ୍ଦାବନ ଆପଣେ ଯେ ଜାଣ ।
ଇହଲୋକେ ପରଲୋକେ ହୁଏ ଉପହାସ ।୪୩।
ଇହଲୋକ ଜନମାନେ କରନ୍ତି ତମାସା ।
ପରଲୋକେ ଯମ ନେଇ ଦିଅଇ ଶାସ୍ତି ।୪୪।
ଗୁରୁଆଜ୍ଞା ଏଣୁ କରି ମନେ ଧରିଥିବ ।
ପାମର ଅଚ୍ୟୁତ କହେ କୃଷ୍ଣ ହୃଦେ ଭାବ ।୪୫।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ଷଟ୍‌ଚତ୍ୱାରିଂଶତ ଛାନ୍ଦ

---

# ସପ୍ତଚତ୍ୱାରିଂଶତ୍ ଛାନ୍ଦ

ଶୁଣ ହେ ଚନ୍ଦ୍ରଶ ଗୋପ ପଞ୍ଚନାମ କଥା ।
ପଞ୍ଚନାମ ମହାମନ୍ତ୍ର ଜପର ବ୍ୟବସ୍ଥା ।୧।
କୃଷ୍ଣ କୃଷ୍ଣ ଗୋବିନ୍ଦ ଯେ ସପ୍ତାକ୍ଷର କହ୍ନ ।
ରାଧେ କୃଷ୍ଣ ଚରୁରରେ ପଞ୍ଚନାମ ହୋଇ ।୨।
ମଣ୍ଡଳ ଗୋଟିଏ ବେଢ଼ାଇବ ଯେ ଏତନ ।
ବ୍ଳଶଦରେ ବ୍ଳୁଶ ଯେ ମଣ୍ଡଳ କର ସ୍ଥାନ ।୩।
ଗୋବିନ୍ଦ ବୋଲିଣ ତିନି ଅକ୍ଷର ଉପର ।
କୃଷ୍ଣ କୃଷ୍ଣ କୃଷ୍ଣ ଛଡ଼ ଢନଠାରେ ଧର ।୪।
ରାଧେ ବୋଲି ବେଦାକ୍ଷର ମଧ୍ୟରେ ବସିବ ।
ଯନ୍ତ୍ରଗୋଟି ବନ୍ଧିଲେ ଯେ ଶିଷ୍ୟ ହେତୁ ହେବ ।୫।
ଧେ କୁ ଓଁକାରେ ଦେଇ ରାଆକୁ ଅର୍ଦ୍ଧରେ ।
କୃଷ୍ଣ ଯେ ଗୋବିନ୍ଦ ନବ ଅକ୍ଷର ଶବ୍ଦରେ ।୬।
ପଞ୍ଚାକ୍ଷର ଦେଇ ଯନ୍ତ୍ର ତନ୍ତ୍ର ବୁଝାଇବ ।
ମନ୍ତ୍ରମୁଖେ ଶିଖାଇଲେ ଶିଷ୍ୟ ବୋଧ ହେବ ।୭।
ପଞ୍ଚ ମହାପାତକ ଏ ନାମେ କ୍ଷୟ ହୋଇ ।
ଗୋବିନ୍ଦନାମେ ଗୋହତ୍ୟା ପାତକ ହରଇ ।୮।
ବ୍ରହ୍ମହତ୍ୟାପାତକ ଯେ କୃଷ୍ଣନାମେ ହରେ ।
କୃଷ୍ଣନାମ ସୁମରିଲେ ବିଷ୍ଣୁଲୋକୁ ତରେ ।୯।
କୃଷ୍ଣନାମ ସୁମରଣ ମାତୃଦୋଷ ହର ।
ରାଧେନାମ ଶୁଣିଣ ଯେ ସୁରାପାଁ ତର ।୧୦।
ଯେତେ ପାପମାନ ଯେତେ ପ୍ରାଣୀ କରିଥାନ୍ତି ।
ସେ ଜନକୁ ଏ ମନ୍ତ୍ର ଯେ କୁଠାର ହୁଅନ୍ତି ।୧୧।

ହେତୁ କରି ଯେଉଁ ଜନ ପାପ କରୁଥାନ୍ତି ।
ଏ ମନ୍ତ୍ର ଜପିଲେ ପାପ ଛୁଟିବ ବୋଲନ୍ତି ।୧୨।
ଏଥିର ପ୍ରମାଣ ଗୁରୁ କହିବା ବସ୍ତୁର ।
ଶ୍ରୀମୁଖୁଁ ଶୁଣିଲେ ମନ ହୋଇବାକ ଥିର ।୧୩।
ଶୁଣ ହେ ଭଗତଶିଷ୍ୟ ନରଜନ୍ମ କଥା ।
ଏ ଭବସଂସାର ବଡ଼ ଅଟଇଟି ବ୍ୟଥା ।୧୪।
ଅଣହେତୁ ମତେ ଯେବେ ପାପ କରିଥାଇ ।
ମନ୍ତ୍ର ଜପ କଲେ ସିନା ପାପ କ୍ଷୟ ହୋଇ ।୧୫।
ଜାଣି ଶୁଣି ପାପ କଲେ ନୋହଇ ଛେଦନ ।
ଶ୍ରୀକୃଷ୍ଣ ପୁରାଣେ ଏହୁ ଅଟଇ ପ୍ରମାଣ ।୧୬।
ହେତୁ କରି ଗୁରୁଠାରେ ପାପ ଯେବେ କରେ ।
ଅବିଶ୍ୱାସ ହୋଇଲେ ସେ ପାତକ ନ ହରେ ।୧୭।
ଗୁରୁଙ୍କ ଠାବରେ ମିଥ୍ୟା ବଚନ ନ କହୁ ।
ଗୁରୁଙ୍କୁ ପୂଜିବ ପୁଣ ତନ ମନ ଦେଇ ।୧୮।
ଗୁରୁଙ୍କ ସେ ଲକ୍ଷ୍ୟ ଆଉ ସଂସାରରେ ନାହିଁ ।
ବଚନ କହିଲେ ଗତି ମୋକ୍ଷ ପୁଣ ହୋଇ ।୧୯।
ଯେଉଁ ଜନ ଗୁରୁସେବା କରେ ନିରନ୍ତର ।
କୋଟି କୋଟି ତୀର୍ଥଫଳ ସେ ଜନ ଠାବର । ୨୦ ।
ଗୁରୁମୁଖୁଁ ମନ୍ତ୍ର ଶୁଣି ଶିଷ୍ୟ ଭକ୍ତ ହୋଏ ।
ଲକ୍ଷ ଲକ୍ଷ ଧନ ଦ୍ରବିନାମେ ସରି ନୋହେ । ୨୧ ।
ଗୁରୁ କୃଷ୍ଣ ସୁମରିବ ଅନୁକୂଳ ବେଳେ ।
ଦହନ ହୋଇବ ଥିବ ଯେତେ ଅମଙ୍ଗଳେ । ୨୨ ।
ଦିବାନିଶି କୃଷ୍ଣ ବୈଷ୍ଣବଙ୍କ ପାଦେ ଭଜ ।
ଜନମଟି ସୁଫଳ ହୋଇବ ତେବେ କାର୍ଯ୍ୟ । ୨୩ ।
ଗୁରୁ ବଇଷ୍ଣବ ସେବା ଯେ ଜନ ନ କଲା ।
ଜନମ ବିଅର୍ଥ ଶୂକ ଧ୍ୱଜ ଜନ୍ମ ଗଲା । ୨୪ ।

ଅନନ୍ତ ଜନ୍ମରେ ସ୍ୱର୍ଗ ଭଢିଥିଲେ ପୁଣ ।
ପଡ଼ଇ ବୃନ୍ଦରେ ଆସି ଗୁରୁଙ୍କ ଚରଣ । ୨୫ ।
କୋଟି କୋଟି ପୁରୁଷ ଯେ ଉଦ୍ଧରଣେ ଯାଇ ।
ଯେଉଁ କୁଳେ ବଇଷ୍ଣବ ଗୋଟିଏ ହୁଅଇ । ୨୬ ।
ଜଟା ଫଟା ଭେକତାଳେ ସମସ୍ତେ ହେଁ ଦାସ ।
କୋଟିକେ ଗୋଟିଏ ସାର ଜନମନ ଶିଷ୍ୟ । ୨୭ ।
କୋଟିକେ ଗୋଟିଏ ସାର ଏକ ମନ୍ତ୍ର ପାଏ ।
ଖୋଜ ଭେଦ ସେବାକର ଶିଷ୍ୟ ଯେନଯାଏ । ୨୮ ।
ଖୋଜ ଭେଦ ଗୁରୁମୁଖେ ମନ୍ତ୍ର ଶିଖେ ଶିଷ୍ୟ ।
ସେହୁ ବଇଷ୍ଣବଗଣେ ହୁଅନ୍ତି ସେ ଦାସ । ୨୯ ।
ଗୁରୁଙ୍କୁ ଯେ ନ ପୁଜଇ ଅଟାଙ୍ଗ ସେ ପୁଣ ।
ହେଉ ଶିଷ୍ୟ ଗୁରୁଙ୍କର ରଖଇ ସେ ପ୍ରାଣ ।୩୦।
ଗୁରୁ ପାଦେ ହେଉ କଲ ଚରଣ ହେ ଦାସ ।
ରାମ ଧର୍ମ୍ମ ମୁକୁନ୍ଦ ହେ ଅନନ୍ତ ବିଶ୍ୱାସ ।୩୧।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ସପ୍ତଚତ୍ୱାରିଂଶତ୍ ଗ୍ରନ୍ଥ ।



# ଅଷ୍ଟଚତ୍ୱାରିଂଶତ୍ ଛାନ୍ଦ

ଚବଣ ଗୋପାଳ ଶୁଣ ଦଶାକ୍ଷର ଗୁଣ ।
ଗୋପୀଜନ ବଲ୍ଲଭାୟ ସ୍ୱାହା ବୋଲି ପୁଣ । ୧ ।
କ୍ଲୀଁ ଅକ୍ଷର ସବୁ ମନ୍ତ୍ରଙ୍କର ବୀଜ ।
ଏ ଅକ୍ଷରୁ ଷଣଅଚ୍ଛୁ ଦଶାକ୍ଷର ବୃନ୍ଦ ।୨।
ଗୋପୀ ବୋଲି ଯାହା କହୁ ସେ ଅଟେ ଲକାର ।
ଜନ ନେନାକ୍ଷର ଯେ ବସଇ ଛକାର ର ।୩।
ବଲ୍ଲଭାୟ ବୃତ୍ତାକ୍ଷର କକାର ବସଇ ।
ନାଦ ବିନ୍ଦୁ ଉପରେ ଯେ ସ୍ୱାହା ପୁଣ ଏହୁ ।୪।
ଲକାରେ ଗୋପୀ ଦର୍ପଣ ଲକ୍ଷ୍ମୀ ଅଟେ ପୁଣ ।
ଛକାରେ ଯେ ଜନ ବସେ ପ୍ରେମଭକ୍ତିଗଣ ।୫।
ବଲ୍ଲଭାୟ କକାରରେ କୃଷ୍ଣ ବୋଲି କହୁ ।
ସ୍ୱାହା ଯେ ଅକ୍ଷର ଅର୍ଦ୍ଧମାତ୍ରା ତହିଁ ଲହୁ ।୬।
ସ୍ୱାହା ବିନ୍ଦୁ ବସଇ ଯେ କୃଷ୍ଣରୂପ ସେହୁ ।
ଏହୁ ଦଶ ଅକ୍ଷର ଯେ ଏକାକ୍ଷର ହୋଇ ।୭।
ଜଗନ୍ନାଥ ସ୍ୱରୂପ ଏ ଏକାକ୍ଷର କହୁ ।
ମନ୍ତ୍ରରୂପ ବନ୍ଧିଲେ ଯେ ସେ ରୂପ ଦେଖଇ ।୮।
ଜନ ଯେ ଛକାର ପାଦ ଅଟଇଟି ପୁଣ ।
ଗୋପୀ ଯେ ଲକାର ସେହୁ ସ୍ୱରୂପଟି ଜାଣ ।୯।
ବଲ୍ଲଭାୟ କକାର ଯେ ମୁଖ ସେ ଅଟଇ ।
ଗୋପୀ ବୋଲି ଯାହା କହୁ ଅଧର ସେ ହୋଇ ।୧୦।

---

୫—୨ ପ୍ରେମଭକ୍ତି ପୁଣ (କ);

ଜନ ବୋଲି ଯାହା କହୁ ଅଟଇ ଲୋଚନ ।
ବଳଭଦ୍ର ନାସା ମୁଖମଣ୍ଡଳ ବୋଲିଣ ।୧୧।
ଜନ୍ ପ୍ରନ ରାଧାକୃଷ୍ଣ ବୋଲିଣଟି କହୁ ।
ଦଶାକ୍ଷର ବାନ୍ଧଲେଟି ଜଗନ୍ନାଥ ପାଇ ।୧୨।
ଗୋପୀ ବୋଲି ଯାହା କହୁ ସେ କଣ୍ଠ ଅଟଇ ।
ଜନ ବୋଲି ଦୁଇଅକ୍ଷର ପିଠି ପୁଣ କହୁ ।୧୩।
ବଳଭଦ୍ର ବୋଲିଣ ଯେ କଟି ଅଟେ ପୁଣ ।
ଗୋପୀ ବୋଲି ଯାହା କହୁ ବାହୁ ଅଟେ ଜାଣ ।୧୪।
ଜନ ଯେ ଶରୀର ପୁଣ ବୋଲି କରି କହୁ ।
ବଳଭଦ୍ର ଶିର ପୁଣ ଅଟଇଟି ସେହୁ ।୧୫।
ପଞ୍ଚମୂର୍ତ୍ତି ଏକ ଅଟେ ସାଧୁ ଜାଣେ ପୁଣ ।
ସଦଗୁରୁ ସେବିଥିଲେ ଜାଣଇ ପ୍ରମାଣ ।୧୬।
ପାଦବେନି ଜନ ଦୁଇ ଅକ୍ଷର ଅଟଇ ।
ବଳଭଦ୍ର ବୋଲିଣ ଯେ କଟି ବୋଲି କହୁ ।୧୭।
ଗୋପୀ ବୋଲି ଯାହା କହୁ ଅଟଇ ଶରୀର ।
ବାହୁ ବେନି ଅଟଇ ଯେ ଗୋପୀ ବେନାକ୍ଷର ।୧୮।
ଜନ ବେନି ଅକ୍ଷର ଯେ ପିଠି ପୁଣ କହୁ ।
ଗୋପୀ ବେନି ଅକ୍ଷର ଯେ କଣ୍ଠ ପୁଣ ହୋଇ ।୧୯।
ବଳଭଦ୍ର ମୁଖନାସା ଅଟଇଟି ଜାଣ ।
ଜନ ବେନି ଅକ୍ଷର ଯେ ଲୋଚନ ଶ୍ରବଣ ।୨୦।
ବଳଭଦ୍ର ଶିର ପୁଣ ବୋଲି କରି କହୁ ।
ମନ୍ତ୍ରକୁ ସ୍ୱରୂପ କରି ଦରଶନ ଧ୍ୟାୟୁ ।୨୧।
ଏଣୁକରି ଶ୍ରୀକୃଷ୍ଣର ରୂପ ଧ୍ୟାନ କର ।
କ୍ଲୀଂକାର ମନ୍ତ୍ର ବୀଜ ଭଗତରେ ସାର ।୨୨।

---

୧୨—୧ ବନ୍ଧୁସ୍ଥଳ (ଖ);

ଚରଣ ଗୋପାଳ ତୁମ୍ଭେ ସୁନ୍ଦରେ ଶଙ୍କର ।
ଦୀନ ଅର୍ଜୁନର ସଖା ସଙ୍ଗରେ ବନ୍ଧାର ।୨୩।
ଏହୁ ଗୁରୁଭକ୍ତଗୀତା ଜଗତର ହିତ ।
ସମ୍ପୂର୍ଣ୍ଣ କର ପଢ଼ିଲେ ଭଗତ ପ୍ରାପତ ।୨୪।

ଇତି ଶ୍ରୀ ଗୁରୁଭକ୍ତଗୀତା ଚଅନେ ନାମ ଅଷ୍ଟଚତ୍ୱାରିଂଶତ୍ ଛାନ୍ଦ ।



# ଊନପଞ୍ଚାଶତ୍ ଛାନ୍ଦ

ମୁକୁନ୍ଦ ଅନନ୍ତ ସୁତ ଶୁଣିମା ଗୋସାଇଁ ।
ଶିଂଘାଧୁନ୍ନ ମନ୍ତ୍ରମା ସେ କେମନ୍ତ ଅଛଇ ।୧।
ଶୁଣ ହେ ଗୋପର ସୁତ ଭଗତର ହିତ ।
ଏହୁ ଶିଂଘା ବିଖ୍ୟାତ ଯେ ଜଣିବ ଜଗତ ।୨।
ସୁର ସ୍ୱର ଧରିବ ଯେ ମନ୍ତ୍ରକୁ ବିଚାର ।
ମନ୍ତ୍ରକୁ ଆପିବ ଚଉଁ ଅକ୍ଷରକୁ ଧରି ।୩।
ପୁଣ ସ୍ୱର ଧଇଲେ ଯେ ହୋଇବାକ ବାର ।
ଓଁ ନମୋ ଶ୍ରୀ ବୋଲି ସ୍ୱର ହେଯ ଅକ୍ଷର ।୪।
ବ ଶଙ୍କର ବୋଲି ପୁଣ ପୁଣ ସ୍ୱର ଧର ।
ନମାମ୍ୟହଂ ବୋଲିଣ ଯେ ପୁଣ ସ୍ୱର କର ।୫।
ଏମନ୍ତେଣ ମନ୍ତ୍ର ଲେଖି ଯନ୍ତ୍ର ଗୋଟି କରି ।
ଶିଷ୍ୟକୁ ବସାଇ ପୁଜା ବସନ ବିସ୍ତରି ।୬।

| | | | |
|---|---|---|---|
| ଓଁ | ନ | ମୋ | ଶ୍ରୀ |
| ବ | ଶ | ଙ୍କ | ର |
| ନ | ମା | ମ୍ୟ | ହଂ |



ଶିଂଘା

ହସ୍ତରେ ଦେଇଣ ଶିଂଘା ମହିମା କହିବ ।
ତେବେ ସେ ଚହ୍ନିଣ ଶିଙ୍ଘା କନ୍ଧରେ ବହିବ । ୭ ।
ଗୁରୁ ଯନ୍ତ୍ର ମନ୍ତ୍ର ଯନ୍ଦ ନ ଜାଣିଣ ବହି ।
ଶଏ ଜନ୍ମ ଯାଏ ନର୍କ କୁଣ୍ଡେ ବୁଡ଼ିଥାଇ । ୮ ।
ମନ୍ତ୍ର ଗୁରୁଶିକ୍ଷା କରି ଶିଂଘାନାଦ ବାଇ ।
ଯମ କାଳଦଣ୍ଡଭୟ ତାକୁ ନ ଲାଗଇ । ୯ ।
ଆଦ୍ୟ ଯେ ଅନନ୍ତ ଯୁଗକାଳେ ବ୍ରହ୍ମା ପୁଣି ।
ସୃଷ୍ଟି କରି ବସିଲେ ଯେ ଅନନ୍ତ ଷୋଡ଼ଶେଣ । ୧୦ ।
କୁଣ୍ଡବଢ଼ି ହୋଲେ ଯୋଇ ନାମ ଶୁଣୁଥିଲେ ।
ଏମନ୍ତ ସମୟେ ଯାଇଁ କପିଳା ମିଳିଲେ । ୧୧ ।
ବ୍ରହ୍ମାଙ୍କର କୁଣ୍ଡ ବଢ଼ି ଖାଇଲା ସେ ଯାଇଁ ।
ବ୍ରହ୍ମାହସ୍ତ ପଡ଼ିଲା କପିଳା ଶିଂଘ ଠାଇଁ । ୧୨ ।
କପିଳାର ଶିଂଘଗୋଟି ପଡ଼ିଲାକ ତଳ ।
ଦେଖି କରି ବ୍ରହ୍ମା ବଡ଼ ହୋଇଲେ ବିକଳ । ୧୩ ।
ମନଦୁଃଖ କରି ବ୍ରହ୍ମା ଶିବଠାକୁ ଗଲେ ।
ଏହୁ ବଡ଼ମୁଣ କଥା ବୋଲିଣ କହିଲେ । ୧୪ ।
ମନକୁ ଶଙ୍କର ଚିନ୍ତା ନ କର ହେ ପୁଣି ।
ଶବଦ ଯତନ କରି କରିବାକ ଜାଣ । ୧୫ ।
ବ୍ରହ୍ମା ଶିବ ବିଷ୍ଣୁଗଣ ଶିଂଘା ବଜାଇଲେ ।
ଅଗରୁ କାଟି ଖଣ୍ଡିଏ କ୍ଷୁଦ୍ର ଶିଂଘା କଲେ । ୧୬ ।
ପ୍ରଥମଖଣ୍ଡ ଯେ ବଡ଼ ସୁସ୍ୱର ଶୁଭଇ ।
ପଛର ଖଣ୍ଡି ସେ ଶିବ ନ ପାରିଲେ ବାଇ । ୧୭ ।
ବେନି ଶିଂଘା ଘେନିଣ ଯେ ଶିବ ଚଳିଗଲେ ।
ବଇକୁଣ୍ଠପୁରେ ବିଷ୍ଣୁ ଅଗ୍ରତେ ମିଳିଲେ । ୧୮ ।
ଏହୁ ଧ୍ୱନି ଗୋଟି ବଡ଼ ଅଟଇ କଠୋର ।
ଆର ଧ୍ୱନି ଗୋଟି ବଡ଼ ଅଟଇ ସୁନ୍ଦର । ୧୯ ।

ସୁସ୍ୱର ଶବ୍ଦଗୋଟି ଶିବ ଯେ ରଖିଲେ
କଠୋର ଶବ୍ଦଗୋଟି ବିଷ୍ଣୁ ରଖିଥିଲେ । ୨୦ ।
ଗୋଲୋକରେ ଗୋପାଳଙ୍କ ହସ୍ତରେଣ ଦେଲେ
ଯତନ କରି ରଖିବ ବୋଲିଣ ବୋଇଲେ । ୨୧ ।
ଆଦ୍ୟ ଯେ ଅନନ୍ତ ସତ୍ୟ ତ୍ରେତୟାର ଶେଷେ ।
ଏଥୁ ଶିଂଘା ଧ୍ୱନି ହେବ ଦ୍ୱାପର ପ୍ରବେଶେ । ୨୨ ।
ଯୁଗଭୋଗ ହୋଇଣ ଯେ ଦ୍ୱାପର ପ୍ରବେଶ ।
ଗୋପପୁରେ ଜନମିଲେ ଶ୍ରୀକୃଷ୍ଣର ଅଂଶ । ୨୩ ।
ଗୋପରେ ସୁଦାମ ଯୁଥେ ଶିଂଘାଧ୍ୱନି ବହେ ।
ଗୋପ ପୋଏ ବଜାଇଲେ ଶ୍ରୀକୃଷ୍ଣ ଆଜ୍ଞାଏ । ୨୪ ।
ପୃଥିବୀ ଆନନ୍ଦ ହୋଏ ଶିଂଘାଧ୍ୱନି ଶୁଣି ।
ଏ ଧ୍ୱନି ଶୁଣିଲେ କାଳ ଭୟ କରେ ପୁଣି । ୨୫ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ହୁଅନ୍ତି ଆନନ୍ଦ ।
ଶ୍ରବଣେ ଶୁଣିଲେ ପାପ ନ ରହଇ ବନ୍ଧ । ୨୬ ।
ବଡ଼ ପାଣ୍ଡୁଘଣ୍ଟଠାରେ ଶିଂଘା ବାସ୍ତେ ଯେତୁ ।
ସେ ଜନର ପୁଣ୍ୟ ପୁଣ ମୁଖେ କେବା କହୁ । ୨୭ ।
ବେଳ ଅବସାନକାଳେ ଧ୍ୱନି ଯେ କରଇ ।
ସକଳ ପାତକମାନ ଧ୍ୱଂସକରି ଯାଇ । ୨୮ ।
ଗୋପର ଚାରଣା ତୁମ୍ଭେ କଳିରେ ଉଚିତ ।
ଜନ୍ମେ ଜନ୍ମେ ତୁମ୍ଭେ ଅଷ୍ଟ ସଖା ସଙ୍ଗୀ ଭକ୍ତ । ୨୯ ।
ଶିଂଘା ଅଧିକାର ଯେ ମୁକୁନ୍ଦ ହସ୍ତେ ରହେ ।
ରାମଚନ୍ଦ୍ର ଦେଲେ ଟେକ ଅଚ୍ୟୁତ ଆଜ୍ଞାଏ । ୩ ।

ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଊନପଞ୍ଚାଶତ୍ ଗ୍ରନ୍ଥ ।



## ପଞ୍ଚାଶତ୍ ଛାନ୍ଦ

ମୁକୁନ୍ଦ ଅନନ୍ତ ଯେ ବାଳକ ଚନ୍ଦ୍ର ଭକ୍ତ ।
ଶଙ୍ଖର ମହିମା ଗୋଟି କେମନ୍ତ ଅଟଇ । ୧ ।
ଶୁଣ ହେ ଶ୍ରୀବାସ ଦାସ ଶଙ୍ଖର ବିଷ୍ଣୁର ।
ସତ୍ୟଯୁଗେ ଶଙ୍ଖାସୁର ଥିଲେ ଏ ପୃଥ୍ବୀର । ୨ ।
ହରି ନେଲା ବ୍ରହ୍ମାର ଯେ ବେଦପୋଥି ପୁଣ ।
ବ୍ରହ୍ମା ସ୍ତୁତି କଲେ ପୁଣ ଅଚ୍ୟୁତ ଆଗରେଣି । ୩ ।
ବ୍ରହ୍ମା ସ୍ତୁତି କରନ୍ତେଣ ମୀନ ରୂପ ହୋଇ ।
ଶଙ୍ଖାସୁର ମାଇଲେ ଯେ ସିନ୍ଧୁରେ ବୁଡ଼ାଇ । ୪ ।
ଦେବତାଙ୍କୁ ଦୁଃଖ ଦେଇ ପୃଥ୍ବୀ ନ ସହିଲା ।
ଚକ୍ରେଣ ଛେଦିଲେ ଶଙ୍ଖ ମଣ୍ଡଳ ପଡ଼ିଲା । ୫ ।
ଶଙ୍ଖ ବଜାଇଲେ ହରି ଶୁକ୍ଳଚନ୍ଦ୍ର ହୋଇ ।
ବଇକୁଣ୍ଠପୁରେ ବିଷ୍ଣୁ ରଖିଲେକ ନେଇ । ୬ ।
ସେ ଅସୁର ଅଂଶ ଯେତେ ଥିଲେକ ପୃଥ୍ବୀରେ ।
ସମସ୍ତେହେଁ ନାଶ ଗଲେ ବିଷ୍ଣୁର ଚକ୍ରରେ । ୭ ।
ଗୋଲୋକରେ କିଛୁ ଦିନ ରହିଲା ସେ ପୁଣ ।
ଦ୍ୱାପର ଯୁଗରେ ଗୋପେ କଲେକ କୃଷ୍ଣ । ୮ ।
ଦାମ ସଖା ଯୂଥ ସଙ୍ଗେ ଶବଦ ଆନନ୍ଦ ।
ମଙ୍ଗଳ ଆନନ୍ଦ ଧ୍ୱନି ଗୋପରେ ଯେ ବନ୍ଦ । ୯ ।
ଅଚ୍ୟୁତ ଯେ ଧବଳ ଦେଖି ଶରଧା ମନରେ ।
ଧଇଲେକ ବିଷ୍ଣୁ ପୁଣ ଶ୍ରୀବାମ ଯେ କରେ । ୧୦ ।
ପଞ୍ଚସ୍ୱର କରଣ ଯେ ବଜାଇଲେ ଧ୍ୱନି ।
ବିଷ୍ଣୁ ଦେଲେ ଗୋପ ପୋଏ କରେ ଥିବ ଘେନି । ୧୧ ।
ମନ୍ତ୍ର ଯନ୍ତ୍ର ତନ୍ତ୍ର ପୂଜା ନ ଜାଣିଣ ନାହିଁ ।
ତନ୍ତ୍ର ଜନ୍ମ ଲୋଚନ ଯେ ଅଛି ତାର ହୋଇ । ୧୨ ।

---

୨—୧୨, ଶଙ୍ଖର ମହିମା............... ଥିଲେ ଏନ୍ତୁ ସୀମା (କ);

ମନ୍ତ୍ର ଜାଣି ଯେଉଁ ପ୍ରାଣୀ ଶଙ୍ଖଧ୍ୱନି କରେ ।
ଜୀବନ୍ତେଣ ସୁଖୀ ମଲେ ମିଳେ କୃଷ୍ଣ ପୁରେ । ୧୩ ।
ଉନ ଚରୁ ଧଶଣ ଯେ କୋଠି ବସାଇବ ।
ତେର ଗୋଟି ଅକ୍ଷର ଯେ ତହିଁରେ ଲେଖିବ । ୧୪ ।
ଓଁ ଅକ୍ଷର ଆଦ୍ୟ ଉପରେ ମିଶାଇ ।
ଜୟ ଜୟ ଜଗନ୍ନାଥ ନମାମ୍ୟହଂ କହୁ । ୧୫ ।
ଜୟ ଜୟ ଚତୁଃକ୍ଷର ଜଗନ୍ନାଥ ଗୃହ ।
ନମାମ୍ୟହଂ ଗୃଣ ଓଁ ମନ୍ତ୍ରରେ ସୁମର । ୧୬ ।
ଏ ମନ୍ତ୍ର ଯନ୍ତ୍ର ଲେଖିଣ ବସ୍ତ୍ର ଏକ ଦେଇ ।
ପୂଜାବିଧି ଦେଇଣ ଯେ ମନ୍ତ୍ରକୁ ଶିଖାଇ । ୧୭ ।
ଫୁଲ ପାନ ଚନ୍ଦନ ବସନ ଭିଆଇବ ।
ମକର ଭୋଜ କର ବିବିଧ ନାନା ଦ୍ରବ୍ୟ । ୧୮ ।
ଅଚ୍ୟୁତ ଆଜ୍ଞା ଏ ରାମଚନ୍ଦ୍ର ଦାସ ଘେନ ।
ରାମଚନ୍ଦ୍ର ଦେଲେ ହନୁମାନ ହସ୍ତେ ପୁଣ । ୧୯ ।
ହନୁମାନ ଅନନ୍ତ ଅଟେ ଶଙ୍ଖେ ଅଧିକାରୀ ।
ଏ ଶଙ୍ଖର ଶବଦ ଯେ ଅଟୁଙ୍କ ଶ୍ରୀହରି । ୨୦ ।

ଶଙ୍ଖ



ପ୍ରତ୍ୟେକେଣ ଶଙ୍ଖଧ୍ୱନ ଶୁଣିଲେକ ପୁଣ ।
ଗୋହତ୍ୟା ପାତକ ଦୋଷ ହୁଅଇ ହରଣ । ୨୧ ।
ସନ୍ଧ୍ୟାକାଳେ ଯେଉଁ ଜନ ଶଙ୍ଖ ଧ୍ୱନ ଶୁଣି ।
ଭାଳମାନେ ଥାନରୁ ଯେ ପଳ୍ପ ଯାନ୍ତି ପୁଣି । ୨୨ ।
ଆନନ୍ଦ ମଙ୍ଗଳ ଅଟେ ଏହୁ ପୁଣ ଧ୍ୱନ ।
ଦେବସ୍ଥାନେ ସନ୍ଥଜନମାନେ ଥାନ୍ତି ଯେଣ । ୨୩ ।
ଅନ୍ୟସ୍ଥାନେ ଏ ଧ୍ୱନକ ନ କର ପ୍ରକାଶ ।
ଜନ୍ମ ଅପମୃତ୍ୟୁ ଏ ଧ୍ୱନରେ ହୋଏ ନାଶ । ୨୪ ।
ଶଙ୍ଖ ବସ୍ତୁରୁ ଯେ ବର ମାଗିଲଇ ।
ଦେବତାର୍ଥେ ସନ୍ଥହସ୍ତେ ମସ୍ତକ ମୋ ରହୁ । ୨୫ ।
ଦେବତାର୍ଥେ ସନ୍ଥହସ୍ତେ କହୁ ଯୋଗ ଥିବ ।
ଏଣୁ ଭକ୍ତ ପୂଜାବଧି ଶଙ୍ଖଠାରେ ଦେବ । ୨୬ ।
ଯୋଗବଧି ବେଳେଣ ବାଳକ ବଜାଇବ ।
ଅଚ୍ୟୁତ ବଚନ ବାର ଗୋପାଳ ପାଳିବ । ୨୭ ।
ଗୁରୁଦେବରୁ କ୍ରମକ୍ରେଣ ଏହୁ ଗୀତା ପାଠ ।
ଭକତ ଜନମାନଙ୍କ ଅଟଇ ଏ କୋଠ । ୨୮ ।

ଇତି ଶ୍ରୀଗୁରୁଭକ୍ତଗୀତାକଥନେ ନାମ ପଞ୍ଚାଶତ୍ ଗ୍ରନ୍ଥ ।

—※—

## ଏକପଞ୍ଚାଶତ୍ ଛାନ୍ଦ

ଗୋବିନ୍ଦ ଦାସର ସୁତ ଯେଜମା ଗୋସାଇଁ ।
ମୁରଲୀର ଜନ୍ମ ପୁଣ କହିବା ବୁଝାଇ । ୧ ।
ଶୁଣ ହୋ ଗୋବିନ୍ଦ ବସ୍ତ୍ର ଆନନ୍ଦ ସୁଦାମ ।
ମୁରଲୀ ମହିମା ହୃଦେ ବାନ୍ଧବ ଉତ୍ତମ ' ୨ ।
ଅବଲେଖ ସତ୍ୟଯୁଗ ଅଟଇ ପ୍ରମାଣ ।
ବ୍ରହ୍ମା ତପ କରୁଥିଲେ ସେ ପୁରେଣ୍ଟ ପୁଣ । ୩ ।
ମେଦାନାମେ ଦଇତ ଗୋଟାଏ ଜନ୍ମିଲା ।
ବ୍ରହ୍ମା ତପ କରୁଥିଲେ ସେଠାରେ ମିଳିଲା । ୪ ।
ବ୍ରହ୍ମାର କିଦଣ୍ଡୀ ଦୈତ୍ୟ ଖଞ୍ଜିଲାକ ତହିଁ ।
ଖଞ୍ଜି ପକାଇଲା ଅତିକୋପନ୍ତର ହୋଇ । ୫ ।
ପିତାମହ ଶାପ ଦେଲେ ବେଣୁ ବୃକ୍ଷ ହେବ ।
ବ୍ରହ୍ମା ଶାପ ଗୋଟା ପୁଣ କେ ଆନ କରିବ । ୬ ।
ବୃକ୍ଷ ଯେ ଗୋଟାଏ ହେଲା ଏ ମଞ୍ଚମଣ୍ଡଳ ।
ସ୍ମର କରନ୍ତି ବ୍ରହ୍ମା ହୃଦସ୍ଥକମଳ । ୭ ।
ସେ ବୃକ୍ଷ ଗୋଟିକ ଯେ କାଟିଲେ ନମ୍ରରେଣ ।
ଛଡ଼ଗୋଟି ଧନ୍ୟ ସେ ନିର୍ମାଣିଲେକ ପୁଣ । ୮ ।
ତଥିର ଉପର ଖଣ୍ଡି ବେଣୁ କଲେ ନେଇ ।
ଆର ପଦ ମୁଖର ସଙ୍ଗୀତା ଯେ ଭିଆଇ । ୯ ।
ଆବର ପବେକ କଲେ ମୁରଲୀ ଯେ ପୁଣ ।
ତଥି ଅଗ ଖଣ୍ଡି ନାକ ବଇଁଶୀ ଭିଆଣ । ୧୦ ।
ପତର କାହାଳୀ ଅଗେ ତଥି ପଦ ଦେଇ ।
ବେଣୁବୃକ୍ଷ ଗୋଟିକୁ ଯେ ଏତେ ବିଧି କହୁ । ୧୧ ।

୨—୨ ବାନ୍ଧବ (କ);

ପ୍ରଥମ ପଦ ଖଣ୍ଡିକ ଦୁଇ ସ୍ୱର୍ଗ କର ।
ଅଜଗ ପିନାକ ଦୁଇ ନାମ ତହିଁ କର । ୧୨ ।
କୋଦଣ୍ଡ ଗାଣ୍ଡିବ ବୋଲି ଆର ପଦ କଲେ ।
ଆର ପଦ ରୂପ ଯେ ବୈଷ୍ଣବା ଧନୁ ହେଲେ । ୧୩ ।
ଅଜଗ ପିନାକ କୋଦଣ୍ଡ ଗାଣ୍ଡିମ ରୂପ ।
ବେଣୁ ଯେ ସଙ୍ଗୀତା ବେଂଶୀ ନାଦ ବଇଁଶୀକ । ୧୪ ।
ବୈକୁଣ୍ଠ ଭୁବନେ ବ୍ରହ୍ମା ରଖିଲେ ଯତନେ ।
କେହୁ ରଖି ନ ପାରିଲେ ତାହାଙ୍କୁ ଯେ ଆନେ । ୧୫ ।
କଚ୍ଛପନ ରହିଲେ ଯେ ଗୁପ୍ତ ସ୍ୱବେଶ ।
ଲୀଳା କରିବାକୁ କୃଷ୍ଣ କଲେକ ଭିଆଣ । ୧୬ ।
ସ୍ୱର୍ଗ ଧନୁ ଗୋଟିକ ଯେ ଇନ୍ଦ୍ର ଆରାଧିଲେ ।
ବୈଷ୍ଣବ ଧନୁକୁ ପର୍ଶୁରାମ ହାତେ ଦେଲେ । ୧୭ ।
କୋଦଣ୍ଡ ଧନୁକୁ ରାମଚନ୍ଦ୍ର ହାତେ ନେଇ ।
ପିନାକ ଧନୁକୁ ନାରାୟଣ ଥିଲେ ବନ୍ଧ । ୧୮ ।
ଅଜଗ ଧନୁକୁ ଶିବ ବନ୍ଧିଲେ ହସ୍ତେଣ ।
ଗାଣ୍ଡୀମ ଧନୁ ଅର୍ଜୁନ ବନ୍ଧିଥିଲେ ପୁଣ । ୧୯ ।
ମୁଖର ସଙ୍ଗୀତା ଗୋପୀମାନେ ବଜାଇଲେ ।
ବଇଁଶୀ ଗୋଟିକ କୃଷ୍ଣହସ୍ତେ ବ୍ରହ୍ମା ଦେଲେ । ୨୦ ।
ନାଦର ବଇଁଶୀ ସ୍ୱୋକକୃଷ୍ଣହସ୍ତେ ଦେଇ ।
ପତର କାହାଳୀ ବଂଶୀ ସାନ୍ଦ୍ରିକ ବଜାଇ । ୨୧ ।
ଏମନ୍ତ ହୋଇଣ ବଂଶୀ ହୋଇଲା ଭିଆଣ ।
ଏଥିର ମହିମା ବଡ଼ ଗୁପତଟି ଜାଣ । ୨୨ ।
ଏ ବେଣୁ ମନ୍ତ୍ର ନ ଜାଣି ବଜାନ୍ତି ଯେ ଜନ ।
ଚଉଦ କଲପ ନର୍କ ଗର୍ଭରେ ଜନମ । ୨୩ ।
ମନ୍ତ୍ର ଜାଣି ଶିଷ୍ୟ ଯେବେ ମୁରଲୀ ବଜାଇ ।
ଭାବଲ୍ଲେଣ ସୁଖୀ ମଲେ କୃଷ୍ଣପାଦ ପାଇ । ୨୪ ।

ଯନ୍ତ୍ର ରେ ଗୋଟିଏ ଆପି ମନ୍ତ୍ରକୁ ଲେଖିବ ।
ବସନ ଗୋଟିଏ ଦେବ ଶୋଗ ବନ୍ଧ ହେବ । ୨୫ ।
ମୁରଲୀ ବେଣୁ ସଙ୍ଗୀତା ଶିଷ୍ୟକୁ ଯେ ଦେବ ।
ଏହୁ ବନ୍ଧ କଲେଣ ଯେ ଶିଷ୍ୟ ହେଉ ଦେବ । ୨୬ ।
ହି ବଧି କରଣ ପାଞ୍ଚ ଖାଗ ଭିଆଇବ ।
ମୁରଲୀର ମନ୍ତ୍ରଗୋଟି ତହିରେ ଲେଖିବ । ୨୭ ।
ଓଁ ରାଧାଶ୍ୟାମ ରାଧା ସପ୍ତାକ୍ଷର ଧର ।
ଶ୍ୟାମ ଶ୍ୟାମ ରାଧେ ରାଧେ ମନ୍ତ୍ରକୁ ସୁମର । ୨୮ ।
ଶ୍ୟାମ ବୋଲି ରାଧାମୁଖେ ବଜାନ୍ତି ସଙ୍ଗୀତା ।
ଶ୍ୟାମ ରାଧେ ବୋଲିଣ ଯେ ବଂଶୀରେ ଫୁଙ୍କି ତା । ୨୯ ।
ରାଧେ ଶ୍ୟାମ ବୋଲିଣ ଯେ ଗ୍ରୋକକୃଷ୍ଣ ବାଇ ।
ଶ୍ୟାମରାଧେ ବୋଲିଣ ଯେ ସାତୁକ ଫୁଙ୍କଇ । ୩୦ ।

ବଂଶୀ

| | | |
|---|---|---|
| ଓଁ | ରା | ଧା |
| ଶ୍ୟା | ମ | ରା |
| ଧା | ଶ୍ୟା | ମ |
| ଶ୍ୟା | ମ | ରା |
| ଧେ | ରା | ଧେ |

ଗୋପରେ ବଇଁଶୀ ଧ୍ୱନି କଲେ ଗୋପସୁତ ।
ଜନମ ଜନମେ ଅଟ ଗୋଲୋକ ଭଗତ । ୩୧ ।

ଏ ଗୋପକୁଳକୁ ତୁମ୍ଭେ ଏ ଭେଦ କହିବ ।
ତୁମ୍ଭେ ଗୁରୁରୂପ ହୋଇ ପଥ ଭିଆଇବ । ୩୨
ଗୋଲୋକ ଗୋପମହିମା କଳିରେ ହକତ ।
ଶୁଣ ହେ ସହାସ ଦାସ ଦ୍ୱାଦଶ ଭଗତ । ୩୩ ।
ସଙ୍ଗୀତାର ଅଧିକାସ୍ତ ମୁକୁନ୍ଦ ଅଟଇ ।
ମୁରଲୀର ମହିମା ତ ଗୋବିନ୍ଦ ରଖଇ । ୩୪ ।
ନାକର ବଇଁଶୀ ରଖ ଅନନ୍ତ ହସ୍ତର ।
ପତର କାହାଳୀ ବସ୍ତ୍ର ଥିବ ତୋ ସଙ୍ଗର । ୩୫ ।
ଦୀନ ଅଚ୍ୟୁତର କଥା ହୃଦେ ଧଣଥିବ ।
ଏ ଗୋପକୁଳକୁ ତାର କଥା ରହିଥିବ । ୩୬ ।
ବେଣୁର ମହିମା ରଖ ବସ୍ତ୍ର ତୋ ହସ୍ତର ।
ଗୁପୁତେ କହିବ ଶିଷ୍ୟ ଭଗତି ଠାବର । ୩୭ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ଏକପଞ୍ଚାଶତ୍ ଗ୍ରନ୍ଥ



# ଦ୍ୱିପଞ୍ଚାଶତ୍ ଛାନ୍ଦ

ଶୁଣ ହେ ଯାଦବ ଦାସ ଗୁଞ୍ଜରା ବଗୁର ।
ମେଦାଦୈତ୍ୟ ନାଶ ଗଲା ବସୁନ୍ଧରା ଉଦର । ୧ ।
ମେଦାଦୈତ୍ୟ ଅସ୍ଥି ଗୋଟି ଗୁଞ୍ଜରା ଜନ୍ମିଲା ।
ସୃଷ୍ଟିକାଳେ ଅଗ୍ନି ଶିଖା ପ୍ରାୟେକ ଦିଶିଲା । ୨ ।
ସେ ଗୁଞ୍ଜରା ପକ୍ଷି ପୁଣ ପଡ଼ିଲା ଭୂମିର ।
ଶରଧା କରଣ ବ୍ରହ୍ମା ଧଇଲେ ହସ୍ତର । ୩ ।
ସେହୁ ମାଳଗୋଟି କୃଷ୍ଣ ହସ୍ତେ ଦେଲେ ନେଇ ।
କପାଳେ ଖଞ୍ଜିଲେ କୃଷ୍ଣ ଚୂଳ ଯେ ବନାଇ । ୪ ।
ଦାମ ଯେ ସୁଦାମ ଗୋପ ଗୋପାଳଙ୍କ ସାର ।
ତାଙ୍କୁ ଆଜ୍ଞା ଦେଲେ ଖଞ୍ଜ ଚୂଳ ଯେ ଉପର । ୫ ।
ଗୋପୀଙ୍କ ବଲ୍ଲଭ ଦେଲେ ଗୋପାଳଙ୍କ ଶିର ।
ଗୁଞ୍ଜରା ମହିମା ପୁଣ ଏମନ୍ତ ପ୍ରକାର । ୬ ।
ବେଦର ସପ୍ତ ଧରଣ ଯେ ମନ୍ତ୍ରକୁ ଲେଖିବ ।
ଘର ଗୋଟି ଆପି ତହିଁ ପୂଜାବନ୍ଧି ଦେବ । ୭ ।
ଗୁଞ୍ଜରା ଯେ ଗୋପୀଜନ ସପ୍ତାକ୍ଷର କହୁ ।
ବଲ୍ଲଭାୟ ନମ ଓଁ ମନ୍ତ୍ର ଅଟେ ଏହୁ । ୮ ।

## ଗୁଞ୍ଜରା

| | | | | | | |
|---|---|---|---|---|---|---|
| ଓଁ | ଗୁ | ଞ୍ଜ | ରା | ଗୋ | ପୀ | ଜ |
| ନ | ବ | ଲ୍ଲ | ଭା | ୟ | ନ | ମଃ |

ମନ୍ତ୍ର ନ ଜାଣିଣ ଯେହୁ ଗୁଞ୍ଜରି ବନ୍ଧନ୍ତି ।
ତେର ଜନ୍ମ ସେହୁ ପ୍ରାଣୀ ନର୍କ ଗତ ହୋନ୍ତି । ୯ ।
ମନ୍ତ୍ର ଜାଣି ଗୁଞ୍ଜରି ବନ୍ଧନ୍ତି ଯେତେ ନର ।
ଜୀବ ଅନ୍ତେ ପଶନ୍ତି ସେ ଶ୍ରୀକୃଷ୍ଣର ପୁର । ୧୦ ।
ଯନ୍ତ୍ର ଲେଖି ମନ୍ତ୍ର ସ୍ଥାପି ଶିଷ୍ୟ ଶିରେ ଦେବ ।
ତେବେ ସିନା ଶିଷ୍ୟ ହୃଦେ ଭକତ ହୋଇବ । ୧୧ ।
ତୂଳ ବନାଇଁବ ସେ ଗୁଞ୍ଜରି ଚନ୍ଦ୍ରକାରେ ।
ଗୋପାଳ କୁଳ ଭାରତ ଓଡ଼ିଶା ଦେଶରେ । ୧୨ ।
ଗୁଞ୍ଜରି ବାନ୍ଧିବ ପୁଣ ସନ୍ନ୍ୟାସ ବେଳେଣ ।
ପୂଜା କରୁଥିବ ତାଙ୍କୁ ସ୍ନାହ୍ନାନ ସାଶଣେ । ୧୩ ।
ଶୁଚିବନ୍ତ ହୋଇ କରି ଗୁଞ୍ଜରି ବାନ୍ଧିବ ।
ଦ୍ୱାଦଶ ଗୋପାଳ ଶୁଣ ଗୁଞ୍ଜରିର ଭାବ । ୧୪ ।
ଗୁଞ୍ଜରି ବାନ୍ଧିଲେ ଜୀବହତ୍ୟା ପାପକ୍ଷୟ ।
ଗୁଞ୍ଜରି ବାନ୍ଧିଲେ ଯେ ଆପତ୍ତି ଅଙ୍ଗୁ ଯାଏ । ୧୫ ।
ଗୁଞ୍ଜରି ଦର୍ଶନ ଯେହୁ ଜନ ନିତ୍ୟ କରେ ।
ଯମ କାଳଭୟୁ ତାଙ୍କୁ ଦେଖି କଶ ଉଠେ । ୧୬ ।
ଗୋବିନ୍ଦ ପବନ ସେ ଗୁଞ୍ଜରି ଅଧିକାର ।
ଅଚ୍ୟୁତ ରାମ ପବନ ଗୁପତ ବିସ୍ତାର । ୧୭ ।
ଗୁରୁଭକ୍ତିଗୀତା ତୁମ୍ଭ ହାତରେ ଲେଖିଲୁ ।
ଭଗତକୁଳଙ୍କୁ ଏହୁ ଧନ ରଖିଗଲୁ । ୧୮ ।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଦ୍ୱିପଞ୍ଚାଶତ୍ ଗ୍ରନ୍ଥ ।

※— X —※

## ତ୍ରିପଞ୍ଚାଶତ୍ ଛାନ୍ଦ

ଶୁଣ ହେ ଉତ୍ଥାନ ଦାସ ଗୁଞ୍ଜର ମହିମା ।
ଅନାଦି ପୁରୁଷ ଲୀଳା କି ଦେବା ଉପମା । ୧ ।
ଅନାଦି ପୁରୁଷ ଯେ ଆପଣା ହୃଦ ଗୁହିଁ ।
ନୟନରୁ ଲୋତକ ସେ ପଡ଼ିଲାକ ବହି । ୨ ।
ଅର୍କବର୍ଣ୍ଣ ହୋଇ ଲୁହ ପଡ଼ିଲାକ ତଳ ।
ତହୁଁ ଜାତ ହୋଇଲା ଯେ ଗୁଞ୍ଜ ବୋଲି ଫଳ । ୩ ।
ଶିର ତାର କଳାବର୍ଣ୍ଣ ଦେହ ରଙ୍ଗା ଦିଶି ।
ଏମନ୍ତ ହୋଇଣ ଲତା ଗୋଟିଏ ପ୍ରକାଶି । ୪ ।
ଦେହ ଯେ ଧବଳ ଶିର ଶ୍ୟାମଳ ଦିଶଇ ।
ବାମନୟନରୁ ଏହୁ ଫଳ ଜାତ ହୋଇ । ୫ ।
ସର୍ବାଙ୍ଗ ଧବଳ ଦିଶେ ଏକଗୋଟି ହୋଇ ।
ଆରଗୋଟି ଫଳ ପୁଣ ଏମନ୍ତ ଦିଶଇ । ୬ ।
ସର୍ବାଙ୍ଗେ ଦିଶଇ କଳା ଏକ ଫଳ ତହିଁ ।
ସ୍ୱବର୍ଣ୍ଣ ଗୁଞ୍ଜ ଦିଶେ ବୃକ୍ଷେ ଫଳି ଥାଇ । ୭ ।
ସେହୁ ଲତାଗୋଟି କିଛି ଦିନରେ ସେ ହେଲା ।
ଥାବରମାନଙ୍କେ ସେହୁ ବିଖ୍ୟାତ ହୋଇଲା । ୮ ।
ଆଦି ସେ ଅନନ୍ତ ସତ୍ୟ ଚୈତନ୍ୟର ଶେଷେ ।
ଗୋଲୋକର ପୋଏ ଜାତ ଗୋପପୁର ଅଂଶେ । ୯ ।
ଧବଳ ମାଳକୁ ଚୂଳମୂଳରେ ଖଞ୍ଜିଲେ ।
ତାଥିର ଉପରେ ରଙ୍ଗମାଳ ପୁଣ ଦେଲେ । ୧୦ ।
ତାଥିର ଉପରେ କଳା ମାଳକୁ ଖଞ୍ଜିଣ ।
ତାଥିପରେ ଗଞ୍ଜର ଯେ ମାଳ ବେଢ଼ାଇଣ । ୧୧ ।

ସମସ୍ତ ଗୋପାଳ ପୋଏ ଶିର କଣ୍ଠେ ବନ୍ଧ ।
ଗୁଞ୍ଜର ରୂପକୁ ବେଶ ସୁନ୍ଦର ଦଶଇ । ୧୨ ।
ମନ୍ତ୍ର ଜାଣି ଗୁଞ୍ଜମାଳ ବହନ୍ତ ଦେହରେ ।
ଯମଦଣ୍ଡ କାଳମାନ ନ ଲାଗଇ ତାରେ । ୧୩ ।
ନ ଜାଣିଣ ଗୁଞ୍ଜମନ୍ତ୍ର ଦେହରେ ବହଇ ।
ନକେ କୀଟ ସାତ ଜନ୍ମ ଯାଏ ସେହୁ ହୋଇ ।୧୪ ।
ସପ୍ତାକ୍ଷର ଲେଖିଣ ଯନ୍ତ୍ରକୁ ବସାଇବ ।
ସପ୍ତକୋଠି ବସାଇଣ ପୂଜାବଧି ଦେବ । ୧୫ ।
ମନ୍ତ୍ର ଯନ୍ତ୍ର ପୂଜା ଦେଇ ଶିଷ୍ୟ ଅଙ୍ଗେ ଦେବ ।
ତେବେ ସେ ଶିଷ୍ୟ ଚହ୍ନିଣ ସେ ଗୁଞ୍ଜ ବହିବ । ୧୬ ।
ଓଁ କୃଷ୍ଣ ଗୁରୁଭ୍ୟଂନମ ମନ୍ତ୍ର ଏହୁ ହୋଇ ।
ଗୁଞ୍ଜମାଳ ବହିବ ଯେ ମୁଖେ ଏହା କହି । ୧୭ ।
ତଇଳ କୁଙ୍କୁମ ବେନ ନ ଘେନିବ ଦେହେ ।
ତଇଳ କୁଙ୍କୁମେ ତାର ଜ୍ୟୋତି ନାଶ ହୁଏ । ୧୮ ।
ଅଶୌଚ କାଳରେ ଯେ ଅଙ୍ଗରେ ନ ଥିବ ।
ଶ୍ରାଦ୍ଧ ବେଳରେ ଏହୁ ମାଳ ଯେ ଖଣ୍ଡିବ । ୧୯ ।

## ଗୁଞ୍ଜମାଳ

| | | | | | | |
|---|---|---|---|---|---|---|
| ଓଁ | କୃ | ଷ୍ଣ | ଗୁ | ଭ୍ୟଂ | ନ | ମ |

ସତ ଯତ ଅଙ୍ଗରେ ଯେ ଏମାଳ ଲମ୍ବାଇ ।
ସେ ଜନକୁ ଏହି ମାଳ ବର ପୁଣ ଦେଇ । ୨୦ ।

---

୧୨—୧ ବହଇ ହୃଦରେ (ଖ), ୧୭—୧ କୃଷ୍ଣାୟ ପଢ଼ିବାକୁ ହେବ;

ରାଧା କୃଷ୍ଣ ଏକ ହେଲେ ଶ୍ରୀକୃଷ୍ଣ ଚୁଳରେ ।
ଧବଳ ଅଙ୍ଗକୁ ଭାର ରଖିଲେ ଅଙ୍ଗରେ । ୨୧ ।
ଏଣୁକର ରାଧାକୃଷ୍ଣ ଅଙ୍ଗକୁ ସୁନ୍ଦର ।
ଗୋପପୁଅମାନ ଏହା ବୋଲିଲେ ହୃଦର । ୨୨ ।
ଗୁପ୍ତ ଅଧିକାଶ୍ରୀ ଅଟେ ଯାଦବ ଉତ୍ପତ୍ତିଆନ ।
ଅଚ୍ୟୁତର ବଚନ ହେ ଯେବେ ବାର ଜଣ । ୨୩ ।
ରାମଚନ୍ଦ୍ର ସୁଦଶାରେ ଅଚ୍ୟୁତ କରୁଣା ।
ଗୋପ ନାଚ ଗୋପକଥା ରମ୍ଭକ୍କ କ ବଣା । ୨୪ ।
କଳିଜନ ଭଗତ ନମନ୍ତେ ଏହୁ ପାଠ ।
ବୁଝିଲ ଶିଷ୍ୟଙ୍କ୍ର ଏହୁ ଅଟେ ବଡ଼ ମିଠ । ୨୫ ।
ନ ବୁଝିଲ ଶିଷ୍ୟଙ୍କୁ ଏ ବିମୁଖ ଲଗଇ ।
ଏଣ ଯେ ଗୁରୁଆ ଶିଷ୍ୟ ପାଇବଟି କାହିଁ । ୨୬ ।
ବାର ଯେ ବରଷ ବାରଦିନ ଖଟିଥିବ ।
ଏ ଗ୍ରନ୍ଥର ଭେଦ ଅବା ସେ କିଛୁ ପାଇବ । ୨୭ ।
ମୁକୁନ୍ଦ ଯାଦବ ସେବା ରାମର ଚରଣ ।
ରାମ ସେବା କରଅଛୁ ଅଚ୍ୟୁତ ଚରଣ । ୨୮ ।
ଅଚ୍ୟୁତ ଦାସକୁ କଲେ ଶ୍ରୀକୃଷ୍ଣ କରୁଣା ।
ଲେମ୍ବାଳ ହତର ପାଶେ ଗ୍ରାମ: ତଲକଣା । ୨୯ ।
ସେହୁ ଗ୍ରାମେ କୃଷ୍ଣ ମୋତେ କଲେକ କଟାକ୍ଷ ।
ଗୁରୁଭକ୍ତିଗୀତା ମୁହିଁ କହିଲି ପ୍ରତ୍ୟକ୍ଷ । ୩୦ ।
କୋଟିକରେ ଗୋଟିକକୁ ଏ ପାଠ କହିବ ।
ଅଣରଧା ଅଭକ୍ତକୁ ଏ ଭେଦ ନ ଦେବ । ୩୧ ।
ଧନ ଲୋଭ ବଡ଼ପଣେ ଏ ଗ୍ରନ୍ଥ ଯେ କହେ ।
ଅପ୍ରମାଦେଣ ବିପତ୍ତି ତାହାକୁ ଯେ ହୋଏ । ୩୨ ।
ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଦ୍ୱିପଞ୍ଚାଶତ୍ତ୍ୱ ଛାନ୍ଦ ।



# ଚତୁଃପଞ୍ଚାଶତ୍ ଛାନ୍ଦ

ପବନ ଦାସ କରଯୋଡ଼ି । ପୁଛଇ ଗୁରୁ ପାଦେ ପଡ଼ି ।୧।
ମୟୂର ପକ୍ଷୀ କାହୁଁ ଜାତ । ଶ୍ରୀଗୁରୁ ପରମ ସ୍ୱରୂପ ତ ॥
ଶୁଣ ସୁତର ସୁତ ଚଣ୍ଡ । ହେତୁଥାନ ମୁକୁନ୍ଦ ଅନନ୍ତ ॥
ଆଦ୍ୟ ଅନନ୍ତ ଯୁଗ ଯେବେ । ବ୍ରହ୍ମାଙ୍କ ସର୍ଜନାର ସବେ ॥
ନୟନୁ ଲୋତକ ଖସିଲା । ମୟୂର ପକ୍ଷୀ ସେ ହୋଇଲା ॥
ଆଦ୍ୟ ଅନନ୍ତ ସତ୍ୟ କଲା । ତ୍ରେତୟା ଯୁଗ ଶେଷ ହେଲା ॥
ଦ୍ୱାପର ହୋଇଲା ପ୍ରବେଶ । ଜନମ ହେଲେ କୃଷ୍ଣ ଅଂଶ ॥
ବତ୍ସା ରଖିଣ ବନେ ଗଲେ । ସେ ପକ୍ଷୀ ବନସ୍ତେ ଦେଖିଲେ ॥
ଯତନ କରି ତାହା ଆଣି । ଦାମ ସୁଦାମ ସଖାପୁଣି ॥
ସୁବାହୁ ସୁବଳ ଶ୍ରୀବତ୍ସ । ସଖା ସମୂହ ଗୋପ ମୋକ୍ଷ ।୧୦।
କୃଷ୍ଣର ଚୂଳରେ ଖଞ୍ଜିଲେ । ବିବିଧ ପୁଷ୍ପ ଚର୍ଚ୍ଚି ଦେଲେ ॥
ଅଳକାବଳି କେ ବନାଇ । କୃଷ୍ଣର ଲଲାଟେ ଖଞ୍ଜଇ ॥
କେ ପୁଣ ବନାନ୍ତି ଭରସ । ଧରିଲେ ଶ୍ରୀକୃଷ୍ଣର ପାଶ ॥
କେ ପୁଣି ବିଚଣା ବନାଇ । କୃଷ୍ଣଙ୍କୁ ପବନ ଢ଼ାଳଇ ॥
ପଙ୍ଖା କରନ୍ତି କେ ଯତନ । ଦୂରରୁ ଦିଅନ୍ତି ପବନ ।୧୫।
କେ ପୁଣ ଛଣ କମ କରି । କୃଷ୍ଣର ଶ୍ରୀମୁରେଣ ଧରି ॥
କେ ପକ୍ଷୀ ମୂଳ ଏକ କରି । ବେଢ଼ାକୁ ବେଢ଼ ପଞ୍ଚ କରି ॥
ଆଲମ୍ବ ଛଣ କେ ବନାଇ । କୃଷ୍ଣଶ୍ରୀମୁରେ ଉଚ୍ଚ ହୋଇ ॥
ବଇଁଶୀ ମାନେ କେ ଲମ୍ବାଇ । ସମସ୍ତେ ବେଷ୍ଟଣ ବଜାଇ ॥
କେ ଶିଙ୍ଘା ମାନଙ୍କେ ଲମ୍ବାନ୍ତି । କେ ବାହୁମୂଳେ ଖଞ୍ଜି ଥାନ୍ତି ।୨୦।
କେ ରେଜୁ ଶିରରେ ବାନ୍ଧଣି । ନାନା ବିନୋଦ ବେଶ ପୁଣ ॥
କେ କ୍ଷୁଦ୍ର ଭରସ କରନ୍ତି । କୃଷ୍ଣ ଶ୍ରୀମୁରେ ଧରି ଥାନ୍ତି ॥
ଏ ପକ୍ଷୀ ମହିମା ଅପାର । କୃଷ୍ଣର ଅଙ୍ଗରୁ ବାହାର ।୨୫।

ଜଡୁଡ଼ ଅଗରେ ବାନ୍ଧଣ | କେ ପୁଣ ଧରନ୍ତୁ ପାଶେଣ ||
ମୟୂର ମୁଠା ହସ୍ତେ ଧର | ଆନନ୍ଦେ ନୃତ୍ୟ ଗୀତ କର |୨୫|
ଶ୍ୟାମ ଶ୍ୟାମ ଯେ ବୋଲି ଭଜ | ହଚଜ ପକ୍ଷୀ ନମଃ କର ||
ଓଁ ମିଶ୍ରିଣ ବାବକ୍ଷର | ମନ୍ତ୍ରକୁ ସୁମର ମନର ||
ମଣ୍ଡଳ ଗୋଟିଏ ବେଢ଼ାଇ | ଅଳଗେ ବାରଣ୍ଣ୍ୟ ଯୋଇ ||
ମନ୍ତ୍ରକୁ ତହିଁରେ ଲେଖିବ | କୃଷ୍ଣ ଅକ୍ଷର ମଧ୍ୟେ ଥିବ ||
ମୟୂର ପକ୍ଷୀଙ୍କ ରଖିବ | ବସ୍ତ୍ରଗୋଟିଏ ଯତ୍ନେ ଦେବ |୩୦|
ତାମ୍ବୁଲ ଚନ୍ଦନ ଯେ ଫୁଲ | ପୂଜା କରିବ ଯେ ଅମୂଲ୍ୟ ||




ତରସ ଚୁଳ ଆଦ ଯେତେ | ଶିଷ୍ୟଙ୍କୁ ଟେକ ଦେବ ହସ୍ତେ ||
ମନ୍ତ୍ର ଯନ୍ତ୍ର ଯେ ତନ୍ତ୍ର କନ୍ଧୁ | ଶିଷ୍ୟ ବନ୍ଧିବ ହେତୁ ହୋଇ ||
ଏ ଭେଦ ନ ଜାଣି ବନ୍ଧିବ | ହେଲ ସେ କର ପକାଇବ ||
ମନ୍ତ୍ର ନ ଜାଣି ଯେଉଁ ପ୍ରାଣୀ | ଚନ୍ଦ୍ରକା ଚୂଳ ବନ୍ଧେ ପୁଣି |୩୫|
ଶଏ ଜନମ ନର୍କେ ଜାତ | ଯେ ନର ନ ଜାଣି ବନ୍ଧେ ତ ||
ମନ୍ତ୍ର ଜାଣିଣ ଯେ ବନ୍ଧଇ | ଯମରଦଣ୍ଡ ତାକୁ ନାହିଁ ||
ମଦ୍ୟ ମାଂସେ ସ ଭୋଗ କର | କୁଙ୍କୁମ ପରସ୍ତି ଶ୍ରୀ ହର ||

ଯେ ନର ଏ ପକ୍ଷୀ ବନ୍ଦନ୍ତ । ଦନ୍ତୀ ଦାନବ ଜନ୍ମ ପାନ୍ତ ॥
ତରସ ଅଧିକାର ପୁଣ । ମୁକୁନ୍ଦ ଦାସର ପ୍ରମାଣ ।୪୦।
ଚୂଳର ଅଧିକାର ପୁଣ । ଦାସ ଯେ ଅନନ୍ତ ପବନ ॥
ପଙ୍ଖାର ଅଧିକାର ଯେତେ । ଅନନ୍ତ ରଖ ତୁମ୍ଭ ଚତେ ॥
ଆଲମ୍ବ ଛତ୍ର ଅଧିକାର । ହନୁଆନ ଦାସର ବସ୍ତୁର ॥
ମୟୂର ଦଣ୍ଡ ବଳଣ । ଯାଦବ ଅଧିକାର ପୁଣ ॥
ଚାଚଣା ଅଧିକାର ପୁଣ । ବାଳକ ଦାସର ପ୍ରମାଣ ।୪୫।
ବଇଁଶୀ ଅଧିକାର ଯେତେ । ଗୋବିନ୍ଦ ଦାସର ପୁରତେ ॥
ଛତର ଅଧିକାର ମାନ । ବସ୍ତ୍ର ଘେନଣ ଥିବ ଜନ ॥
ଅଳକାବଳି ଯେତେ କମ । ଏ ସବ ଦାସ ଯେ ସୁଦାମ ॥
ସ୍ୱାତ ତରସମାନଙ୍କର । ଆନନ୍ଦ ଅନ୍ତ ଅଧିକାର ॥
ହସ୍ତ ମୁଠାରେ ଯାବ ଯେତେ । ବୃନ୍ଦାଦାସ ହେ ରଖ ଚତେ ।୫୦।
ଟାସ୍ୱାର ଅଧିକାର ମାନ । ମଧୁଦାସ ହେ ଘେନ ମନ ॥
ପୂର୍ବ ଜନମ ଗୋପପୁର । ଥିଲେ ଯେ ଶ୍ରୀକୃଷ୍ଣ ସଙ୍ଗର ॥
ଗହର ଚନ୍ଦ୍ର ସଙ୍ଗେ ଜାତ । କୀର୍ତ୍ତନ ସବରେ ହନ୍ତୁ ॥
ଓଡ଼ିଶା ଦେଶରେ ସ୍ୱବାସ । ପ୍ରକାଶ କର ଗୋପ ଅଂଶ ॥
ତୁମ୍ଭଙ୍କୁ ଦେଖିଣ ଶିଖିବେ । ପାଷଣ୍ଡ ଜନ ସେ ଶୁଣିବେ ।୫୫।
ଓଡ଼ିଆ ଗୀତ ବୃନ୍ଦାବନ । ଖେମଟା ତାନ ମାନ ଘେନ ॥
ଓଡ଼ିଶା ଗୋପାଳ ଶିଖିବେ । ତୁମ୍ଭଙ୍କୁ ଗୁରୁ ପୂଜା ଦେବେ ॥
ତୁମ୍ଭେ ଯେ ସ୍ୱାମପାଦେ ସେବ । ସ୍ୱାମ ତ ଅଚ୍ୟୁତ ପୂଜବ ।୫୮।

ଇତି ଶ୍ରୀଗୁରୁଭକ୍ତିଗୀତାକଥନେ ନାମ ଚତୁଃପଞ୍ଚାଶତ୍ ଛାନ୍ଦ ।

## ପଞ୍ଚପଞ୍ଚାଶତ୍ ଛାନ୍ଦ

ବାଳକ ଗୋବିନ୍ଦ ଦାସର । ମନର ସଂଶୟ ଯେ ହର ।୧।
ଟୋପି ଜନମ ମୂଳ ଯେତେ । ଗୁରୁଙ୍କ ବଚନ ପରତେ ॥
ଶୁଣ ହେ ବାରଟିଆ ଦାସ । ସହାସ ଦାସ ହେ ହରଷ ॥
ଚନ୍ଦ୍ର ଠାବରୁ ଲୁଅ ଜାତ । ଭୂମିରେ ପଡ଼ିଲା ସେହୁ ତ ॥
ବୃକ୍ଷ ଗୋଟିଏ ଜନମିଲା । ତହିଁରୁ ପୁଷ୍ପ ଉପୁଜିଲା ।୫।
ସେ ପୁଷ୍ପ ଦେବଧର୍ମ ଗ୍ରହିଁ । ହରଷ ଚଢ଼େ ତାକୁ ନେଇ ॥
ବିରଞ୍ଚି ନାରାୟଣ ପୁଣ । ସେ ଟୋପି କଲେକ ନିର୍ମାଣ ॥
ଚନ୍ଦ୍ର ଠାବରୁ ଏକଝାଳ । ପଡ଼ିଲା ବୃକ୍ଷର ଯେ ତଳ ॥
କୁଷ୍ମାଣ୍ଡ ବୋଲି ଏକଜାତ । ଅମଳ ବସ୍ତୁ ଏ ସମ୍ଭୂତ ॥
ଧର୍ମ ବିରଞ୍ଚି ନାରାୟଣ । ଟୋପି ଯେ ଅମଳାଣ ପୁଣ ।୧୦।
ପାଟ ଯେ ଟୋପି ଏଣୁ ହୋଏ । ସୁଦେ ଶୁକଳ ଟୋପି କହେ ॥
ନେଲି ସୁଆମ ଆକୁଆଣୀ । ଲିପି ହଳଦୀ ଢାଉ ପୁଣି ।୧୨।
ପ୍ରଥମେ ଗଜ ବୋଲି କଲେ । ଆଗ ସମ୍ମୁଖକୁ ଢାଳିଲେ ॥
କର୍ଣ୍ଣକୁ ସ୍ଥାନ ଯେ ରଖିଣ । ଉପରେ ଫୁଲ ଯେ ନିର୍ମାଣ ॥
ଦ୍ୱିତୀୟେ ଭଗବତ କଲେ । କର୍ଣ୍ଣକୁ ଯୋଡ଼ାଇ ରଖିଲେ ।୧୫।
ତୃତୀୟେ ମଣ୍ଡଳ କରିଣ । ଟୋପି ଗୋଟିଏ ନିର୍ମାଣିଣ ॥
ତ୍ରିକୋଣ ପ୍ରାୟେ ଶସ୍ତ୍ର କରି । କଣ୍ଠକୁ ପଡ଼ିଲା ବିସ୍ତାର ॥
ଉପରେ ସୂତ ନାନା ବର୍ଣ୍ଣ । ଛନ୍ଦଣ ରଖିଲେ ଯତନ ॥
ବିରକ୍ତ ଟୋପି ବନାଇଲେ । ଏ ଗୁଣ ଯତନେ ରଖିଲେ ॥
ବିରଞ୍ଚି ବିଷ୍ଣୁ ଶିରେ ନେଇ । ଗଜ ଯେ ବେକ ଟୋପି ଦେଇ ।୨୦।

---

୧୨—୧ ସୁଆମ ଅଛୁ (କ) ;
୧୨—୨ ଠାଉ ପୁଣି (ଖ, କ) !

ମଣ୍ଡଳ ଟୋପି ଶିବ ଶିର । ବ୍ରହ୍ମା ଯେ ଦେଇ ଯୋଡ଼େ ଭରି ।୨୧।
ବିରକ୍ତ ଟୋପି ବ୍ରହ୍ମାଶିର । ରଖିଲ ଆପଣା ଠାବର ॥
ଦେବଗଣଙ୍କ ଠାରେ ପୁଣ । ଭଗବତ ଟୋପି ରଖିଣ ॥
ଏ ଯୁବ ଭେଖକୁ ଅନାଇ । ବହୁତ ଭେକ ଜାତ ହୋଇ ॥
ସତ୍ୟ ତ୍ରେତୟା ବେନି ଯୁଗ । ଦ୍ୱାପର ଯୁଗ ଗଲ ଶେଷ ।
କଳିଯୁଗର ଶେଷ ପାଇଁ । ରାମାନନ୍ଦ ଯେ ଜାତ ହୋଇ ॥
ଦୁଗ୍ଧରେ ନିମାନନ୍ଦ ଜାତ । ବିଷ୍ଣୁ ଶ୍ୟାମ ଯେ କୃତାଗ୍ନେ ତ ॥
ମାଧ୍ୱାଚାର୍ଯ୍ୟ ଯେ ଚତୁର୍ଥେଣ । ଏ ଗୁରୁ ଜନମ ମର୍ତ୍ତ୍ୟେଣ ॥
ବିରକ୍ତ ଟୋପି ରାମାନନ୍ଦ । ଶିରରେ ବନ୍ଧିଲେ ଆନନ୍ଦ ॥
ଗଜ ଯେ ବେନି ଟୋପି ଜାଣ । ନିମାନନ୍ଦ ଯେ ମସ୍ତକେଣ ।
ମଣ୍ଡଳ ଟୋପି ବିଷ୍ଣୁଶ୍ୟାମ । ଶିରରେ ବନ୍ଧିଣ ଉତ୍ତମ ॥
ମାଧ୍ୱାଚାର୍ଯ୍ୟ ଯେ ଭଗବତ । ଏ ଟୋପି ବନ୍ଧିଲେ ଶିରେତ ॥
ଏମନ୍ତ କହୁଥିଲେ ଅନ୍ତେ । ତାଙ୍କର ଶିଷ୍ୟ ଯେ ପୁଚ୍ଛନ୍ତେ ॥
ଏ ଭେଦ ତାହାଙ୍କୁ କହିଣ । ଭେକ ଯେ ଦେଲେ ତାଙ୍କୁ ପୁଣ ॥
ଏମନ୍ତ ବୈଷ୍ଣବ ପ୍ରକାଶ । ଶୁଣ ହେ ତୁମ୍ଭେ ବାରଦାସ ।
ଗୋପାଳ କୁଳ ଶିଷ୍ୟ କର । ଶୁଣ ହେ ତହିଁର ବିଚାର ॥
ସନ୍ଧରେ ମନ୍ତ୍ରକୁ ଲେଖିବ । ବସ୍ତ୍ର ଯେ ପୂଜା ବାନ୍ଧି ଦେବ ॥
ନିମାନନ୍ଦଙ୍କ ସୁମରଣ । ଗଜେନ୍ଦ୍ର ଟୋପି ଯେ ରଖିଣ ॥
ମନ୍ତ୍ର ପଢ଼ିଣ ଶିରେ ଦେବ । ଶିଷ୍ୟର ଉଚ୍ଚ ହୋଇବ ॥
ମନ୍ତ୍ର ନ ଜାଣି ଭେକ ବନ୍ଧୁ । ତିନି ଜନମ ଗଣ୍ଡ ହୋଇ ।
ମନ୍ତ୍ର ଜାଣିଣ ଟୋପି ବନ୍ଧେ । ଦୁସ୍ତର ତା ଅଙ୍ଗେ ନ ଥାଏ ॥
ଅମଳାଏଣ ଟୋପି ପୁଣ । ବନ୍ଧନ୍ତି ଭଗତର ଗଣ ॥
କଳିଯୁଗରେ ଟୋପି ବଡ଼ । ଦେଖିଲେ ତରିବେ ସେ ମୂଢ଼ ॥
ପଣ୍ଡିତ ସଦ୍ଗୁରୁ ଜାଣନ୍ତି । କଳିର ଜନ ଦେଖି ଗଢ଼ ॥

---

୨୧—୨ ବ୍ରହ୍ମା ଯୋଡ଼ିଣ ବେନିକର (କ) ;

ଅଷ୍ଟ ତାଳକ ଚଉତିନା । ଏ ଗଜ ବେଦର ଲକ୍ଷଣା ।୪୯।
ପାଞ୍ଚ ପାଞ୍ଚ ଯେ ବେଦ କର । ଉପରେ ତ୍ରିଗୁଣ ଯେ ଧର ॥
ଓଁ ହର ବ୍ରହ୍ମା ବୋଲି ପୁଣ । ବସନାସ୍ତୁ ଯେ ସୁମରଣ ॥
ନମ ଯେ ତ୍ରିକୋଣେ ବସାଇ । ଉପରେ ଅକ୍ଷର ନ ଥୋଇ ॥
ଏଗାର ଅକ୍ଷର ସୁମର । ଏ ଷ୍ଟୋପି ମନ୍ତ୍ରର ଉତ୍ତର ॥

ଷ୍ଟୋ ପି

ମଃ

| | | | | |
|---|---|---|---|---|
| ଓଁ | ହ | ର | ବ୍ର | ହ୍ମା |
| ବ | ସ | ନା | ସ୍ତୁ | ନ |

ଷ୍ଟୋପିର ଅଧିକାର ମାନ । ମୁକୁନ୍ଦ ହସ୍ତରେ ପ୍ରମାଣ ।୫୦।
ଏ ଚଉତିରୂନା ଅଧିକାର । ଅନନ୍ତ ଦାସ ତୋ ଠାବର ॥
ଗୋପ ଗୋପାଳ ଭେଖ ଏହୁ । କୃଷ୍ଣଙ୍କୁ ବ୍ରହ୍ମା ପୁଜନ୍ତିହେଁ ॥
କୃଷ୍ଣର ଅଂଶ ଗୋପ ପୋଏ । ଷ୍ଟୋପି ଚୈତୃନା ଶିରେ ଶୋହେ ॥
ଏଣୁଟି ତୁମ୍ଭେ ସାର ହେଲ । ଷ୍ଟୋପି ଚୈତୃନାକୁ ବହିଲ ॥
ଅନନ୍ତ ଗୋପାଳ ବନ୍ଦଣ । ଗୋପରେ ଯେତେ ଶାଖାଗଣ ।୫୧।
ଜଙ୍ଘର ବକ୍ଷେ ତୁମ୍ଭେ ଜାତ । ଗୋପାଳ କୁଳରେ ମୁଁ ଖ୍ୟାତ ॥
ମନ୍ତ୍ର ଯନ୍ତ୍ରର କଥାମାନ । ଶୁଣିଲ ଧନ୍ୟ ହୋ ଜୀବନ ॥
ଏଣୁଟି ତୁମ୍ଭେ ସାର ହେଲ । ଗ୍ରନ୍ଥାସ ଲୀଳାରେ ମଜ୍ଜିଲ ॥
ନାମ କୀର୍ତ୍ତିନେ ଦନ ହର । ଜନମ ସ୍ୱର୍ଗ୍ୟ ଯେ ତାହାର ॥
ଯେ ଶିଷ୍ୟ ଗୁରୁ ସେବା କରେ । ତା ସ୍ୱର୍ଗ୍ୟ ଅନ୍ତ କେବା କରେ ।୬୦।
ମନ୍ତ୍ର ଯେ ଗୁରୁକୁ ପଚ୍ଚର । ବାଜ ସେ ବୋଲଣ ବିସ୍ତର ।୬୧।

---

୪୯-୧—ଅଷ୍ଟ ତାଳକ ଚଉତିରୂନା (ଖ);
୬୧-୨—ବୋଲଣ ଆବୋର (କ);

ଗୁରୁଙ୍କ ମନ୍ତ୍ର ନ ପୁଚ୍ଛଇ । ଅଗାଢ଼ ସେ ଶିଷ୍ୟ ଅଟଇ ॥
ଗୁରୁଙ୍କ ପୂଜା କରି ତାର । ମନ୍ତ୍ର ଯନ୍ତ୍ରରେ ତତପର ॥
ଜ୍ୟୋତି ସମାଧି ଗୁମ୍ଫା ଶିଖେ । ତା ପୁଣ୍ୟ କେବା କହୁ ମୁଖେ ॥
ଜ୍ୟୋତବ୍ରାନନ୍ଦ ଆଶ୍ରେ ପୁଣ । ଦବା ଜଣିରେ କ୍ଷଣେ କ୍ଷଣ ।୬୫।
ତେବେ ତ ଜନମ ସୁଫଳ । ଏ ବିନ୍ଦୁ କେଉଁ ସେ ଫଳ ॥
ଗୋପାଳ ରୂପକୁ ଭଜଣ । ଅଚ୍ୟୁତ ମାଗଇ ଶରଣ ।୬୬।

ଇତି ଶ୍ରୀଗୁରୁଭକ୍ତଗୀତା ଜଅନେ ନାମ ପଞ୍ଚପଞ୍ଚାଶତ୍ ଛାନ୍ଦ



# ଷଟ୍ ପଞ୍ଚାଶଦ୍ ଛାନ୍ଦ

ହନୁଆନ ପବନର କଥା । ଗୁରୁ ଫେଡବା ମନୁ ବ୍ୟଥା ।୧।
କାଛଟା କ ରୂପେ ଭଆଣ । ଏ କଥା ଶୁଣିମା ଶ୍ରବଣ ॥
ସନ୍ନ୍ୟାସ ଦାସରେହେଁ ବଡ଼ । ଏକଥା ଅଟେ ବଡ଼ ଗୂଢ଼ ॥
ଅନନ୍ତ ବାସୁକି ପାତାଳ । ଧରଣ ନାମକୁ ମଣ୍ଡଳ ॥
ଅଣ୍ଟାରେ ନାଗ ଏକ ବାନ୍ଧ । କୌପୁନ ପୀତାମ୍ବର ପିନ୍ଧ ।୫।
ଅଦ୍ଭୁ ଗୋଟାଏ ଅଣ୍ଟାରେଣ । ନେତ୍ରା ଯେ କୌପୁନ ପିନ୍ଧଣ ॥
ଶିବ ଏମନ୍ତ ପିନ୍ଧଛନ୍ତି । ନାମକୁ ଧ୍ୟାନ ଯେ କରନ୍ତି ॥
ନାଗ ପ୍ରାଣ୍ଟେକ ସୂକ୍ଷ୍ମ ଡୋର । ବିଷ୍ଣୁ ଯେ ଅଣ୍ଟାରେ ପ୍ରଦ୍ବର ॥
ସୂକ୍ଷ୍ମରେ ବସନ ପିନ୍ଧଣ । ନିବନ୍ଧ କଲେକ ଭଆଣ ॥
ଝନ ଦେବଙ୍କୁ ବ୍ରହ୍ମା ଦେଇ । ପିନ୍ଧାଇ ପୂଜା ଯେ କରାଇ ।୧୦।
ଅଦ୍ଭୁବନ୍ଧ ଯେ କହୁପୁନ । ବାସୁକି ଅଛନ୍ତି ଯେ ଘେନ ॥
କୌପୁନ ନାଗବନ୍ଧ ପୁଣ । ଶିବ ଯେ ବନ୍ଧୁଛନ୍ତି ଜାଣ ॥
ବୀରବନ୍ଧ ଯେ କୌପୁନ । ବିଷ୍ଣୁ ଅଛନ୍ତି ତାହା ଘେନ ॥
ସୂକ୍ଷ୍ମରେ ଆଡ଼ ବନ୍ଧ ପୁଣ । ସୂକ୍ଷ୍ମରେ କୌପୁନୀ କରଣ ।
ବ୍ରହ୍ମା ଯେ ପିନ୍ଧିଲେ କଟୀର । ଏ ଗୁଣ ବ୍ରହ୍ମା ଭଆଣର ।୧୫।
ସତ୍ୟ ଯୁଗର ମୁନିମାନେ । ଏ ଭେକ ବନ୍ଧୁଲେ ଯତନେ ॥
ତ୍ରେତୟା ଯୁଗେ ବାନରେଣ । ଏ ଭେକ ବନ୍ଧୁଲେ ଯତନ ॥
ଦ୍ୱାପରେ ଗୋପର ଗୋପାଳେ । ଏ ଭେକ ବନ୍ଧୁଲେ ମଣ୍ଡଳେ ॥
କଳରେ ଗୁରୁ ବଇଷ୍ଣବ । ବନ୍ଧୁଲେ ଆନନ୍ଦ ଯେ ସ୍ୱବ ॥
ରାମାନନ୍ଦ ଯେ ନିମାନନ୍ଦ । ବିଷ୍ଣୁ ଶ୍ୟାମ ଯେ ମାଧ୍ୱାଚାର୍ଯ୍ୟ ।୨୦।
ମୁକ ଯେ ବନ୍ଦୁ ନବନ୍ତୀନ୍ତ୍ର । ହନୁମାନ ଯେ ଅଟେ ଯତ ।୨୧।

---

୨୧-୧ —ବନ୍ଦୁ ବନ୍ଧ ଚନ୍ତ୍ର (ଖ);

ଗୋପାଳ ନପୁଂସକ ବେଶ । ବୈରାଗୀ ରୂପ ସେ ଗୋସାଇଁ ॥
ବନ୍ଧ୍ୟା ନାରୀ ବନ୍ଧ ଦେଲେ । ବୈରାଗୀ ଏଣୁ ବୋଲାଇଲେ ॥
ଏ ରୂପ ଧର୍ମ ଦାନ୍ତ ଜାତ । ବୈରାଗୀ ବସ୍ତୁତ ବସ୍ତୁତ ॥
ଜଟା ସେ ଶିରରେ ବନ୍ଧଣ । ନାରାୟଣ ସେ ସୁମରଣ । ୨୫ ।
ଫଳ ସେ ମୂଳକୁ ଭକ୍ଷିଲେ । ଶ୍ରୀରାମ ନାମ ସୁମରିଲେ ॥
ଦ୍ୱାପରେ କ୍ଷୀର ସେ ଭକ୍ଷିଣ । ବୃନ୍ଦାବନରେ ଜପେ ପୁଣ ॥
କଳିରେ ଅନ୍ନ ଭୋଗ କରି । ନାମ ସେ ମୁଖରେ ସୁମରି ॥
ଜଳ ସେ ଭୋଗ ସର୍ବେ କଲେ । ନାଗ ସେ ପଥ ବୋଲାଇଲେ ॥
ସେତୟା ବନସ୍ତେ ବୁଲିଣ । ଦିଗାମ୍ବର ସେ ନାମ ପୁଣ ।୩୦।
ଦ୍ୱାପରେ ନୃତ୍ୟ ଗୀତ କଲେ । ଦାସ ସେ ପଥ ଭିଆଇଲେ ॥
କଳିରେ ବସି ଏକଠାରେ । ବୈରାଗ ନାମ ଏ ସଂସାରେ ॥
ରାମାନନ୍ଦ ସେ ନିମାନନ୍ଦ । ଚଉଦ ଶହ ବଣୀ ବନ୍ଧ ।୩୩।
ତେରଶ ଶହ ସେ ବରଷ । ବସିଲେ ନିମାନନ୍ଦ ଦେଶ ॥
ବାରଶ ବରଷ ବସିଣ । କୃଷ୍ଣ ଶ୍ୟାମ ସେ ନାମ ଗୁଣ ।୩୫।
ମାଧବ ଆଚାର୍ଯ୍ୟ ବସିଲେ । ଏଗାର ଶହ ଦନ ନେଲେ ॥
ବୃନ୍ଦେ ସେ ଗୋପୀମାନେ ବସି । ନାମ ଶୁଣିଲେ ଦିବା ନିଶି ॥
ନଳ ସେ ନୀଳ ହନୁ ପୁଣି । ଚଉତିଆ ବସି ନାମ ଗୁଣି ॥
ସର୍ବ୍ୟର ମୁନି ବନେ ବସି । ନାମ ଗୁଣିଲେ ଅହର୍ନିଶି ॥
କଳିରେ ଚୈତନ୍ୟ ଠାକୁର । ବସିଲେ କ୍ଷେତ୍ର ଦକ୍ଷିଣର ।୪୦।
ଚଉଦ ବରଷ ବସିଲେ । ଯତନେ ନାମକୁ ଭଜିଲେ ॥
ପୂର୍ବର ବହୁର ହେ ଶୁଣ । ଏ ରୂପେ ଯୁଗର ଭିଆଣ ॥
ପିଣ୍ଡିର ତୋର କଇଦୁନ । ନାମ ଭଜବ ହୋଇ ଲୁନ ॥
ପରମ ପଦ ଏ ଅଟଇ । ବସିଣ ନ ପାରନ୍ତି କେହି ॥
ବଦ୍ରିକା ଉଦ୍ଧବ ବସିଲେ । ନାମକ ହୃଦରେ ଗୁଣିଲେ ।୪୫।
ଗରୁଡ଼ ବସିଣ ଯତନେ । ନାମକୁ ଭଜିଲେ ଅମନେ ॥

୩୩ —ବଣୀ ବନ୍ଧ (କ);

ରମଗ୍ନେ ନାମ ଭଜବାକୁ । କୌପୁନ ଭେଖ ଶୋଭା ତାଙ୍କୁ ॥
କୃଷ୍ଣ ପବନ ଦାସ ସୁତ । ଗୋପାଳ କୁଳର ଏମନ୍ତ ।୪୮।
ନାଗ ପ୍ରାପ୍ତେକ ସୂକ୍ଷ୍ମ ଡୋର । ଗୋଟିଏ କରିବ ସୁନ୍ଦର ॥
ଦଶ ଅଙ୍ଗୁଳ କଉପୁନ । ଯତନ କରଣ ଯେ ଘେନ ।୫୦।
ଦସର ଅଣ୍ଟାରେଣ ଦେବ । କଳାକୁ ଖଣ୍ଡିଏ ଲମ୍ବିବ ॥
ନାଭି ତଳରେ ଲୁଗ୍ଣଇବ । ପିଣ୍ଡୁ ସ୍ଥଗକୁ ଦିଶୁଥିବ ॥
ଏ ସ୍ଥବେ ଡୋର କଉପୁନ । ଯତନ କରଣ ଯେ ଘେନ ॥
ରମାନନ୍ଦ ଯେ ବଇଷ୍ଣବ । ଏମନ୍ତ କୌପୁନ ପିନ୍ଧିବ ॥
ନାଗ ପ୍ରାପ୍ତେକ ଡୋର କରି । ଅଣ୍ଟାରେ ଫେରି ଏକସରି ।୫୫।
ଲେଙ୍ଗୁଟି ନାମଟି ଏଦ୍ୱାର । ଆଗକୁ ପଡ଼ିଥିବ ଫେର ॥
ରମାନନ୍ଦ ଯେ ଏଦ୍ୱା ବନ୍ଧୁ । ପଛର ସ୍ଥଗ ନ ଦିଶଇ ॥
ନାଗବନ୍ଧ ଯେ କଉପୁନ । ଏମନ୍ତ ଭଗତକୁ ଚିହ୍ନି ॥
ଏକ ଯେ ନାଗ ଡୋର ପୁଣ । ଦୁଇ ସରି ଯେ ଅଣ୍ଟାରେଣ ॥
ଆଠ ଆଙ୍ଗୁଳ କଉପୁନ । ଲୁଚିବ ଆଗ ପଛ ଦେନ ।୬୦।
ବଷ୍ଣୁ ଶ୍ୟାମ ଯେ ବଇଷ୍ଣବ । ଏମନ୍ତ କୌପୁନ ପିନ୍ଧିବ ॥
ଛଅ ଆଙ୍ଗୁଳ ରମାନନ୍ଦ । ଲେଙ୍ଗୁଟି ପିନ୍ଧିଣ ଆନନ୍ଦ ॥
ଚାରି ଆଙ୍ଗୁଳ କଉପୁନ । ଅଣ୍ଟାରେ ବାନ୍ଧିଥିବ ଘେନ ॥
କୌପୁନ ଷୋଳ ଆଙ୍ଗୁଳର । ଆଗକୁ ପଡ଼ିବ ଯେ ଫେର ॥
ପିଣ୍ଡୁ ସ୍ଥଗରେ ଲୁଚି ଥିବ । ମାଧ୍ୱଆଗ୍ନର୍ଣ୍ଣ ଏହୁ ସ୍ଥବ ।୬୫।
ବ୍ରହ୍ମ ବନ୍ଧ ଯେ କଉପୁନ । ଏ ଚାରି ଚଧି ଛନ୍ତ ଘେନ ॥
ବନ୍ଧଡ଼ି ତ୍ରି ଗୁଣ ବଳଣ । ଡୋର ଯେ ଗୋଟିଏ ଖଞ୍ଜିଣ ॥
ନବ ଆଙ୍ଗୁଳ କଉପୁନ । ଆଗକୁ ପଡ଼ିବ ଯେ ଘେନ ॥
ପଛ ସ୍ଥଗ ଯେ ନ ଲୁଚିବ । ଏମନ୍ତ କାଛଟାର ସ୍ଥବ ॥
କାଛଟା କଟୀ ସୂତା କହୁ । ଭଗତ ଜନ ଲକ୍ଷ୍ଣ ଏହୁ ।୭୦।
କାଛଟା ଗୋପାଳ ବନ୍ଧଣ । ଗୋମାତା ସେବା କରି ପୁଣ ॥

ହ୍ର ଶବଦ ନିରନ୍ତର । ଧ୍ୟାଇଲେ ନରନ୍ତେ ମୁଖର ॥
ନିରଞ୍ଜନ ବୁଲି ନିରନ୍ତର । ବୈରାଗ୍ୟ ଭଜନ ତାଙ୍କର ॥
ସମସ୍ତ ଜାଣି ରତ୍ନ କଲେ । କ୍ଷୀର ଯେ ଅଧାର ଭକ୍ଷିଲେ ॥
ହନୁ ଯନ୍ତଙ୍କ ଆଗ୍ରେ କର । ନାଗା ଅନନ୍ତ ଶ୍ରେଷ୍ଠ ସର ।୭୫।
ରକ୍ତ ଯନ୍ତ୍ର ସୁମରଣ । ଗୋପାଳ ଏଣୁ ସାର ପୁଣ ॥
ବ୍ରହ୍ମ କୌପୁନ ସନ୍ନ୍ୟାସୀ । ପିଣ୍ଡଣ ହଂସ ଧାନ୍ୟା ଘୋଷି ॥
ବୀର କୌପୁନ ନମାନନ୍ଦ । ଗୋପାଳ ମନ୍ତ୍ର ବସି ବନ୍ଧ ॥
ନାଗ କୌପୁନ ପନ୍ତରଣ । ରାମ ତାରକ ସୁମରଣ ॥
ଅନ୍ଧ କୌପୁନ ପିଣ୍ଡ ମୁନ । ନାରାୟଣ ଯେ ମନ୍ତ୍ର ଘେନ ।୮୦।
କାଛଟା ଗୋପାଳ ପିଣ୍ଡଣ । ହର ଶବଦ ଘୋଷି ପୁଣ ॥
ଶୁଣ ପବନ ଦାସ ଚନ୍ଦ୍ର । ଗୋପାଳ କୁଳର ମନ୍ତ୍ର ॥
କାଛଟା ବୀର କହୁପୁନ । ଗୋପାଳ ପୁଅଙ୍କୁ ସେ ଘେନ ॥
ଯନ୍ତ୍ରରେ ମନ୍ତ୍ରକୁ ଲେଖିବ । ଏ ଭେଦ ତାହାଙ୍କୁ କହିବ ॥
ଶିଷ୍ୟଙ୍କୁ ଭେଖ ଦେବ ପୁଣ । ପୂଜା ର ବିଧି ଯେ କରଣ ।୮୫।
ମନ୍ତ୍ର କହିବା ଏବେ ଶୁଣ । ପନ୍ଦର ଅକ୍ଷର ପ୍ରମାଣ ॥
ଅନ୍ଧ ବନ୍ଧ ଯେ ନାଗ ବନ୍ଧ । ବୀର ନାମ ଯେ ବୋଲି ବନ୍ଧ ॥
ଦିପଣ୍ଡ କରଣ ଲେଖିବ । ମନ୍ତ୍ରକୁ ଛନ୍ଦି ବସାଇବ ॥
ମନ୍ତ୍ର ନ ଜାଣି ଯେ ପିନ୍ଧଇ । ସେ ପ୍ରାଣୀ ବଜ୍ରାଘାତ ହୋଇ ॥
ସାତ ଜନମ ଅପମୃତ୍ୟୁ । ଏଥିରେ ଅଛୁ ଏତେ ହେତୁ ।୯୦।
ଯେ ମନ୍ତ୍ର ଜାଣିଣ ପିନ୍ଧଇ । ଯମର ଦଣ୍ଡ ତାକୁ ନାହିଁ ॥
ଆବର ଜୋଡ଼ିଏ ଅକ୍ଷର । ଏ ମନ୍ତ୍ର ଛନ୍ଦର ବିସ୍ତର ॥
ଓଁ ଶ୍ରୀ ଅନନ୍ତ ସୁନ୍ଦର । ନମାମ୍ୟହଂ ଯେ ନିରନ୍ତର ॥
ଓଁ ଶ୍ରୀ ବଜ୍ର କାଛଟିକ । ଶ୍ରୀ ଓଁ ନମ ବୋଲି ଏଥିକ ।୯୪।
ଅନ୍ଧ ବନ୍ଧ ଯେ ନାଗ ବନ୍ଧ । ବୀର ବନ୍ଧ ଯେ ନାମ ଛନ୍ଦ ।୯୫।
ବଜ୍ର କାଛଟି ଏଣୁ କହୁ । ଅଣ୍ଟାରେ ଲେହ ଯେ ଖଞ୍ଜଇ ।୯୬।

---

୯୪—୨ ଶ୍ରୀ ଓଁ ନାମ (କ), ୯୬—୨ ଲେହ ଯେ ଧନ୍ଦଇ (ଖ);

ଡାନ୍ତର ଶିକୁଳି ଖଞ୍ଜଇ । ଅନନ୍ତ ଡାକୁଛି ଯେ କନ୍ଧ ॥
ଅନନ୍ତ ବଜ୍ର ବନ୍ଧ ବନ୍ଧ । ଅନ୍ଧ ନାଗ ଯେ ବନ୍ଧ ହୋଇ ॥
ବୀର ବନ୍ଧ ଯେ ବ୍ରହ୍ମ ବନ୍ଧ । ମୁନ ବନ୍ଧ ଯେ ଗୋପବନ୍ଧ ॥
ହର ଶବଦ ମୁଖେ ସ୍ମର । ଅନନ୍ତ ବନ୍ଧେ ଗୋପ ଧର ।୧୦୩।
ବଜ୍ର ବନ୍ଧକୁ ବନ୍ଧ ପୁଣ । ସନ୍ୟାସ ହଂସ ଦୀକ୍ଷା ପୁଣ ॥

ଜ ଦ୍ୱା

| | | | | |
|---|---|---|---|---|
| ଓଁ | ଶ୍ରୀ | ଅ | ନ | ନ୍ତ |
| ନ | ମା | ମ୍ୟ | ହଂ | ଓଁ |
| ଶ୍ରୀ | ବ | ଜ୍ର | କା | ଛେ |
| ଟି | ଶ୍ରୀ | ଓଁ | ନ | ମ |
| ଓଁ | ଅ | ନ୍ଧ | ବ | ନ୍ଧ |
| ନା | ଗ | ବ | ନ୍ଧ | ବୀ |
| ର | ବ | ନ୍ଧ | ନ | ମ |

ନ ପୂ

ଅନ୍ଧ ବନ୍ଧକୁ ଅନ୍ଧ ପୁଣ । ମୁନ ଯେ କଲେକ ଧାରଣ ॥
ନାଗବନ୍ଧକୁ ସୁମରଣ । ଯୋଗୀଏ କଲେକ ଧାରଣ ॥
ବୀରବନ୍ଧକୁ ସୁମରଣ । ଦାସ ଆବୋର ଦାସଗଣ ॥
ବ୍ରହ୍ମବନ୍ଧକୁ ଆଶ୍ରେ କର । ବ୍ରାହ୍ମଣମାନେ ତପ ଧର ।୧୦୪।
ମୁନବନ୍ଧକୁ ଆଶ୍ରେ କଲେ । ହସାରେ ଜନ ଆରାଧିଲେ ॥
ଢାଇଁଟା ବୀର କଡ଼ପୁନ । ଧାର ଗୋପାଳ ଥିବ ଯେଣ ॥

ବସ୍ତ୍ର ଯେ ପରଶ ହୋଇବ । ଶୁଚବନ୍ତ ସେ ଅଙ୍ଗ ଥିବ ॥
ସ୍ନାହାନ ଶହେଟଙ୍କୁ ଭଲ । ସଂସାର ଜନ ଲୋଡ଼େ ବୁଲ ॥
ବୈଷ୍ଣବ ସ୍ୱେଚ୍ଛା ଶୋଭା ପାଇ । ସଂସାରୀ ଦେଖିଣ ପୂଜଇ ।୧୧୦।
ବୈରାଗ୍ୟ ଭେଷକୁ ବନ୍ଧନ । ପର ସ୍ତ୍ରୀଙ୍କ ଯେ ରମଣ ॥
ଦାରା ଯେମନ୍ତ ଆବୋରଇ । ବୈରାଗ ଧର୍ମ ନାଶ ଯାଇ ॥
ଦାରା ଯେମନ୍ତ ନ କରିବ । ଚନ୍ଦ୍ରମା ପ୍ରାପ୍ତ ହରାଜିବ ॥
ପର ସ୍ତ୍ରୀରେ ଚକ୍ଷୁ ନାହିଁ । ସୂର୍ଯ୍ୟର ପ୍ରାପ୍ତ ତେଜ ହୋଇ ॥
ସ୍ତ୍ରୀ ଜନରେ ଯେବେ ଆଶ । ପଦ୍ମ ଶିଶିରେ ଯେସନ୍ତେ ନାଶ ।୧୧୫।
ଡୋର ଯେ କୌପୁନ ପିନ୍ଧିବ । କୁଟୀ ଖଣ୍ଡିକେ ବସିଥିବ ॥
ନାମକୁ ଅମନେ ଭଜିବ । କନ୍ଦର୍ପେ ଖଲଗେ ରହିବ ।୧୧୭।
ମାଳରେ କୃଷ୍ଣ କଥା ଭଜ । ଗଡ଼-ଅଷ୍ଟଶମାନ ପୂଜ ॥
ନିଦ୍ଦନ ପାଞ୍ଚ ସାତ ଘେନ । ମୌଛବ କରିବାର ଦନ ॥
ବୈରାଗ ଜନର ଏ ଭଲ । ଏହା ନ କଲେ ନାଶ ଗଲ ।୧୨୦।
ବୈରାଗ ହୋଇ ଧନ ରଖି । ତାହାକୁ ମୂର୍ଖ ବୋଲି ଲେଖି ॥
ବୈରାଗ ଭେଖେ ମିଛ କହୁ । ତାଙ୍କୁ ଦେଖିଲେ ପାପ ହୋଇ ॥
ବୈରାଗ ହୋଇଣ ବୁଲଇ । ପେଟରେ କଲ୍ୟାଣ ନ ଯାଇ ॥
ବାରେକ ମନ ବୋଧ ପାଇ । ବୁଲିବ ବାରେ ପୃଥ୍ୱୀ ଏହୁ ॥
ମନର ଭ୍ରମଣଟି ତୀର୍ଥ । ବସିଲେ ରହେ ଭକ୍ତିପଥ ।୧୨୫।
ହସ୍ତରେ ଦୟା କରୁଥିବ । କୃଷ୍ଣର କଥା ମୁଖେ ଥିବ ॥
ଅଦୃଷ୍ଟି ମଧ୍ୟେ ନାମ ଧର । ଏ ମାୟା-ଜଳ୍ପ ତେବେ ତର ॥
ଏହା ନ କରି ଆନ କରେ । ଜନ୍ମ ବ୍ୟର୍ଥ ବୋଲି ତାରେ ॥
କୌପୁନ ଅଧିକାରୀ ପୁଣ । ପବନ ଦାସର ପ୍ରମାଣ ॥
କାଛଟା ଅଧିକାରୀମାନ । ଅଷ୍ଟ ଯେ ଦାସ ହେ ହନୁଆନ ।୧୩୦।
ଶ୍ରୀକୃଷ୍ଣ କରୁଣା ଯେ କଲେ । ଏ ଗ୍ରନ୍ଥ ଲେଖିଲଇ ଭଲେ ॥

---

୧୧୭—ଅମନେ ରଞ୍ଜିବ (କ)

ଆମ୍ଭର ମୁଖୁଁ ତୁମ୍ଭେ ଶୁଣି । ଏଥିର ଭେଦ ତୁମ୍ଭେ ଜାଣି ॥
ତୁମ୍ଭର ମୁଖରୁ ଶୁଣିବେ । ଗୋପାଳକୁଳ ସେ ଜାଣିବେ ॥
ତୁମ୍ଭଙ୍କ ସ୍ନହି ହେବେ ଦାସ । ତୁମ୍ଭେ ଯେ ପ୍ରଥମେ ପ୍ରକାଶ ॥
ଏଣୁ ଗୋପାଳ କୁଳ ସାର । ଆଦ୍ୟର ଭେଖ ତୋ ହସ୍ତର ।୧୦୫।
ଦାନ ଅଚ୍ୟୁତ ପଥେ ସାର । ସହ୍ୱାସ ଦାସ ତୁମ୍ଭେ ବାର ॥

ଇତି ଶ୍ରୀଗୁରୁଭକ୍ତି ଗୀତା କଥନେ ନାମ ଷଟ୍‌ପଞ୍ଚାଶତ୍ ଛାନ୍ଦ ।

---

## ସପ୍ତପଞ୍ଚାଶ ଛାନ୍ଦ

ଅନନ୍ତ ବସ୍ତୁ ମୁକୁନ୍ଦ ଅନାଦି ଯେନମା ।
ପଇତାର ଜନମ ଯେ କେମନ୍ତ ମହିମା । ୧ ।
ଶୁଣ ହେ ସୁବୁଦ୍ଧି ଦାସ ପଇତା ଈଶ୍ୱର ।
ପଇତା ବନ୍ଧିଲେ ବ୍ରହ୍ମା ବିଷ୍ଣୁ ମହେଶ୍ୱର । ୨ ।
ଖିଅ ଧରି ବିଷ୍ଣୁ ପୁଣ ସର୍ଜନା କରଣ ।
ପ୍ରଥମେଣ ମଙ୍ଗଳ ଯେ ଗ୍ରହ ସୁମରଣ । ୩ ।
ବୃହସ୍ପତି ସୁମରଣ ଦୁତାଂଶ ଖିଅରେ ।
ଶନୈଶ୍ଚର ରାହୁ ବୋଲି ପୁଣ ତୃତାଂଶରେ । ୪ ।
ଶୁକ୍ର କେତୁ ଧର୍ମ୍ମ ସଙ୍ଗେ ପଞ୍ଚଗ୍ରହ ପୁଣ ।
ନବଗ୍ରହ ନାମ ଧରି ସର୍ଜନା କରଣ । ୫ ।
ରୁଦ୍ରହସ୍ତେ ବିଷ୍ଣୁ ପୁଣ ଦେଲେକ ଯତନେ ।
ଦଣ୍ଡି ବଳିଲେ ରୁଦ୍ର ବିସ୍ମରଣ ମନେ । ୬ ।
ସତାଇଶ ହାତ କରି ଲମ୍ବ ଯେ ଧରିଲେ ।
ହାତକରେ ନକ୍ଷତ୍ର ଗୋଟିଏ ବସାଇଲେ । ୭ ।
ରୁଦ୍ରପୁଣ ବ୍ରହ୍ମାର ହସ୍ତରେ ଦେଲେ ନେଇ ।
ତିନିଖଣ୍ଡ କଲି ବ୍ରହ୍ମା ମନରେ ପଶାଇ । ୮ ।
ତିନିସନ୍ଧି ନବ ଯେ ନକ୍ଷତ୍ର ସଙ୍ଗ କଲି ।
ଶ୍ରୀଭଗବାନ୍ ନକ୍ଷତ୍ର ଗୋଟିଏ ଗଣ୍ଠି ଦେଲି । ୯ ।
ସମଗ୍ରହ ସମ ଯେ ନକ୍ଷତ୍ର ଉଚ୍ଚରଣ ।
ତିନିଗ୍ରହ ନବ ଯେ ନକ୍ଷତ୍ର ସୁମରଣ । ୧୦ ।
ଦୁଆଂଶ ପଇତା ଗଣ୍ଠି ଏମନ୍ତେଣ ଦେଇ ।
ଦୁଇ ଗୋଟି ପଇତା ଯେ ରଖିଲେ ବନାଇ । ୧୧ ।

---

——୨ ମଙ୍ଗଳ ଗ୍ରହକୁ ସୁମରଣ (ଖ);

ପୁଣି ଚନ୍ଦ୍ରଦେବ ନକ୍ଷତ୍ର ନବ ଧରଣ ।
ମନ୍ଦ ଯୋଗମାନଙ୍କରେ ଗଣ୍ଠି ଦେଲେ ପୁଣ । ୧୨ ।
ନବଗ୍ରହ ସତାଇଶ (୧) ନକ୍ଷତ୍ର ସୁମର ।
ବ୍ରହ୍ମା ପାଖ ପଇତା ଯେ କଲେ ନବ ସୂତ୍ର । ୧୩ ।
କାଳ ଯେ ବେଳରେ କାଳ ପଇତା ଧରଣ ।
ରୁଦ୍ରର ହସ୍ତରେ ବ୍ରହ୍ମା ଦେଲେ ନେଇ ପୁଣ । ୧୪ ।
ଶୁଭ ଯେ ନକ୍ଷତ୍ର ଶୁଭ ଗ୍ରହମାନ ଘେନ ।
ବିଷ୍ଣୁ କର୍ଣ୍ଣେ ଦେଇ ବ୍ରହ୍ମା କଲେକ ଦଇନ । ୧୫ ।
ସମ ଯେ ନକ୍ଷତ୍ର ସମ ଗ୍ରହ ବିଚାରଣ ।
ବାମ କର୍ଣ୍ଣେ ବ୍ରହ୍ମା ପୁଣ ପଇତା ଟେକିଣ । ୧୬ ।
ଦକ୍ଷିଣ କର୍ଣ୍ଣରେ ବିଷ୍ଣୁ ରଖିଲେ ଯତନେ ।
ମସ୍ତକ ଜଟାରେ ଶିବ ଘେନିଲେ ବନ୍ଧନେ । ୧୭ ।
ଶିଷ୍ଟ ଦେବ ବାନ୍ଧିଲେ ଯେ ବିଚିତ୍ର ମନର ।
ତାଙ୍କର ଆଜ୍ଞାରେ ଯେ ବନ୍ଧିଲେ ସର୍ବନର । ୧୮ ।
ବ୍ରାହ୍ମଣ ଜ୍ୟୋତିଷ ବ୍ରହ୍ମ ପଇତା ବନ୍ଧିଲେ ।
ସମତା ଦୃଷ୍ଟିରେ ସର୍ବ କର୍ମମାନ କଲେ । ୧୯ ।
ସ୍ନାନ କାଳେ ଦୂର୍ବା ଅଗ୍ରେ ଯେତେ ଜନ ମସ୍ତ ।
ଶିବ ଉପାସକ ଜନ ଅଛନ୍ତି ଯେ ବନ୍ଧ । ୨୦ ।
ବିଷ୍ଣୁଗଣ ମଙ୍ଗଳ ଯେ ପଇତା ବନ୍ଧିଲେ ।
ପଇତା ବନ୍ଧନ ଅମଙ୍ଗଳ ନାଶ କଲେ । ୨୧ ।
ଶୁଣ ହେ ରହାସ ଦାସ ପୂର୍ବର ବିଚାର ।
ଗୁରୁମୁଖୁଁ ଶୁଣିଲେ ସଂଶୟ ହୁଏ ଦୂର । ୨୨ ।
ଓଁ ନମୋ ଗ୍ରହ ଭୂର୍ଭୁବଂ ନମ ବୋଲି କହ ।
ବ୍ରହ୍ମ ଅଗ୍ନି (୨) ପିତାମହ ମନ୍ତ୍ର ଅଟେ ଏହ । ୨୩ ।

---

୧୩ (୧) ବସଇସ ।
୨୩ (୨) ବ୍ରହ୍ମଦତ୍ତ (ଘ),

ଚନ୍ଦ୍ର ଛତ୍ର ଭରଣ ଯେ ମନ୍ତ୍ରକୁ ଲେଖିବ ।
ପୂଜାବିଧି କରଣ ପ୍ରଥମେ ଶିଷ୍ୟେ ଦେବ । ୨୪ ।

| | | | | | |
|---|---|---|---|---|---|
| ଓଁ | ନ | ମୋ | ଗ | ଣ | ଗୁ |
| ଭ୍ୟଂ | ସ୍ୱୋ | ନ | ମ | ବୁ. | ଦ୍ଧ |
| ଅ | ଗ୍ନି | ପି | ତା | ମ | ହ |

ପୂଜାବିଧି ମନ୍ତ୍ର ଯନ୍ତ୍ର ନ ଜାଣି ବନ୍ଧଇ ।
ବହୁତ ଯେ କଷ୍ଟ ତାକୁ ଦରବ ହୁଅଇ । ୨୫ ।
ମନ୍ତ୍ର ପଢ଼ି ପଇତା ହୁଅଇ ଯେଉଁ ନର ।
ସେ ଜନ ଜୀବନ୍ତେ ଯାଏ ବସ୍ତି ଭୁବନର । ୨୬ ।
ପଇତା ବନ୍ଧିଲ ପ୍ରାଣୀ ଦେଖିଲେ ଲୋଚନ ।
ଅମଙ୍ଗଳମାନ ତାର ହୁଅଇ ମୋଚନ । ୨୭ ।
ପଇତା ବନ୍ଧିଲ ଜନ ବହୁତ ଦେଖିଲେ ।
ଅମଙ୍ଗଳ ଗ୍ରହମାନ ନାଶ ଯାନ୍ତି ଭଲେ । ୨୮ ।
ପଇତା ଦେଖି ମଙ୍ଗଳ କାର୍ଯ୍ୟ କରଯାଇ ।
ଡାହାଣ ସ୍କନ୍ଧେ ଦେଖିଲେ ସର୍ବ ସିଦ୍ଧି ପାଇ । ୨୯ ।
ଦକ୍ଷିଣ କନ୍ଧରେ ଥିଲେ ସର୍ବଦା ମଙ୍ଗଳ ।
ବାମସ୍କନ୍ଧେ ଥିଲେଣ ଯେ ସମ ହୁଏ ଫଳ । ୩୦ ।
ସ୍ନାନଧ୍ୟାନ କାଳେ ବ୍ରାହ୍ମଣ ଦକ୍ଷିଣେ ରଖଇ ।
ସମସ୍ତ ନିମନ୍ତ୍ରେଣ ବାମ ସ୍କନ୍ଧେ ଥାଇ । ୩୧ ।
କାଳବେଳ ମାନଙ୍କରେ କଣ୍ଠରେ ରଖଇ ।
ନିବନ୍ଧ ନ କଲେ ପ୍ରାଣୀ ଅପଥଣ ପାଇ । ୩୨ ।
ମଳମୂତ୍ର ତ୍ୟାଗ କାଳେ ଶିରରେ ରଖିବ ।
ବେଳ ସର ଜଳ କଣ୍ଠ ସ୍କନ୍ଧରେ ଯୋଗିବ । ୩୩ ।

ପଶ୍ଚିମ ଭୋଜନ ବେଳେଣ ବାମ କକ୍ଷ ।
ଯେଉଁ ଜନ ରଖଇ ସେ ଲଭଇ ଆନନ୍ଦ । ୩୪ ।
ସ୍ନାହାନ ଭଜନକାଳେ ଦକ୍ଷିଣେ ରଖିବ ।
ଯାହାକୁ କଲ୍ୟାଣ ଦେବ କଲ୍ୟାଣ କାଟିବ । ୩୫ ।
ଏ ବିଧି ନ କରି ଯେବେ ମନଗର୍ବେ ବହି ।
ଶରୀରେ କେଲଶ ବ୍ୟାଧି ଜନମ ହୁଅଇ । ୩୬ ।
ଏଣୁକରି ବିଷ୍ଣୁର ଯେ ପଇତା ବହିବ ।
ପଇତା ମହିମା ଗୋପାଳଙ୍କୁ ବୁଝାଇବ । ୩୭ ।
ପଇତାର ଅଧିକାରୀ ମୁକୁନ୍ଦ ଅନନ୍ତ ।
ଭଗତ ଦେଖି କହିଲୁ ଅତ ଏ ଗୁପତ । ୩୮ ।
ସୁଜ୍ଞ ବିପ୍ର ମୁଖ୍ୟ ଜଉଠଷ ଏହା ଜାଣେ ।
ସୁବୁଦ୍ଧି ବୈଷ୍ଣବ ମାନେ ଜାଣନ୍ତି ପ୍ରମାଣେ । ୩୯ ।
ଦେଖା ଶିଖା ବିପ୍ର ଜଉଠଷ ଯେ ନ ଜାଣି ।
ବିଦ୍ୟାବନ୍ତ ଗୁରୁଶିକ୍ଷା ବିପ୍ରମାନେ ଜାଣି ।୩୦।
ଶାସ୍ତ୍ର ଶୁଦ୍ଧଗୁରୁ ସେବା ବୈଷ୍ଣବ ଜାଣନ୍ତି ।
ଦେଖା ଶିଖା ବଇଷ୍ଣବ ମିଛେ ବହିଥାନ୍ତି । ୪୧ ।
ଗୁଡ଼ରୁ ମଧୁର ଯେହ୍ନେ ଜିହ୍ୱା ଜାଣି ପୁଣ ।
ଚନ୍ଦ୍ରି ଘେନ ଜାଣିଲେ ସେ ସୁଖ ପାଇ ପୁଣ । ୪୨ ।
ନ ଜାଣି ପଇତା ପୁଣ ଯେ ନର ବହଇ ।
ବଳଦ ପାଳ ବହୁଣ ପାଳ ପୁଣ ଖାଇ । ୪୩ ।
ଗୁରୁଭକ୍ତି ଗୀତା ପଢ଼ି ପାଇବ କାରଣ ।
ଅଚ୍ୟୁତ ବଚନ ପାଳିଥିବ ବାର ଜଣ । ୪୪ ।

ଇତି ଶ୍ରୀ ଗୁରୁଭକ୍ତିଗୀତା କଥନେ ନାମ ସପ୍ତପଞ୍ଚାଶତ୍ ଛାନ୍ଦ ।



## ଅଷ୍ଟପଞ୍ଚାଶତ୍ ଛାନ୍ଦ

ବାଳକ ଦାସର ସ୍ତୁତ ଯେଜମା ଗୋସାଇଁ ।
କ୍ଲିଁ କାର ଉତ୍ତସବ କହିବା ବୁଝାଇ । ୧ ।
ଭଗତର ସ୍ୱବଗୋଷ୍ଟି ଯେନ ହେ ମନର ।
କାଳନ୍ଦି ଅକ୍ଷରେ ଅଛୁ ବହୁତ ବସ୍ତୁର । ୨ ।
ଅହୁଣିଆ ଦାସମାନେ ଏ ଭେଦ ଜାଣନ୍ତି ।
ଗୁରୁ ମୁଖେ ପଶୁଣଣ ପଣ୍ଡେ ହୁର୍ନନ୍ତି । ୩ ।
ଲ କାରକୁ ଗୋଲକ ଯେ ବୋଲି ଜଣ କହି ।
ଯ କାରକୁ ନଡ୍ୟ ପୁଣ ବୋଲିଣ ଅଛଇ । ୪ ।
ଅର୍ଦ୍ଧମାତ୍ରା ପରେ ବିନ୍ଦୁ ମହା ନଡ୍ୟ ଜାଣ ।
ଏଣୁକରି କ୍ଲିଁ କାର ଅକ୍ଷର ଗୁଣିଣ । ୫ ।
ଲକାରକୁ ଲକ୍ଷ୍ୟ କରି ଗୋପାଳ ଭଜନ ।
ଯ କାର ହୃଦେ ଧରି ଗୋପୀଙ୍କର ସ୍ଥାନ । ୬ ।
କ କାରୁ କପିଳା ଯେ ଜନମ ହୋଇଲେ ।
ଅହୁଣିଆମାନ ତାହା ଠାବରୁ ଷଣଲେ । ୭ ।
ସେ କପିଳା ଆରଧନା ଗୋପାଳ ଯେ କଲେ ।
ତାହାର ଅଙ୍ଗରୁ କ୍ଷୀରମାନ ଜାତ ହେଲେ । ୮ ।
ଗୋପୀମାନେ ବିବିଧ ଯେ ପାକ ବନାଇଲେ ।
ଗୋଲକ ନଗରେ ନାନା ଔଷଧ ଭିଆଇଲେ । ୯ ।
ଗୋଲକର ଛତ୍ରଦଳେ ଛତ୍ର ସଖୀ ରହି ।
ନିଶ ବଳେ ତନ ସଖୀ ସେବାରେ ଅଛଇ । ୧୦ ।
ନାଦ ସୁଧା ବିନ୍ଦୁ କୃଷ୍ଣ ମହା ନଡ୍ୟ ସ୍ଥଳ ।
ଏମନ୍ତ ହୋଇଣ ନଡ୍ୟ ଗୋଲକ ମଣ୍ଡଳ । ୧୧ ।

---

୧୦-୧—ଗୋଲକରେ ଛତ ଛଡ଼ସଖୀ ଅଛନ୍ତି ଯେ ରହି (କ);

ଏଣୁକରି ଏହି ମନ୍ତ୍ର ଗୁରୁଙ୍କୁ ପଚ୍ଚାରି ।
ଅନ୍ତୁଣିଆ ବନାଇବ ଶୁଚବନ୍ତ କରି । ୧୨ ।
ଗନ୍ଧାସ ମଣ୍ଡଳେ ଶ୍ୱେତ ଦାସ ମିଶାଇବ ।
କାଳ କାଢ ବୀଜ ସ୍ଥାପି ପୂଜାବଧି ଦେବ । ୧୩ ।
ତେବେତ ରନ୍ଧନ ପାକ ତା ହସ୍ତେ ପ୍ରମାଣ ।
ଏହା ନ ଜାଣିଲ ହସ୍ତେ ଭୁଞ୍ଜନ୍ତି ଯେ ପୁଣ । ୧୪ ।
ଅଣ ଉପଦେଶୀ ଜନ ଅଟଇଟି ସେହି ।
ବଳ ପ୍ରିଷ୍ଠରୁ ଯେ ସ୍ନାନ ଅଟଇଟି ଦେଖ । ୧୫ ।
ଶ୍ୱାନ ହାଣ୍ଡି ଶ୍ୱପଚରୁ ସ୍ନାନ ଅଟେ ସେହି ।
ଏଣୁକରି ସେ ଜନଙ୍କୁ ମନ୍ତ୍ରଦୀକ୍ଷା ଦେଇ । ୧୬ ।
ଶ୍ରୀ ଗୋପାଳ ମହାମନ୍ତ୍ର ମନ୍ତ୍ରରାଜ ଦେବ ।
ହରେ କୃଷ୍ଣ ମହାମନ୍ତ୍ର ଭେଦ ବୁଝାଇବ । ୧୭ ।
ଠାକୁରାଣୀ ମନ୍ତ୍ର ମହାମନ୍ତ୍ର ବୁଝାଇଣ ।
ବୈଷ୍ଣବୀଆ ଦାସବେ ରୁମ୍ଭେ ଅଧିକାରୀ ପୁଣ । ୧୮ ।
ଏହା ନ ଶିକ୍ଷିଣ ଯେବେ ସେବାଇ କରନ୍ତି ।
ଅଷ୍ଟଲୋକପାଳ ଧର୍ମଦଣ୍ଡ ତାକୁ ଦ୍ୟନ୍ତି । ୧୯ ।
ଯମ ଯେ ଧରମ ଚନ୍ଦ୍ର ବରୁଣ କୁବେର ।
ଜଳ ଅଗ୍ନି ପବନ ଅଟନ୍ତି ଆଠ ଥାର । ୨୦ ।
ଯମଦଣ୍ଡ ଅଗ୍ନିଭସ୍ମ ସେ ଜନଙ୍କୁ ହୋଇ ।
ଅନ୍ତୁଣିଆ ଦଣ୍ଡ ପୁଣ ମୋଚନ ନୁହଇ । ୨୧ ।
ଦିଗପାଳମାନେ ତାକୁ ଯଶ ନ ଦିଅନ୍ତି ।
ଦଶ ଦିଗେ ସେ ଜନ ଯେ ଅପଯଶ ପାନ୍ତି । ୨୨ ।
ପୂରୁବ ପଶ୍ଚିମ ପୁଣ ଉତ୍ତର ଦକ୍ଷିଣ ।
ଅଗ୍ନି ବାୟବ୍ୟ ଈଶାନ ନୈଋତ ଚବି କୋଣ । ୨୩ ।
ଅନନ୍ତ ଦିଗ ଯେ ବ୍ରହ୍ମ ଦିଗ ଦଶ ଏହି ।
ମଧ୍ୟ ଭୂମି ଅନନ୍ତ ଯେ ବେଦ ପୁଣ କହି । ୨୪ ।

ଅନନ୍ତ ଦେବ ସନ୍ନିଧେ ବ୍ରହ୍ମଦେବ ପୁତ୍ର ।
ବ୍ରହ୍ମା ପୁଣ କର୍ମ ବିଧି କରନ୍ତି ଉତ୍ପନ୍ନ । ୧୫ ।
ଶୁଚିବନ୍ତ ହୋଇ ମନ୍ତ୍ର ପୂଜା ବିଧି କଲେ ।
ଗୋପାଳ ମନ୍ତ୍ର ବିଧିରେ କୃଷ୍ଣଙ୍କୁ ପୂଜିଲେ । ୧୬ ।
ପୃଥ୍ୱୀ ଆପ ତେଜ ବାୟୁ ଆକାଶ ଅନ୍ତର ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳ ଯେ ଚନ୍ଦ୍ର ସୂର୍ଯ୍ୟ ବନ୍ଧୁ । ୧୭ ।
ଏ ଦେବଙ୍କର ସାର ବ୍ରହ୍ମା ବିଷ୍ଣୁ ମହେଶ୍ୱର ।
ସନକାଦି କଶ୍ୟପ ଯେ ମୁନି ଅବତାର । ୧୮ ।
ବିଷ୍ଣୁ ପୂଜା କୃଷ୍ଣ ଭକ୍ତ ହୋଇଣ ତରିଲେ ।
ନର ଜନମାନଙ୍କୁ ଯେ ଧର୍ମ ବତାଇଲେ । ୧୯ ।
ମନ୍ତ୍ର ଦୀକ୍ଷା ଶୁଚିବନ୍ତ ଗୁରୁ ସେବା କରେ ।
ମଲେଣ ସେ ଜନମଇ ଶ୍ରୀକୃଷ୍ଣର ପୁରେ । ୨୦ ।
ଅଶୁଚି ଯେ ମନ୍ତ୍ର ଶୂନ୍ୟ ପଶୁ ଅବୈଜନ ।
ଶାଗୁଣା ଯୋନିରେ ମଲେ ଜନ୍ମ ହୋଏ ସ୍ଥାନ । ୨୧ ।
ବିଲୁଆ କୁକୁର କାଉ ଜନମ ଲଭନ୍ତି ।
ମୂଢ଼ ଜନମାନେ ପୁଣ ଏହୁ ପଥେ ଯାନ୍ତି । ୨୨ ।
ଭଲ ମନ୍ଦ ଦୁଇ ପଥ ଅଛୁ ଏ ସଂସାର ।
ପାପ ପୁଣ୍ୟ ଦୁଇରେ ଯେ ଆତଯାତ ନର । ୨୩ ।
ହେତୁ ଅଣହେତୁ ପୁଣ ଦୁଇ ଗୋଟି ଥାନ୍ତି ।
ପକ୍ୱଫଳ କେତେ ଯେ ଏକା ବୃକ୍ଷେଁ ହୋନ୍ତି । ୨୪ ।
ଶ୍ରୀକୃଷ୍ଣର ଲୀଳା ଅଟେ ଏମନ୍ତ ଉତ୍ପନ୍ନ ।
କେତୁ ଯେ ପାଚିଲ କେତୁ ଝଡ଼ି ପଡ଼େ ପୁଣ । ୨୫ ।
ଶ୍ରୀକୃଷ୍ଣ ଭଜନ ଗୁରୁ ସେବା ଯେ କରଇ ।
ପକ୍ୱଫଳ ହୋଇଣ ଯେ ସେ ଜନକୁ ବନ୍ଧୁ । ୨୬ ।
ନାମ ନ ଜପନ୍ତି ଗୁରୁସେବା ଯେ ନ କରେ ।
ଭୋଜନ ଯେ ନ କରନ୍ତି ବୈଷ୍ଣବ ମୁଖରେ । ୨୭ ।

ଝଙ୍କଳର ଫଳ ପୁଣ ସେ ଜନ ଅଟଇ ।
ଭଗତ ଭାବ ଦେଖିଣ ଗୃହସ୍ଥଙ୍କୁ ତ କହ । ୩୮ ।
ପକ୍ୱଫଳ ହୋଇଲେ ସେ ଗୁରୁ ସେବା କର ।
ଦାନ ଅଚ୍ୟୁତର କଥା ହୃଦେ ଥିବ ଧରି ।୩୯।
ଏନ୍ତୁ ଗୁରୁଭକ୍ତି ଗୀତା ଶିଷ୍ୟଙ୍କୁ କହିବ ।
ଅଶ୍ରଦ୍ଧ ଅଭଗତଙ୍କୁ ଗୁପତ କରିବ ।୪୦।

ଇତି ଶ୍ରୀ ଗୁରୁଭକ୍ତି ଗୀତା କଥନେ ନାମ ଅଷ୍ଟପଞ୍ଚାଶତ୍ ଛାନ୍ଦ ।



## ଊନଷଷ୍ଠି ଛାନ୍ଦ

ମୁକୁନ୍ଦ ଅନନ୍ତ ସ୍ତୁତି ଘେନମା ଗୋସାଇଁ ।
କେଉଁ ଗୋପୀ କେଉଁ ନାମ କହିବା ବୁଝାଇ ।୧।
କେଉଁ ଗୋପୀ କେଉଁ ସେବା କରନ୍ତ ଭିଆଣ ।
ଏ କଥା ଶ୍ରୀମୁଖେ ଗୁରୁ କହିବା ପ୍ରମାଣ ।୨।
ପ୍ରଥମେ ଷୋଳ ସଖୀ ଅଟନ୍ତି ଯେ ସାର ।
ସାଧୁଜନମାନେ ସେବ ଏହାଙ୍କ ପାଶର ।୩।
ଲଳିତା ଭଦ୍ରା ଯେ ପଦ୍ମା ଶ୍ୟାମଳା ଯେ କହି ।
ଶୈବ୍ୟା ଋଷି ହର ପ୍ରିୟା ଶ୍ରୀମତୀ ଯେ ତହିଁ ।୪।
ବିଶାଖା ଶର୍ଶୀ ଯେ ରେଖା ଚନ୍ଦ୍ରରେଖା ପୁଣ ।
ଚନ୍ଦ୍ରାବଳୀ ଶୁଚରୁଚ କୃଷ୍ଣାବଳୀ ଶୁଣ ।୫।
ହରପ୍ରିୟା ଶ୍ରିୟା ସଙ୍ଗେ ମଦନ ସୁନ୍ଦରୀ ।
ଷୋଳ ସଖୀ ଏମନ୍ତେଣ ସେବା ବଧିକର ।୬।
ଆବର ଯେ ଚଉଷଠି ସେବା ବଧି ତହିଁ ।
ଭଗତ ସବରେ ବଧି ଶୁଣ ମନ ଦେଇ ।୭।
ଅଙ୍ଗନା ସର୍ବାଙ୍ଗା ମୋହ୍ନା ରଙ୍ଗଣୀ ଯେ ତହିଁ ।
ରହୁପୁଷ୍ପା ସୁବିଦ୍ୟା ତ ମାଳତୀ ଯେ ଥାଇ ।୮।
ମାଧବ ସୁବର୍ଣ୍ଣବର୍ଣ୍ଣା ସୁବର୍ଣ୍ଣାଙ୍ଗୀ ପୁଣ ।
କେତକୀ କାମଦାୟିନୀ ଅଛନ୍ତି ସଙ୍ଗେଣ ।୯।
ସୁବର୍ଣ୍ଣାକ୍ଷୀ ମୃଦୁଳାକ୍ଷୀ ନାମଯୋଗୀ ତହିଁ ।
ମନୋହର ରହୁକେଳୀ ଏମନ୍ତ ଅଛଇ ।୧୦।
ରତକେଳୀ ସଦନା ଯେ ଶ୍ରୀ ଶ୍ରଦ୍ଧା ଅଛଇ ।
ରଞ୍ଜନା ପଦ୍ମିନୀ ଶଙ୍ଖିନୀ ସୁଲନା ଯେ ଗୋଠ ।୧୧।
ଚଞ୍ଚଳା ଚମ୍ପଳା ତହିଁ ଚପଳା ଯେ ଦେବୀ ।
ରସାଙ୍ଗୀ ରସମାଧୁର୍ଯ୍ୟ ସଙ୍ଗତେ ନାରଙ୍ଗୀ ।୧୨।

ବିଦ୍ୟାଙ୍ଗୀ ସୁରୂପା ପୁଣ ଚନ୍ଦନୀ ମାଳିନୀ ।
ସୌଗନ୍ଧିକା ସୁବେଣୀ ଯେ ପ୍ରବଲାକୁ ଘେନ ।୧୩।
କମଳୀ ସୁବାଣୀ ରସବାଦନୀ ଯେ ପୁଣ ।
ସୁମେଧା ରତ୍ନା ଯେ ପଦ୍ମା ଅଛନ୍ତି ସଙ୍ଗେଣ ।୧୪।
ସୁକୁନ୍ତଳା ଲବଙ୍ଗା ଯେ ହିଙ୍ଗୁଳା ଅଛଇ ।
ତାର ଯେ କୌମୁଦୀ ସର୍ବବିଦ୍ୟା ପୁଣ ତହିଁ ।୧୫।
ରତ୍ନମେଖୀ ସୁମେଖୀ ଯେ ମଙ୍ଗଳା ସଙ୍ଗେଣ ।
ଚନ୍ଦ୍ରିକା ମଲ୍ଲିକା ସଙ୍ଗେ ଚମ୍ପକା ଘେନଣ ।୧୬।
କଦମ୍ବା ପଦ୍ମରଙ୍ଗିଣୀ ଚମ୍ପକା ଯେ ତହିଁ ।
ରତ୍ନିକା ସ୍ୱାହା ବର୍ତ୍ତିନୀ କୁମୁଦନୀ ଗୋଇ ।୧୭।
ଚନ୍ଦ୍ରବିମ୍ବା ମୃଗାକ୍ଷୀ ଯେ ସର୍ବ ଗୋପୀଗଣ ।
ଉତ୍କଣ୍ଠା ରସମଣ୍ଡପ ଚଉଷଠି ପୁଣ ।୧୮।
ଯେଉଁ ଗୋପୀ ଯେଉଁ ସେବା ହେତୁ ମନେ ଘେନ ।
ଭଗତ ଜନମାନଙ୍କ ସେବା ଯେଉଁ ଜନ । ୧୯ ।
ଅଞ୍ଜନା କଜ୍ଜଳ ସେବା ବିଧି ପୁଣ କରେ ।
ସର୍ବଙ୍ଗା ସୁନ୍ଦରୀ ଗନ୍ଧ ସେବା କଧି ଧରେ । ୨୦ ।
ମୋହିନୀ ଚାମର ସେବା କରନ୍ତି ଯେ ପୁଣ ।
ରଙ୍ଗିଣୀ ପାଟବସ୍ତ୍ର ଯେ ସେବା ସେ କରଣ । ୨୧ ।
ରତ୍ନପ୍ରଷ୍ଠା ତାମ୍ବୁଳ ଯେ ସେବା ବିଧି କରେ ।
ସୁବିଦ୍ୟା ଦର୍ପ ଦର୍ଶନ କରନ୍ତି ହୃଦରେ । ୨୨ ।
ମାଳତୀ ଯେ ପଙ୍କପାତ କରନ୍ତି ଯେ ତହିଁ ।
ମାଧବୀ ଯେ ନୀଳ ବସ୍ତ୍ର ବିଧିମାନ ବହି । ୨୩ ।
ସୁବର୍ଣ୍ଣବର୍ଣ୍ଣା କର୍ପୂର ସେବା ବିଧି କରେ ।
ସୁବର୍ଣ୍ଣାଙ୍ଗୀ ରସ ପୁଣ ମଙ୍ଗଳ ଉଚ୍ଚାରେ । ୨୪ ।

---

୧୩—୧ ଚନ୍ଦନୀ ମାଳତୀ ପ୍ରବାଳକୁ ଘେନ (କ),
୧୫—୨ ଦିବ୍ୟରୂପା ପୁଣ (ଖ),

କେତକୀ ଗୋପୀ ଯେ ରତ୍ନହାପ ସେବା କର ।
କାମ ଯେ ଦାସ୍ମୀ ରତ୍ନ ଭୂଷଣ ଆଚର । ୧୫ ।
ରସକେଳି ସିନ୍ଦୂର ଯେ ବଧୂ ଆଚରଣ ।
ସୁକେଲୀ ସୁରସ ଶୁଚ କରନ୍ତ ଅକ୍ଷେଣ । ୧୬ ।
ରଧକେଳି ପଦ୍ମକ ମାଣିକ ସେବା କରେ ।
ସ୍ୱବନୀ କଟୀ ମେଖଳା ଦଅନ୍ତ କଟୀରେ । ୧୭ ।
ଶ୍ରୀ ଶ୍ରଦ୍ଧା କଙ୍କଣ ସେବା ବଧୂ ପୁଣ କର ।
ସୁମେଧୀ କମ୍ପୁସ୍ୱ ସେବା ବଧୂ ଯେ ଆଚର । ୧୮ ।
ରତ୍ନାସଖୀ ରବାସେବା କରନ୍ତ ଯେ ତହିଁ ।
ପଦ୍ମାସଟୀ ବୀଣାସେବା ବଧୂରେଣ ରହୁ । ୧୯ ।
କଉତୁକୀ ଗନ୍ଧବଧୂମାନ ସଜାଡ଼ଣ ।
ଇନ୍ଦ୍ରପୁଷ୍ପ ଲବଙ୍ଗା ଯେ ଯେ ସେବା ଯୋଗାଇଣ । ୩୦ ।
ଶ୍ରୀଫଳବଧୂ ଯେ ପୁଣ ଟିଳକା ଯୋଗାଇ ।
ତାଗ୍ରସଖୀ ନାସିକାର ଫୁଲମାନ ଦେଇ । ୩୧ ।
କହମୌଦୀ ଦାଡ଼ିମ୍ବର ଫଳ ପୁଣ ଦେଇ ।
ରତ୍ନମେଖୀ ସୁଚଇଳ ବଧ ପୁଣ କହୁ । ୩୨ ।
ସୁମେଖୀ ଯେ ରସବେଣ ଜାଣନ୍ତ ଅପାର ।
ମଙ୍ଗଳା ଯେ ଗୀତ ନାଟ ଜାଣନ୍ତ ବସ୍ତୁର । ୩୩ ।
ମଲ୍ଲିକାର ସଧୂଷର ବଧ ମାନଙ୍କରେ ।
ଚମ୍ପକା ଦଦ୍ୟ ବାଇଦ ବାଦନ୍ତ ସୁସ୍ୱରେ । ୩୪ ।
କଦମ୍ବା ଯେ ବନମାଳା ସେବା ଆଚରଣ ।
ପଦ୍ମା ଯେ ରଗିଣ ପୁଣ ଅଳାପ କରେଣ । ୩୫ ।
କାମ ଯେ ଚନ୍ଦନୀ ପୁଣ ଚଇଲା ଅଟଇ ।
ବର୍ଣ୍ଣିନୀ ସଖୀ ବଧିକା ମଞ୍ଜ ର ଯୋଗାଇ । ୩୬ ।
ଭୁନନୀ ରସ ଶୃଙ୍ଗାର ଚତୁର ଜାଣଇ ।
ରତ୍ନନୀ ସଖୀ ଯେ ପୁଣ ମୁଦ୍ରିକା ଦଅଇ । ୩୭ ।

ପଦ୍ମମାଳ ପଦ୍ମା ଯେ ଦଅନ୍ତ ହୃଦର ।
ସଙ୍ଗିଣ୍ଣ ରସକୀର୍ତ୍ତନ କରନ୍ତ ବହୁର । ୩୮ ।
ସୁଲମା ରଙ୍ଗ ସୁଲବା ବିଗ୍ରହ ଜାଣଇ ।
ବିଦ୍ୟାଙ୍ଗୀ ସୁଖ ଶେଗର ବିଧି ପୁଣ ବନ୍ଧ । ୩୯ ।
ସୁରୂପା ସଖୀ ଯେ ପୁଣ ବଇଣୀ ଦେଇଣ ।
ଚନ୍ଦନୀ ଚନ୍ଦନ ପୁଣ ବିଧି ଯୋଗାଇଣ । ୪୦ ।
ମାଳିନୀ ରସ ଯେ କୁଟ ଜାଣଇ ଅପାର ।
ସୁଗନ୍ଧିକା ରସବାସ ସେବାର ବିସ୍ତର । ୪୧ ।
ସୁବେଣୀ ଯେ ସଙ୍ଗୀତର ରସ ଧ୍ୱନି ଜାଣେ ।
ଧବଳା ରସ ସୁରୂପ ଜାଣଇ ପ୍ରମାଣେ । ୪୨ ।
ଚମ୍ପଲା ଯେ ପଦନଖ ବିଧି ପୁଣ ଜାଣି ।
ଚପଳା ମୃଦଙ୍ଗ ବାଦ୍ୟ ରସ ଯେ ବଖାଣି । ୪୩ ।
ରସାଙ୍ଗୀ ଯେ ପୁଣ ଛନ୍ଦ ବିଧାନ ଜାଣନ୍ତି ।
ମାଧୁରୀ ଯେ ବ୍ୟଙ୍ଗସ୍ତବ ସେ ପୁଣ କରନ୍ତି । ୪୪ ।
ନାରଙ୍ଗୀ ମଧୁରରସ କରନ୍ତି ଯେ ପୁଣ ।
କମଳୀ ଯେ ସ୍ତୁତି ପୁଣ କରନ୍ତି ବଖାଣ । ୪୫ ।
ସୁବାଣୀ ବଟିକା ସ୍ତବ କରନ୍ତି ଯେ ତହିଁ ।
ରସବାଦୀ ଚନ୍ଦ୍ରଚମ୍ପୁ ପ୍ରବନ୍ଧ ଯୋଗାଇ । ୪୬ ।
ମୃଗାକ୍ଷୀ ମୁକୁଳ ବିଧି କରଇ ତହିଁରେ ।
ଉତ୍କଣ୍ଠା ପୁସ୍ତକବିଧି ତହିଁରେ ଆଚରେ । ୪୭ ।
ମଞ୍ଜୁଳା ହାସ୍ୟ ଉଲ୍ଲାସ ବିଧାନ କରଇ ।
ସବୁ ପ୍ରେମରସ ସୁଖ ଗୋପୀଙ୍କ ଠାବେଣ । ୪୮ ।
ଏହୁ ବିଧି ପରବନ୍ଧ ଜାଣେ ସେହୁ ଦାସ ।
ସେହୁ ସାଧୁ ଅଟନ୍ତି ଶ୍ରୀକୃଷ୍ଣ ରାଧା ଅଂଶ । ୪୯ ।
ମନ୍ତ୍ର ଯନ୍ତ୍ର ବୃତ୍ତି ସଦଗୁରୁ ସେବା କଲେ ।
ଗୋପିକା ଭାବ ଉଗତ ହୃଦରେ ଧଇଲେ । ୫୦ ।

ତେବେ ଦାସଜନ ଲଭେ ରାଧାକୃଷ୍ଣ ପାଦ ।
ଏଣୁ ରାଧାକୃଷ୍ଣ ଲୀଳା ହୃଦୟରେ ବନ୍ଦ । ୬୧ ।
ରାଧାଅଙ୍ଗ ରୂପ ଗୋପୀ ହୋଇଲେକ ଜାତ ।
ବୃନ୍ଦାଦୂତୀ ଶ୍ରୀକୃଷ୍ଣର ଅଙ୍ଗରୁ ସମ୍ଭୂତ । ୬୨ ।
ରୂପ ଯେ ଦୁଗୁଣ ଅଠ ହୋଇଲେ ଭିଆଣ ।
ଅଠ ଯେ ଦୁଗୁଣେ ଷୋଳ ଅଟଇ ପ୍ରମାଣ । ୬୩ ।
ଷୋଳ ଯେ ଦୁଗୁଣେ ପୁଣ ବତିଶ ଅଟଇ ।
ବତିଶ ଦୁଗୁଣେ ପୁଣ ଚଉଷଠି କହି । ୬୪ ।
ଚଉଷଠି କଳାରୁ ଅନନ୍ତ ଗୋପୀ ହେଲେ ।
ଚଉଷଠି ଗୋପାଳୁ ଅନନ୍ତ ସଖା କଲେ । ୬୫ ।
ଗୋପୀଯେ ଗୋପାଳ ରାଧାକୃଷ୍ଣ ସେବାକରି ।
ସର୍ବଦା ନବୀନ ସେହୁ ନପୁଂସକ ଶରୀ । ୬୬ ।
ଅବୀଜାଦ୍ଧ ସୁଦର୍ଶନ ଅଙ୍ଗକୁ ଧରଣ ।
କୃଷ୍ଣସେବା କରେ ରାଧା ଭଜେ ସଖୀଗଣ । ୬୭ ।
ଅବୀଜାଦ୍ଧ ଅନନ୍ତ ଯେ ଅଙ୍ଗ ପୁଣ ଧରି ।
ସୁଭଦ୍ରା ସେବାରେ ସଖୀ କୃଷ୍ଣଙ୍କ ସୁମରି । ୬୮ ।
ଦୁହିଁ ଅଙ୍ଗେ ସେବାକଲେ ରାଧାଭାବ ଗୁଣି ।
ରାଧାଅଙ୍ଗେ ସେବାକଲେ କୃଷ୍ଣଭାବ ଜାଣି । ୬୯ ।
ଅଣ ଯେ ମଣ୍ଡଳ ସେହୁ ରାଧାକୃଷ୍ଣ ସ୍ଥାନ ।
ଏକଦଳ ବୋଲିକରି ଏକାନ୍ତ ଭୁବନ । ୭୦ ।
ହୁକାର ଆନକୁ ବେନି ଦଳ ବୋଲି କହି ।
ଲୀଳାଭାବ କୃଷ୍ଣର ଯେ ସ୍ଥାନ ଅଟେ ସେହି । ୭୧ ।
ଅର୍ଦ୍ଧାଙ୍ଗ ମଧ୍ୟେ ତ୍ରିକୂଟ ତ୍ରିଦଳ ସ୍ଥାନ ।
ଅବତାର ଅଙ୍ଗ କୃଷ୍ଣ ସେଠାରେ ଭିଆଣ । ୭୨ ।
ଛଡ଼ଦଳ ସ୍ଥାମଗାନ ବୋଲି କରି କହି ।
ଅଷ୍ଟଦଳ ବୋଲିଣ ଯନ୍ତୁ ପୁଣ ହୋଇ । ୭୩ ।

ଷୋଳଦଳ ବୋଲିଣ ସେ ଭକ୍ତ ଅଷ୍ଟ ଭାବ ।
ବତିଶ ଦଳ ସେ ପୁଣ ଅଷ୍ଟଭ ଅଥଙ୍ଗ । ୭୪ ।
ବତିଶ ଦୁଗୁଣେ ଚଉଷଠି ପୁଣ କହ୍ନ ।
ଚଉଷଠି ମଧ୍ୟରେ ସହସ୍ରଦଳ ରହ୍ନ । ୭୫ ।
ସହସ୍ରକୁ ବେଢି ଛନ୍ତି ଅନନ୍ତ ଗୋପାଳ ।
ନିତ୍ୟ ଗୋଲକରେ ଗୋପୀ ଗୋପାଳଙ୍କ ଖେଳ ॥
ଗୋପିକା ଭଗତଭାବ ମୁକୁନ୍ଦ ଭିନ୍ତର ।
ସଖାଭକ୍ତ ଭାବ ପୁନ ଅନନ୍ତ ହୃଦର । ୭୭ ।
ଗୋପିକା ଭଗତଭାବ ଗୋପଙ୍କୁଲେ କହ୍ନ ।
ସଖାଭକ୍ତ ଭାବ ପୁଣ ଗୋପ ଅଂଶେ ଦଅ । ୭୮ ।
ଶ୍ଵେତ ରଙ୍ଗ କୁଙ୍କୁମ ଶ୍ୟାମଳ ସ୍ଥିର ତହିଁ ।
ଏହୁ ସ୍ଥିରକଳା ସେହୁ ଭଗତ ଚନ୍ଦ୍ରର । ୭୯ ।
ଏହୁ ସ୍ଥିର କଳାରୁ ଅନନ୍ତ କଳା ପୁଣ ।
ଏକ ଏକ କଳା ଘେନ ଜନମନ୍ତ୍ର ପୁଣ । ୭୦ ।
ଏ ବାସନା ଘେନ କର ସଂସାରେ ପ୍ରବେଶ ।
କୃଷ୍ଣ ରାଧା ପାଦ ସେବେ ଅଚ୍ୟୁତ ସେ ଦାସ । ୭୧ ।

ଇତି ଶ୍ରୀ ଗୁରୁଭକ୍ତ ଗୀତା କଥନେ ନାମ ଉନଷଷ୍ଟି ଗ୍ରନ୍ଥ ।



## ଷଷ୍ଠି—ଛାନ୍ଦ

ଶୁଣ ହେ ଗୋପାଳ ପୋଏ ରବା ବୀଣା ରଙ୍ଗ ।
ରଙ୍ଗି ରଙ୍ଗି ରସ ଧୂନି ମନରେଣ ଘୋଷ । ୧ ।
ବାଂସ୍ତେଣ ବାଜଇ ବଂଶୀ ଅଛ ଏ ଲକ୍ଷତ ।
ଟଣ ଟଣ ଭଣ ଭଣ ରଣ୍ଟୁ ନାଦତ । ୨ ।
ଗାନ୍ଧାର ସଗଳୁ ବଡ଼ ଅଟଇ ସୁନ୍ଦର ।
ଧ୍ୱର ହର ନାମ କଥା ଗୁଣିମା ମଧୁର । ୩ ।
ସେ ଯନ୍ତ୍ର ଧୂନରେ ମନ ହରଣେ ନଅଇ ।
ବ୍ରହ୍ମା ବିଷ୍ଣୁ ଶୁଣିଲେ ଯେ ଭୋଳ ହୋନ୍ତି କହିଁ । ୪ ।
ରବା ବୀଣା ଅନାଦ ଯେ କଲେକ ଭିଅଣ ।
ରୁଦ୍ର ପୁଣ ତାଙ୍କଠାରୁ ଶିକ୍ଷା କଲେ ପୁଣ । ୫ ।
ହୁରଙ୍ଗୀର ଛଳେ ହର ଖମ୍ବରୁ ବାହାର ।
ବୋଇଲେ ହେ ପ୍ରହ୍ଲାଦ ମାଗ ତୁମ୍ଭେ ବର । ୬ ।
ମୋହର ହସ୍ତ ମସ୍ତକ ବାଦ୍ୟ ନାମେ ଥିବ ।
ଏହୁ ବର ପ୍ରଭୁ ଜନ୍ମେ ଜନ୍ମେ ମୋତେ ଦେବ । ୭ ।
ନରହରି ସନ୍ତୋଷେଣ ବର ଦେଲେ ପୁଣ ।
ତାହାର ମସ୍ତକ ବୀଣା ହାଣ୍ଡି କଲେ ପୁଣ । ୮ ।
ହସ୍ତ ଗୋଟା ରବା ପୁଣ ଭିଆଣ ଯେ କରି ।
ଏମନ୍ତେ ଅନାଦ ରୁଦ୍ର ଏହୁ ଯନ୍ତ୍ର ଧରି । ୯ ।
ଶୋଳକ ଭୁବନେ ରୁଦ୍ର ଦେଲେକ ଯତନେ ।
ଶୋଳକ ନାଅ ଶୁଣିଣ ସନ୍ତୋଷ ଯେ ମନେ । ୧୦ ।

---

୭—୧ ସେ ହସ୍ତ ଭୂମ୍ବ ପାଦ ନାମରେ ଥିବ (ଖ);

ଗୋଲକ ନାଥ ଯେ ଦେଲେ ସୁଦାମ ହସ୍ତେଣ ।
ସୁଦାମ ସଙ୍ଗୀ ଜାଣନ୍ତି ଗାନ୍ଧାରବ ଗୁଣ । ୧୧ ।
ନାରଦ ଜାଣନ୍ତି ପୁଣ ଏ ଧ୍ୱନର ରସ ।
ସରସ୍ୱତୀ ଜାଣନ୍ତି ଯେ ଏ ଧ୍ୱନ ଉଦେଶ । ୧୨ ।
ଲଳିତା ବିଶାଖା ଚମ୍ପା ରଙ୍ଗଦେବୀଗଣ ।
ଏମାନେ ଜାଣନ୍ତି ଏଥି କିଛି ରସଗୁଣ । ୧୩ ।
ଗୋଲୋକର ଲୀଳା ଗୋପପୁରରେ ପ୍ରକାଶ ।
ଗୋପ ପୋଏ ଜନମିଲେ ନଦୀଆର ଦେଶ । ୧୪ ।
ନଦୀଆର ଲୀଳା ଗୁପ୍ତ ଓଡ୍ର ଦେଶେ ଜାତ ।
ଓଡ୍ର ରାଷ୍ଟ୍ର ଗୋପାଳଙ୍କୁ ଜାଣିବ ତତ୍ତ୍ୱତ । ୧୫ ।
ଚବିଶ ଗୋପାଳ ତୁମ୍ଭେ ଓଡ୍ର ରାଷ୍ଟ୍ରେ ସାର ।
ପାଷାଣ୍ଡ ଗୋପାଳ ପୁଣ ହୋଇବେ ଉଦ୍ଧାର । ୧୬ ।
ଅର୍ଦ୍ଧମାତ୍ରା ଥୋଇ ତଳେ ଗାର ଗୋଟି ଦେବ ।
କରମାତ୍ରା ଦେଇଣ ସେ ଇକାର ବନ୍ଧିବ । ୧୭ ।
ଅର୍ଦ୍ଧମାତ୍ରା ପରେ ପୁଣ ଇକାରକୁ ଦେଇ ।
ତଥିପରେ ପୁଣ ବିନ୍ଦୁ ଗୋଟିଏ ବସାଇ । ୧୮ ।
ମଣ୍ଡଳ ଗୋଟିଏ ପୁଣ ଲେଖିବ ଭୂମିରେ ।
ମନ୍ତ୍ରଗୋଟି ଲେଖିବ ଯେ ତଥିର ମଧ୍ୟରେ । ୧୯ ।
ରବାବୀଣା ସେହିଠାରେ ଥୋଇବାକ ନେଇ ।
ଘୃତ ଦୀପ ଜାଳିଣ ସେ ପୂଜା ବିଧି ଦେଇ । ୨୦ ।
ପାଟବସ୍ତ୍ର ପାଞ୍ଚଖଣ୍ଡି ରବାଠାରେ ଦେବ ।
ପିଣ୍ଡା ଯେ ପାତ୍ରେଡ଼ା ଦଣ ବୀଣାଠାରେ ହେବ । ୨୧ ।
ଦକାର ମନ୍ତ୍ର ଯେ ବଡ଼ ଶିଷ୍ୟଙ୍କୁ ବୁଝାଇ ।
ବୀଣା ରବା ଶିଖାଇଲେ ଦୋଷ କିଛି ନାହିଁ । ୨୨ ।
ମନ୍ତ୍ର ଜାଣି ଯେଉଁ ନର ରବା ବୀଣା ବାଇ ।
ଅନ୍ତକ୍ଷେଣ ପୃଥ୍ୱୀ ମଲେ କୃଷ୍ଣ ପାଦ ପାଇ । ୨୩ ।

ମନ୍ତ୍ର ଗୁରୁ ଶିକ୍ଷା ଯଦ ନ ଜାଣିଣ ବାସ୍ତେ ।
ଗୋରୁ ହତ୍ୟା ପାତକ ଯେ ପୁଣ ସେହୁ ପାଏ । ୧୪ ।
ମନ୍ତ୍ରଦୀକ୍ଷା ଏଣୁ କର ଗୋପସୁତେ ଦେବ ।
ତାହାର ସଙ୍ଗରେ କୃଷ୍ଣ କଥା ଗାଉଥିବ । ୧୫ ।
କଳିଯୁଗେ କୃଷ୍ଣ କଥା ଅଟଇ ତ ସାର ।
ଭାଗ୍ୟ ଥିଲେ ପ୍ରାପତ ଯେ ହୁଅଇ ତାହାର । ୧୬ ।
ରାତ୍ର ଦିବସେ ଜନଙ୍କୁ ପରମାଦ ନାହିଁ ।
ଧନ ପୁତ୍ର ଭୋଗ ଭୁଞ୍ଜି ସୁଖେ ବଞ୍ଚୁଥାଇ । ୧୭ ।
ପୂଜକ ଅଟଇ ପୁଣ ସଂସାରେ ସେ ଜନ ।
ସନ୍ଥ ଗୋଷ୍ଠି ଜନମାନେ କରେ ଧନ୍ୟ ଧନ୍ୟ । ୧୮ ।
ପାଷଣ୍ଡ କୁଳରୁ ସେହୁ ହୁଅନ୍ତି ବାହାର ।
ଗନ୍ଧ ସେ ଚନ୍ଦନ ଭୋଗ ଥାଇ ନିରନ୍ତର । ୧୯ ।
ବୀଣା ଅଧିକାର ପୁଣ ମୁକୁନ୍ଦ ଧରିବ ।
ଅନନ୍ତ କନ୍ଧଲୁ ରବା ଆଧିକାର ଥିବ ।୨୦।
ମୁକୁନ୍ଦ ନେବ ହେ ବୀଣା ପୂଜ ବନ୍ଧି ଯେତେ ।
ରବା ପୂଜା ଅନନ୍ତକୁ ବନ୍ଧିଲୁ ଯୁଗତେ ।୨୧।
ଗୋପାଳ କୁଳରେ ରବା ବୀଣା ବଜାଇବ ।
ତାଳ ଯେ କର୍ତ୍ତାଳ ଖୋଳ ମାଦଳ ଶିଖିବ ।୨୨।
ଶିଙ୍ଘା ଶଙ୍ଖ ବେଣୁ ବଂଶୀ ମୁରଲୀ ସଙ୍ଗୀତ ।
ଚୁଲ ଝୋମ୍ପି ତମ୍ବୁ ଯେ ଟାଉଆ ପତାକା ।୨୩।
ସବୁ ଅଧିକାର ଗୁରୁ ବାରଟିଆ ଅଂଶ ।
ତୁମ୍ଭେ ଅଟେ ପାଇଲ ହେ ମନ୍ତ୍ରଭେଦ ରସ ।୨୪।
ପ୍ରଥମ ପୀଢ଼ିରେ ପଢ଼ା ଅଚ୍ୟୁତ ତ ମୁହିଁ ।
ଦ୍ବିତୀୟ ପୀଢ଼ିରେ ରାମଚନ୍ଦ୍ର ଦାସ ଭାଇ ।୨୫।
ତୃତୀୟ ପୀଢ଼ି ପବନ ଭାଇ ବାର ଦଶ ।
ତାଙ୍କଠାରୁ ଶିଖି ହେବେ ସନ୍ନ୍ୟାସୀର ଦାସ ।୨୬।

ସ୍ୱତ୍ୱ ଅଧିକାରୀ ଅଂଶ ଏଣୁ ଗ୍ରନ୍ଥେ ହେଲ ।
ଜଂଘର ବିଷୟରେ ଗ୍ରନ୍ଥେ ସନ୍ଧାସ ଆପିଲ ।୩୭।
ଅଗେ ଶାଢୀ ଆଗେ ପୂଜା ଗ୍ରନ୍ଥଙ୍କ ପ୍ରମାଣ ।
ଫୁଲ ପାନ ଚନ୍ଦନ ଯେ ଗ୍ରନ୍ଥ ଅର୍ଥେ ଜାଣ ।୩୮।
ଯେଉଁ ଜନ ଭକ୍ତଭେଦ ଗ୍ରନ୍ଥେ କହିଥିବ ।
ଲକ୍ଷେ ଗ୍ରନ୍ଥ ଅତ୍ୟନ୍ତର ମୁଖେ ପଢୁଥିବ ।୩୯।
ସେ ଜନ ଗ୍ରନ୍ଥଙ୍କ ପୁଣ ଜିଣିବ ଗ୍ରନ୍ଥରେ ।
ଏଣୁକର ମନ୍ତ୍ରମାନ ଲେଖିଲୁ ପୋଥିରେ ।୪୦।
ପାଷାଣ୍ଡ କୁଳକୁ ଏହୁ ହୋଇବ ଜଞ୍ଜାଳ ।
ପରକୃତ ଭାଷାରେ ଯେ ଲେଖିଲୁ ଢମାଳ ।୪୧।

ଭକ୍ତ ଶିଷ୍ୟ ମନ ଜାଣି ଏ ଗ୍ରନ୍ଥ କହିବ ।
ସବୁ ମନ୍ତ୍ର ବୁଝାଇଲେ ଭଗତ ପାଇବ ।୪୨।
ଗୁରୁ ମୁଖେ ନ ବୁଝିଲେ ନ ପାଇବ ଭେଦ ।
ଭ୍ରମର ମୁଦ୍ରିତ ପୁଷ୍ପେ ପାଏ ବଡ଼ ଧନ୍ଦ ।୪୩।
ସାରୁ-ପଦ୍ମ ପତ୍ରେ ଯେହ୍ନେ ନ ମିଶଇ ପାଣି ।
ପଥରକୁ ଜଳ ଯେହ୍ନେ ନ ପାରଇ ଜିଣି ।୪୪।

ଅଣଭକ୍ତ ଶିଷ୍ୟ ଅଟେ ଏମନ୍ତ ଲକ୍ଷଣ ।
ଏଣୁ କରି ଗୁପତ କରିବା ଭଲ ଗୁଣ ।୪୫
କାଗଜକୁ ଜଳ ଯେହ୍ନେ ଜିଣଇ ତୁରିତେ ।
ସବୁ ବସ୍ତ୍ର ଜଳେ ଯେହ୍ନେ ମଜ୍ଜଇ ଯୁଗତେ ।୪୬।
ଅଗ୍ନି ସଙ୍ଗେ ଘୃତ ଯେହ୍ନେ ହୁଅଇ ତରଳ ।
ନଆଁ ସଙ୍ଗେ ଘିଅ ଯେହ୍ନେ ହୁଅଇ ଯେ ମେଳ ।୪୭।
ଭକ୍ତ ଶିଷ୍ୟ ସେହ୍ନ ମତ ଗୁରୁଙ୍କୁ ଦେଖିଲେ ।
ସେ ଶିଷ୍ୟ ଜୀବନ ଧନ୍ୟ ଧନ୍ୟ ଦନେ ଥିଲେ ।୪୮।
ଅନ୍ନ ବସ୍ତ୍ର ଧନ ଦେଇ ଗୁରୁ ପୂଜା କରେ ।
ଅନାମ ନାମ ଶବଦ ଗୁରୁଙ୍କ ପଦ୍ମରେ ।୪୯।

ସମାଧି ଜ୍ୟୋତି ଜାଲାନ୍ଧ୍ର ଅବାଡ଼ ଶିଖରେ ।
ପଞ୍ଚାକ୍ଷର ଏକାକ୍ଷର ଷଡାକ୍ଷର ଧ୍ୟାଇ ।୫୦।
ଗୋପାଳ ମନ୍ତ୍ର ଯେ ଷଡାକ୍ଷର ମନ୍ତ୍ର ଜପ ।
କୃଷ୍ଣମନ୍ତ୍ର ଠାକୁରାଣୀମନ୍ତ୍ର ହରେ ପାପ ।୫୧।
ଗୁହ୍ୱାସେ ମିଶିଣ ଏହୁ ରସ ଘୋଷୁଥିବେ ।
ଅଚ୍ୟୁତ ବଚନ ଶ୍ରମସୂତ୍ରେ ପାଳିଥିବେ ।୫୨।
ଅତି ନୀଚ ହେବ ପୃଥ୍ୱୀ ହୋଇବ ସେ ଶେଷେ ।
ସେବକମାନେ ମାରିବେ ରାଜନ ଯେ ଅଂଶେ ।୫୩।
ଗୁରୁଙ୍କ ପଦାର୍ଥ ଶିଷ୍ୟ ବଳେ ଘେନ ଯିବ ।
ଦରିଦ୍ର ଅବସ୍ଥା ପ୍ରାଣୀ ହୃଦରୁ ନ ଯିବ ।୫୪।
ସେହୁ କାଳେ କୃଷ୍ଣ ନାମ ଯେ ହୃଦେ ଘୋଷିବ ।
ଏକାନ୍ତେ ବସି ଏ ଗ୍ରନ୍ଥ ବନସ୍ତେ ଗୁଣିବ ।୫୫।
ଗୃହକାଙ୍କ୍ଷ ଏ ଗ୍ରନ୍ଥକୁ ନ ପାରିବେ ବନ୍ଧ ।
ହେରୁ ମନେ ଘେନ ଥିବ ଅନନ୍ତ ମକୁନ୍ଦ ।୫୬।
ଦୀନ ଅଚ୍ୟୁତର କଥା ଅଟଇ ଏ ସତ ।
ଆଗତ ଭବିଷ୍ୟ ଏହୁ ପୁରାଣେ ଉକତ ।୫୭।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ଷଷ୍ଟି ଗ୍ରନ୍ଥ ।



## ଏକଷଷ୍ଠି ଛାନ୍ଦ

ଚୂଳ ମନ୍ତ୍ର ବନ୍ଧ ପୁଣ କେମନ୍ତ ଅଛଇ ।
ଏକଥା ଶ୍ରୀ ଗୁରୁଦେବ କହିବ ବୁଝାଇ ।୧।
ଶୁଣ ଆହେ ଗୋପସୁତ ଚନ୍ଦ୍ରିର ଚକ୍ଷୁର ।
ସେହିବନ୍ଧ ପରମାଣେ ଭିଆଣ ତାହାର ।୨।
ମୟୂର କାଟିକି ଟୋପି ପ୍ରାସ୍ତେ ବ୍ରହ୍ମା କର ।
ଚନ୍ଦ୍ରିକା ମଣ୍ଡଳ ବିଷ୍ଣୁ ଗଞ୍ଜିଲେ ବିସ୍ତାର ।୩।
ଗୁଞ୍ଜର ମାଳା ଯତନେ ଶିବ ସେ ଗଞ୍ଜିଣ ।
ଅନନ୍ତ ଦେଲେକ ଡ଼ୋର ମୂଳରେ ତ ପୁଣ ।୪।
ଶିକୁଳି ଛନ୍ଦଣ ପଞ୍ଚ ପବନ କରଣ ।
ମଧ୍ୟ ସ୍ଥଗ ଗୋଟି ସେତୁ କଲେକ ନିର୍ମାଣ ।୫।
ଶିଖଣ୍ଡ ମଣ୍ଡଳ ଚନ୍ଦ୍ରି ଚନ୍ଦ୍ର ଦେଲେ ନେଇ ।
ଚୂଳ ଯେ ଗୋଟିଏ ସୂର୍ଯ୍ୟ ଉପରେ ବସାଇ ।୬।
ଏମନ୍ତ ହୋଇଣ ଚୂଳ ବିଶାଖା ଭିଆଣ ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଅନନ୍ତ ନିର୍ମାଣ ।୭।
ପବନ ଚନ୍ଦ୍ର ଯେ ସୂର୍ଯ୍ୟ ବସି ନିର୍ମାଣିଲେ ।
ଗୋଲୋକ ଭୁବନେ ନେଇ ଯତନେ ଥୋଇଲେ ।୮।
ଗୋଲୋକନାଥ ଯେ ଦେଲେ ସୁଦାମ ଶିରେଣ ।
ସୁଦାମର ସଖାମାନେ ବନ୍ଧିଲେ ଶିରେଣ ।୯।
ଗୋଲକର ଲୀଳା ଗୋପ ପୁରରେ ପ୍ରକାଶ ।
ଗୋପଲୀଳା ସାରି ଜାତ ନଦୀଆ ପ୍ରବେଶ ।୧୦।
ନବଦ୍ୱୀପ ରୂପ ଶେଷ ଓଡ୍ର ରାଷ୍ଟ୍ରେ ଜାତ ।
ଗୋପ ଶୂଦ୍ର ଦୁଇ କୁଳେ ହୋଇଲେ ତ ଜାତ ।୧୧।

ଏ ଗୋପକୁଳରେ ଜନ୍ମ ଚୂଳ ବେଶ ଧର ।
ଶୂଦ୍ର କୁଳେ ଜନମ ତ ଅଛଇ ଆମ୍ଭର ।୧୨।
ତୋର ଟୋପ କହୁପୁଣ ଶୂଦ୍ର କୁଳେ ଦେବୁ ।
କସ ଚୂଳ ବେଶ ଗୋପକୁଳକୁ ବାନ୍ଧବୁ ।୧୩।
ଶୁଣ ରାମ କୃଷ୍ଣ ଦାସ ଏ ଚୂଳ ବିଚାର ।
ମନ୍ତ୍ର ଶିଖି ଚୂଳ ଗୋଟି ବାନ୍ଧିବ ଶିରର ।୧୪।
ବେଦ ସପ୍ତ ଧରଣ ଯେ ମନ୍ତ୍ରକୁ ଲେଖିବ ।
ଚଉଦ ଅକ୍ଷର ମନ୍ତ୍ର ଚନ୍ଦ୍ରରେ ରଖିବ ।୧୫।
ହର ହର ତନ୍ତ୍ର ଏସେ ମନ୍ତ୍ର ଅଟେ ପୁଣି ।
ଅଭି ଦଣ୍ଡକ ମସ୍ତକଂ ମନ୍ତ୍ର ଗୋଟି ପୁଣ ।୧୬।
ପୂଜା ବିଧି କରଣ ଯେ ଶିଷ୍ୟ ଶିରେ ଦେବ ।
ଶିଷ୍ୟଶିରେ ବନ୍ଧଣ ଯେ ସ୍ୱାହାସେ ମିଶିବ ।୧୭।
ମନ୍ତ୍ର ନ ଜାଣିଣ ଚୂଳ ବାନ୍ଧନ୍ତି ଯେ ଶିର ।
କପିଳାର ବଧ ଦୋଷ ଲାଗଇ ତାହାର ।୧୮।
ମନ୍ତ୍ର ଜାଣି ଯେଉଁ ଜନ ଚୂଳ ଶିରେ ବାନ୍ଧ ।
ଅବଶ୍ୟେଣ ଗତ ମଲେ କୃଷ୍ଣ ପାଦ ପାଇ ।୧୯।
ମୁହିଁ ଯେ ଅଚ୍ୟୁତ ଦାସ ଦେଲି ରାମ ତୋରେ ।
ରାମଚନ୍ଦ୍ର ଦାଅ ପୁଣ ମୁକୁନ୍ଦର ଶିରେ ।୨୦।
ମୁକୁନ୍ଦର ବାର ସ୍ୱାଇ ଯେତେ କର ରସ ।
ଅଚ୍ୟୁତ ଦାସର ଲୀଳା କରିବ ପ୍ରକାଶ ।୨୧।
ଏହୁ ଗୁରୁଭକ୍ତି ଗୀତା ବିସନ୍ଧ ବଚନ ।
ବୋଲି ଯେ ତମାଳ ଭାଷା ପଢ଼ିବ ସଜ୍ଜନ ।୨୨।
ମନ୍ତ୍ରଭେଦ ରୂପରେଣ ବିସନ୍ଧ ଲେଖିଲୁ ।
ରସିକ ଚତୁର ଭକ୍ତ ହସ୍ତରେ ଥୋଇଲୁ ।୨୩।

ଇତି ଶ୍ରୀଗୁରୁଭକ୍ତିଗୀତା କଥନେ ନାମ ଏକଷଷ୍ଠି ଛାନ୍ଦ



## ଦ୍ୱିଷଷ୍ଟି ଛାନ୍ଦ

ଆଜ୍ଞା କରିବା ଗୁରୁଦେବ । ବେତ ଜନମ ଯେଉଁ ସ୍ଥଳ ।୧।
ଶୁଣ ସୁଦାମ ବସ୍ତ୍ର ଦାସ । ମୁକୁନ୍ଦ ଅନନ୍ତ ବିଶ୍ୱାସ ॥
ଅନନ୍ତ ନାଗ ଏକ ଦିନେ । ଆଇଲେ କୃଷ୍ଣ ଦରଶନେ ॥
ବଳରାମ ଯେ କୃଷ୍ଣ ଦେଖି । ବୋଲେ ବୃଜଲେ ବେନ ଆସି ॥
ଲୋଚନ ଲୋଚକ ପଡ଼ନ୍ତେ । ବୃକ୍ଷ ଗୋଟିଏ ଅଦଭୁତେ ॥
ସେ ବେତବୃକ୍ଷ ବୋଲାଇଲ । ଏମନ୍ତେ କହୁ ଦିନ ଗଲ ॥
କୃଷ୍ଣ ଜନମ ଗୋପ ପୁର । ସଙ୍ଗତେ ଭାଇ ହଳଧର ।
ଦ୍ୱାଦଶ ବନରେ ବାହୁଗ୍ଘ । ଚରନ୍ତି ଅଠ ସ୍ନେହ ବଶ ॥
ସେ ବେତ ବୃକ୍ଷକୁ ଦେଖିଣ । ଅନନ୍ତ ଅଙ୍ଗ ଅଂଶୁ ପୁଣ ॥
ଜାଣିଲେ ଅନ୍ତର୍ଯାମୀ ନାଥ । ତହୁଁ ଖଣ୍ଡିଏ ଘେନ ହସ୍ତ ।୧୦।
ବାମ ନୟନ କନଅର ଜନମିଥିଲ ସେ ବନର ॥
ତହୁଁ ଖଣ୍ଡିଏ ଘେନ କର । ଚରନ୍ତି ବନରେ ବାହୁଗ୍ଘ ॥
ସୁବର୍ଣ୍ଣ ବେତ ଶିରେ ଦେଇ । କମ୍ବୁ କରେଣ ବେତ ଶୋହ୍ନ ॥
ସୁବର୍ଣ୍ଣ କନକ ପାଞ୍ଚଣି । କୃଷ୍ଣ ଦକ୍ଷିଣ କରେ ପୁଣି ॥
ଦାମ ଯେ ସୁଦାମ କରେଣ । ଘେନ ସକଳ ପୋଏ ପୁଣ ॥
ସୁବର୍ଣ୍ଣ ଚକ୍କ କମ କର । ସେ କନଅର ଶିରେ ଧର ॥
କେ ବୋଲେ ଆଣା ଏ ଅଟଇ । କେ ପୁଣ ବୁରୁଜ କରଇ ॥
କେ ପୁଣ ବାଙ୍କୁଆ କରନ୍ତ । ଅଷ୍ଟରତନ କମ ପନ୍ତ ॥
କେ ପୁଣ ନହଡ଼ ସଜାଡ଼ । ବନରେ କରନ୍ତ ଧାହଡ଼ ॥
କେଉଁ ଗୋପାଲ ହସ୍ତେ ବେତ । କେ ପୁଣ ନହଡ ଧରେ ତ ।୨୦।
କେ ପୁଣ ଆଣା କରେ ଧର । କେ ରଙ୍ଗ ବାଙ୍କ କନ୍ଧେ ପାର ॥
କେ ପୁଣ ପାଞ୍ଚଣ ଧରଇ । କେ ରଙ୍ଗ ଫାହଡ଼ ପକାଇ ॥
ଠାବ କମ୍ବଳ ଭଲ ପା ଇ । ଫାହଡ଼ କନ୍ଧେ ଘେନ ଥାଇ ॥

ଗୋପେ ଗୋପାଳ କୃଷ୍ଣ ଲୀଳା । ଅନେକ ରସ ସୁଖେ ଖେଳା ॥
କଳରେ ଭଗତ ପ୍ରକାଶ । ଧଇଲେ ଭଗତର ବେଶ ॥
ଟୋପି ଯେ ବେତ ଆଶା ବନ୍ଧ । ବୈଷ୍ଣବ ଲକ୍ଷଣ ଅଟଇ ॥
ଶୁଣ ହେ ଗୋପ ସୁତମାନେ । ଅଣ ଯେ ହେଉ ଶିଷ୍ୟ ଜନେ ॥
ଏ ବେତ ମହିମା କହିବ । ଶିଷ୍ୟକୁ ହସ୍ତେ ଟେକ ଦେବ ॥
ସାକ୍ଷୀ ଗୋଟିଏ ଲେଖି କର । ତହିଁରେ ମନ୍ତ୍ରକୁ ସୁମର ॥
ବେଦ ମୂରତ ବସ୍ତ୍ର ଦେବ । ବେତ ଯେ ଛଡ଼ିକ ପୂଜିବ ।୩୦।
ଅନନ୍ତ ଅଚ୍ୟୁତ ଯେ ହରି । ଏ ଅଷ୍ଟ ଅକ୍ଷର ସୁମରି ॥
ସ୍ୱର ଦୁଗୁଣ ଅଠ କରି । ଏ ରୂପେ ଯନ୍ତ୍ର ବାନ୍ଧି କରି ॥
ଯନ୍ତ୍ର ମନ୍ତ୍ର ଯେ ପୂଜାବିଧି । ଗୁରୁଙ୍କ ଅଟଇ ଏ ସିଦ୍ଧି ॥
ଏ ଭେଦ ଜାଣି ଶିଷ୍ୟ ବନ୍ଧେ । ତେବେ ଶିଷ୍ୟର ହେଉ ହୁଏ ॥
ମନ୍ତ୍ର ନ ଜାଣି ବନ୍ଧେ ବେତ । ଅନ୍ଧ ଜନମ ଦରିଦ୍ର ତ ॥
ମନ୍ତ୍ର ଜାଣିଣ ବେତ ବନ୍ଧ । ମଲେଣ ଗୋଲକ ଲଭଇ ॥
ମନ୍ତ୍ରେ ବନ୍ଧଇ ଆଶା ପୁଣ । ଲଭନ୍ତି କୃଷ୍ଣର ଚରଣ ॥
ମନ୍ତ୍ର ନ ଜାଣି ଆଶା ବନ୍ଧ । ଦୁସ୍ତର ଅଙ୍ଗେ ତା ପୀଡ଼ଇ ॥
ନହୁଡ଼ ଛଡ଼ ବେତ ଏକ । କେବଳ ଏକ ଏ ମନ୍ତ୍ରକ ॥
ଏହା ସୁମରି ବନ୍ଧିଥିବ । ଗୋପାଳ କୁଳେ ଭେଖନେବ ।୪୦।
ବେତର ଅଧିକାର ପୁଣ । ମୁକୁନ୍ଦ ଦାସର ପ୍ରମାଣ ॥
ଛଡ଼ର ଅଧିକାର ଯେତେ । ଅନନ୍ତ ଦାସର ସୁଗତେ ॥
ନହୁଡ଼ ଅଧିକାର ମାନ । ମୁକୁନ୍ଦ ରୁଦ୍ରର ବିଧାନ ॥
ଏପାଞ୍ଚ ଅଧିକାର ଯେତେ । ବସ୍ତ୍ରେ ଅଟଇ ଯୁଗତେ ॥
ଫାହୁଡ଼ ଅଧିକାରମାନ । ମଧୁଦାସର ଏ ବିଧାନ ॥
ବାଙ୍କୁଆ ସୁଦାମର ପୁଣ । ଅଚ୍ୟୁତ ବଚନ ପ୍ରମାଣ ।୪୬।

ଇତି ଶ୍ରୀଗୁରୁଭକ୍ତ ଗୀତା କଥନେ ନାମ ଦ୍ୱିଷଷ୍ଟି ଛାନ୍ଦ ।

---

ସ ମା ପ୍ତ

